

# ଧଉଳୀର ଇତିହାସ

ଶ୍ରୀ କେଦାରନାଥ ମହାପାତ୍ର

# ଧଉଲୀ (ତୋଷଲୀ)ର ଇତିହାସ

( ଐତିହାସିକ ଗ୍ରନ୍ଥମାଳାର ଚତୁର୍ଥ ଖଣ୍ଡ )



ଶ୍ରୀ କେଦାର ନାଥ ମହାପାତ୍ର, ବି.ଏ. (ଅନର୍ସ), ଡ଼ି.ଇଡ଼.
ଓଡ଼ିଶା ପ୍ରତ୍ନତତ୍ତ୍ୱ ବିଭାଗର ଅବସର ପ୍ରାପ୍ତ ଅଧୀକ୍ଷକ

ପ୍ରକାଶନ :

ସାଂସ୍କୃତିକ ବ୍ୟାପାର ବିଭାଗ ଅର୍ଥାନୁକୂଲ୍ୟ
ଏବଂ
ଗ୍ରନ୍ଥକର୍ତ୍ତାଙ୍କ ନିଜ ବ୍ୟୟରେ ମୁଦ୍ରିତ ।

ପ୍ରଥମ ସଂସ୍କରଣ
୧୯୭[illegible]

ମୁଦ୍ରାକର :
ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର, ବି.ଏ. (ଅନର୍ସ)
ଶ୍ରୀ ଶାରଦା ପ୍ରେସ୍
ମନ୍ଦିର ରାସ୍ତା
ଭୁବନେଶ୍ୱର-୨

ମୂଲ୍ୟ :
ଆଠ ଟଙ୍କା ମାତ୍ର

# ମୁଖବନ୍ଧ

କଟକସ୍ଥ ରେଭେନ୍‌ସା କଲେଜରେ ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ଥିବା ସମୟରେ ମୁଁ **'Identificatin of Tosali'** ବା 'ତୋଷଳୀର ଅବସ୍ଥିତି ନିର୍ଣ୍ଣୟ' ନାମକ ଏକ ଗବେଷଣା ମୂଳକ ଇଂରେଜୀ ପ୍ରବନ୍ଧ କଲେଜର ତ୍ରୈମାସିକ ପତ୍ରିକା **Ravenshavian**ର ୧୯୩୨ ଡିସେମ୍ବର ସଂଖ୍ୟାରେ ପ୍ରକାଶ କରିଥିଲି । ଏହା ପାଠକରି ପୂଜ୍ୟପାଦ ଅଧ୍ୟାପକ ସ୍ୱର୍ଗତଃ ନିର୍ମଳଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ମହାଶୟ ମୋତେ ତୋଷଳୀ ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ରଚନା ପାଇଁ ବାରମ୍ବାର ଉତ୍ସାହିତ କରିଥିଲେ । ସେହି ସମୟରୁ ଏପରି ଏକ ପୁସ୍ତକ ରଚନା କରିବା ପାଇଁ ହୃଦୟରେ ପ୍ରବଳ ବାସନା ଜାଗ୍ରତ ହେଲା । ଏହାର କିଛିଦିନ ପରେ ୧୯୩୨ରେ ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଲୁମ୍ବିନୀବନସ୍ଥ ଲେଖର କପିଳେ-ଶ୍ୱରରୁ ପ୍ରାପ୍ତ ପ୍ରସ୍ତରଲିପି ଓ ଗୌତମବୁଦ୍ଧଙ୍କ ପ୍ରଥମ ଦୁଇ ଶିଷ୍ୟ ତପୁସ୍ସ ଓ ଭଲ୍ଲିକଙ୍କ ବାସସ୍ଥାନ ସମ୍ବନ୍ଧରେ ମୋର ଦୁଇଟି ପ୍ରବନ୍ଧ 'ସହକାର' ମାସିକ ପତ୍ରିକାରେ ପ୍ରକାଶଲାଭ କଲା । ବର୍ତ୍ତମାନ ବିସ୍ମୃତିଗର୍ଭରେ ଲୁପ୍ତ ଇତିହାସ ପ୍ରସିଦ୍ଧ କଳିଙ୍ଗ ଯୁଦ୍ଧ ସମ୍ବନ୍ଧରେ **ଅଶୋକ ଓ କଳିଙ୍ଗ ଯୁଦ୍ଧ** ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧ ୧୯୩୪ ମସିହାରେ ଅଧୁନାଲୁପ୍ତ 'ଦୈନିକ ଆଶା' ସମ୍ବାଦପତ୍ରରେ କ୍ରମାନ୍ୱୟରେ ପ୍ରକାଶ କରିଥିଲି । ଏଥିପ୍ରତି ସୁଧୀବୃନ୍ଦଙ୍କ ସୁଦୃଷ୍ଟି ପଡ଼ିବାରୁ ମୋର ଉତ୍ସାହ ଓ କର୍ମତତ୍ପରତା କ୍ରମଶଃ ବୃଦ୍ଧିଲାଭ କଲା । ତେଣୁ ଏହି ନିବନ୍ଧକୁ ପରିମାର୍ଜିତ ଓ ଅଧିକ ତଥ୍ୟ ସମ୍ବଳିତ କରି ପୁନର୍ବାର ୧୯୩୪—୩୫ରେ ଉତ୍କଳ ସାହିତ୍ୟ ପତ୍ରିକା ୩୮ଶ ଭାଗ ଚତୁର୍ଥ ଓ ପଞ୍ଚମ ସଂଖ୍ୟାରେ ପ୍ରକାଶ କରାଗଲା । ୧୯୩୫ ମସିହାରେ ଅଶୋକଙ୍କ ଚତୁର୍ଦ୍ଦଶ ଅନୁଶାସନ ଓ ଧଉଳୀସ୍ଥିତ କଳିଙ୍ଗ ଅନୁଶାସନ ଦ୍ୱୟର ମୂଳ, ସଂସ୍କୃତାନୁବାଦ, ଓଡ଼ିଆ ଅନୁବାଦ, ଶବ୍ଦାର୍ଥ ଓ ପାଦଟୀକା ସହ ଏକ

ଦୀର୍ଘ ପ୍ରବନ୍ଧ 'ସହକାର' ପଞ୍ଚଦଶ ଭାଗ ଅଷ୍ଟମ, ନବମ, ଦଶମ ଓ ଏକାଦଶ ସଂଖ୍ୟାରେ କ୍ରମାନ୍ୱୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ଓଡ଼ିଆ ଭାଷାରେ ଏ ସମ୍ପର୍କରେ ଏହାହିଁ ସର୍ବପ୍ରଥମ ଆଲୋଚନା । ପରିଶେଷରେ ୧୯୩୭ ମସିହାରେ 'ସହକାର'ର ଷୋଡ଼ଶ ଭାଗ ଶାରଦୀୟ ସଂଖ୍ୟାରେ **ତୋଷଳୀର ଅବସ୍ଥିତି** ନାମକ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା ।

ମୋର ନିରବଚ୍ଛିନ୍ନ ପ୍ରତ୍ନତତ୍ତ୍ୱାନୁସନ୍ଧାନ ଓ ଐତିହାସିକ ପ୍ରବନ୍ଧ ପ୍ରକାଶରେ ମୁଗ୍ଧ ଓ ଆକୃଷ୍ଟ ହୋଇ ପୂର୍ବତନ କଳାହାଣ୍ଡି ରାଜ୍ୟର ଉଚ୍ଚ ଶିକ୍ଷିତ, ବିଦ୍ୟୋତ୍ସାହୀ ମହାରାଜ ଶ୍ରୀ ପ୍ରତାପକେଶରୀ ଦେଓ ମୋତେ ସ୍ୱତଃପ୍ରବୃତ୍ତ ହୋଇ ଉକ୍ତ ରାଜ୍ୟରେ ନବ ପ୍ରତିଷ୍ଠିତ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ପଦ ୧୯୪୩ ମସିହା ଶେଷଭାଗରେ ଅର୍ପଣ କରିଥିଲେ । ସେଠାରେ ଅବସ୍ଥାନ ସମୟରେ **ତୋଷଳୀ ଇତିହାସ** ନାମକ ଏକ ପୁସ୍ତକ ୧୯୪୮ ମସିହାରେ ଷ୍ଟୁଡେଣ୍ଟସ ଷ୍ଟୋର ଦ୍ୱାରା ପ୍ରକାଶିତ ହୋଇଥିଲା । ଇତି ମଧ୍ୟରେ ଦୀର୍ଘ ବିଂଶ ବର୍ଷ ଅତିବାହିତ ହୋଇଥିବାରୁ ଉକ୍ତ ପୁସ୍ତକ ଏକାବେଳକେ ଦୁଷ୍ପ୍ରାପ୍ୟ ହୋଇପଡ଼ିଛି ।

ପୁସ୍ତକର ପ୍ରଥମ ମୁଦ୍ରଣ ପରେ ଧଉଳି ଅଞ୍ଚଳ ସମ୍ବନ୍ଧରେ ବହୁ ନୂତନ ତଥ୍ୟ ଉପଲବ୍ଧ ହେଲାଣି । ୧୯୬୨ ମସିହାରେ ଓଡ଼ିଶା ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ପଦପ୍ରାପ୍ତି ପରେ ମୋ ଦ୍ୱାରା ପ୍ରଥମେ ଧଉଳି ପାହାଡ଼ର ପଶ୍ଚିମ ଶ୍ରେଣୀରେ ଦୟାନଦୀ ତୀରରେ ଅବସ୍ଥିତ ବହ୍ମଭଞ୍ଜେଶ୍ୱର ମନ୍ଦିରର ପୁନରୁଦ୍ଧାର; ୧୯୭୨ ମସିହାରେ ପଶ୍ଚିମ ଶିଖର ଉପରେ ବିରାଟ 'କଳିଙ୍ଗ ଶାନ୍ତିସ୍ତୂପ'ର ଉନ୍ମୋଚନ ଏବଂ ପୂର୍ବ ଶିଖରସ୍ଥିତ ପ୍ରାଚୀନ ଧବଳେଶ୍ୱର ମନ୍ଦିରର ପୁନର୍ନିର୍ମାଣ ଫଳରେ ଧଉଳି ଅଞ୍ଚଳ ବା ପ୍ରାଚୀନ ଇତିହାସ ପ୍ରସିଦ୍ଧ ତୋଷଳୀ ନଗରୀର ହୃତ ଗୌରବ ଓ ଲୁପ୍ତ ବିଭବର ପୁନରୁଦ୍ଧାର ପଥ ସୁଗମ ହୋଇଅଛି । ବର୍ତ୍ତମାନ ସମଗ୍ର ଅଞ୍ଚଳ ସୁଦୃଢ଼ ପଥଦ୍ୱାରା ସଂଯୁକ୍ତ ଓ ବିଦ୍ୟୁତ ଆଲୋକ ଦ୍ୱାରା ଉଦଭାସିତ । ପାନୀୟ ଜଳଯୋଗାଣ ଓ କୃଷି କ୍ଷେତ୍ରରେ ଜଳସେଚନର ସୁବ୍ୟବସ୍ଥା ହୋଇଥିବାରୁ ଏହାର ଉନ୍ନତି ସୁନିଶ୍ଚିତ ।

ବର୍ତ୍ତମାନ ଏହା ସମଗ୍ର ଉତ୍କଳର ଏକ ପ୍ରସିଦ୍ଧ ପର୍ଯ୍ୟଟନ କେନ୍ଦ୍ରର ସ୍ଥାନ ଅଧିକାର କରିଛି । ଏହି ସୁଯୋଗରେ ପ୍ରୋକ୍ତ ଐତିହାସିକ ମହାନଗରୀର ଦୀର୍ଘ ଅଢେଇ ହଜାର ବର୍ଷର ଇତିହାସ ଅତି ସଂକ୍ଷିପ୍ତ ଭାବରେ ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିବାର ସୁଯୋଗ ଲାଭକରି ମୋର ବହୁଦିନର ସ୍ୱପ୍ନ ସଫଳ ହୋଇଅଛି ।

ଏହି ପୁସ୍ତକର ପ୍ରକାଶ ପାଇଁ ସାଂସ୍କୃତିକ ବ୍ୟାପାର ବିଭାଗ ଆନୁପାତିକ ଅର୍ଥ ସାହାଯ୍ୟ ପ୍ରଦାନ କରିଥିବାରୁ ମୁଁ ଏହାର ସୁଯୋଗ୍ୟ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଅବୋଧ ନାରାୟଣ ତିୱାରୀ, ଆଇ. ଏ. ଏସ୍‌ଙ୍କ ନିକଟରେ ଚିର-କୃତଜ୍ଞତା-ପାଶରେ ଆବଦ୍ଧ ରହିବି ।

ଭୁବନେଶ୍ୱର,
ବସନ୍ତ ପଞ୍ଚମୀ
୧୭-୨-୭୫

ବିନୀତ
ପ୍ରଣେତା
ଶ୍ରୀ କେଦାର ନାଥ ମହାପାତ୍ର

# — ସୂଚୀପତ୍ର —


| | |
|---|---|
| ପ୍ରଥମ ଅଧ୍ୟାୟ — | ପୃଷ୍ଠାଙ୍କ |
| ତୋଷଳୀ ଓ ତୋଷଳ ରାଜ୍ୟ | ୧ — ୨୭ |
| ଦ୍ୱିତୀୟ ଅଧ୍ୟାୟ — | |
| ତୋଷଳୀ ଓ କଳିଙ୍ଗ ଯୁଦ୍ଧ | ୨୮ — ୪୨ |
| ତୃତୀୟ ଅଧ୍ୟାୟ — | |
| ତୋଷଳୀର ପ୍ରାଚୀନ ବୌଦ୍ଧକୀର୍ତ୍ତି | ୪୩ — ୭୮ |
| ଚତୁର୍ଥ ଅଧ୍ୟାୟ — | |
| ବୌଦ୍ଧକେନ୍ଦ୍ର ତୋଷଳୀର ପତନ | ୭୯ — ୧୧୪ |
| ପଞ୍ଚମ ଅଧ୍ୟାୟ — | |
| ଧଉଳୀସ୍ଥ ଅଶୋକ ରାଜତ୍ୱର ଏକାଦଶ ଅନୁଶାସନ ଏବଂ ଅନ୍ୟ ଅନୁଶାସନ ଦ୍ୱୟର ଆଲୋଚନା | ୧୧୫ — ୧୪୬ |
| ଷଷ୍ଠ ଅଧ୍ୟାୟ — | |
| ଧଉଳୀ ଅନୁଶାସନ (ମୂଳ, ସଂସ୍କୃତ ଓ ଓଡ଼ିଆ ଅନୁବାଦ) | ୧୪୭ — ୧୮୦ |
| ସପ୍ତମ ଅଧ୍ୟାୟ — | |
| ଧଉଳୀର କଳିଙ୍ଗାନୁଶାସନ ଦ୍ୱୟ | ୧୮୧ — ୧୯୦ |
| ପରିଶିଷ୍ଟ — | |
| ଧଉଳୀ ଅଞ୍ଚଳର ପୁନରୁତ୍ଥାନ | ୧୯୧ — ୧୯୮ |




## — ଚିତ୍ର ସୂଚୀ —

୧ । ପ୍ରଚ୍ଛଦପଟ ଚିତ୍ର — ଧଉଳୀ ପାହାଡର ଅଶ୍ୱତ୍‌ଥାମା ହସ୍ତୀ ନିମ୍ନ ଭାଗରେ ଉତ୍କୀର୍ଣ୍ଣ ଅଶୋକ ଅନୁଶାସନ ସମୂହ ।

୨ । ପୂର୍ବ ଶିଖରସ୍ଥ ଭଗ୍ନ ଧବଳେଶ୍ୱର ମନ୍ଦିର ।

୩ । ଅତ୍ୟୁଚ୍ଚ ଧବଳେଶ୍ୱର ଶିବଲିଙ୍ଗ ।

୪ । ଭଗ୍ନ ଧବଳେଶ୍ୱର ମନ୍ଦିର ନିକଟରୁ ପ୍ରାପ୍ତ କାର୍ତ୍ତିକେୟ, ଦୁର୍ଗା ଓ ଗଣେଶ ବିଗ୍ରହ ।

୫ । ଜୀର୍ଣ୍ଣୋଦ୍ଧାର ପରେ ଧବଳେଶ୍ୱର ମନ୍ଦିର ।

୬ । ପଶ୍ଚିମ ଦିଗରେ ଦୟାନଦୀ ତୀରରେ ଅବସ୍ଥିତ ପ୍ରାଚୀନ ବହିରଙ୍ଗେଶ୍ୱର ମନ୍ଦିର ।

୭ । ଜୀର୍ଣ୍ଣୋଦ୍ଧାର ପରେ ପଥପାର୍ଶ୍ୱସ୍ଥ ସଙ୍କଟେଶ୍ୱର ମନ୍ଦିର ।

୮ । ପଶ୍ଚିମ ଶିଖରୋପରି ନିର୍ମିତ କଳିଙ୍ଗ ଶାନ୍ତିସ୍ତୂପ ।



## — କୃତଜ୍ଞତା ଜ୍ଞାପନ —

"ଧଉଳୀର ଇତିହାସ"ର ପ୍ରଚ୍ଛଦପଟର ଚିତ୍ର ରାଜ୍ୟ ସଂଗ୍ରହାଳୟର ପ୍ରସିଦ୍ଧ ଚିତ୍ରଶିଳ୍ପୀ ଶ୍ରୀ ଦୀନନାଥ ପାଠୀଙ୍କ ନିର୍ଦ୍ଦେଶରେ ଅଙ୍କିତ ଏବଂ ଷଷ୍ଠ ଚିତ୍ର ବ୍ୟତୀତ ଅନ୍ୟଗୁଡ଼ିକର ଆଲୋକଚିତ୍ର ଶ୍ରୀ ଦୁର୍ଗାପ୍ରସାଦ ତ୍ରିପାଠୀ, ଆଇ. ଏ. ଏସ୍‌ଙ୍କ ସୌଜନ୍ୟରୁ ପ୍ରାପ୍ତ ହୋଇଥିବାରୁ ମୁଁ ସେମାନଙ୍କ ନିକଟରେ ଚିର କୃତଜ୍ଞ ପାଶରେ ଆବଦ୍ଧ ରହିଲି ।

ବିନୀତ

— ଲେଖକ —

ତା ୨୯ । ୬ । ୭୬

# ପ୍ରଥମ ଅଧ୍ୟାୟ

## ତୋଷଳୀ ଓ ତୋଷଳ ରାଜ୍ୟ

**ତୋଷଳୀର ଅବସ୍ଥିତି—** ଦୟାନଦୀ ବିଧୌତ ସମତଳ ଅଞ୍ଚଳରେ ପ୍ରଥମେ କେବେ 'ତୋଷଳୀ' ନଗରର ଉତ୍ପତ୍ତି ଘଟିଥିଲା ସେ ସମ୍ପର୍କରେ ସମସାମୟିକ ଲେଖଗତ ପ୍ରମାଣ ମିଳି ନାହିଁ । କିନ୍ତୁ ଜୈନମାନଙ୍କ ପ୍ରାଚୀନ କିମ୍ବଦନ୍ତୀ ସମୂହ ଲିପିବଦ୍ଧ ହୋଇଥିବା 'ଆବଶ୍ୟକ ସୂତ୍ର' ନାମକ ଗ୍ରନ୍ଥରୁ ଜଣାଯାଏ ଯେ, ଜୈନମାନଙ୍କର ଶେଷ ତୀର୍ଥଙ୍କର ମହାବୀର ଜୈନଧର୍ମ ପ୍ରଚାର କରିବା ପାଇଁ ପ୍ରଥମେ ତୋଷଳୀକୁ ଯାଇଥିଲେ । ପରେ ସେଠାରୁ ସେ ମୋଷଳୀକୁ ଗଲେ । ଯଥା—

"ତତୋ ଭଗବନ୍ **ତୋଷଳି** ଗଓ । × × ତତ୍ଥ ସୁମାଗହୋ ନାମ ରଟ୍ଠିଓ ପିୟମିତ୍ତୋ ଭଗବଓ ସୋ ମାଏଇ । ତତୋ ସାମୀ **ମୋସଲିମ୍** ଗଓ ।" (୧)

ଭଗବାନ ମହାବୀର ସ୍ୱାମୀଙ୍କ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଆବିର୍ଭାବ ଘଟିଥିବାରୁ ସେ ସମୟକୁ ତୋଷଳୀ ଏକ ପ୍ରଧାନ ନଗର ରୂପେ ପ୍ରସିଦ୍ଧି ଲାଭ କରିଥିବା ଉକ୍ତ ଉଦ୍ଧୃତାଂଶରୁ ଜଣାଯାଏ । ସେ ଏଠାରୁ ନିକଟବର୍ତ୍ତୀ ମୋଷଳୀ ରାଜ୍ୟକୁ ଯାତ୍ରା କରିଥିଲେ ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଆବିର୍ଭୂତ ପ୍ରସିଦ୍ଧ ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀଙ୍କ ଦ୍ୱାରା ବର୍ଣ୍ଣିତ ଉକ୍ତ 'ମେସୋଲସ୍' ବା ମୋଷଳୀ

(୧) 'History of Orissa' Vol. I, published by the Utkal University.

ରାଜ୍ୟ ମାକ୍ କ୍ରିଣ୍ଡଲ୍‌ଙ୍କ ଦ୍ୱାରା କୃଷ୍ଣା ଓ ଗୋଦାବରୀ ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳ ସହିତ ଚିହ୍ନିତ ହୋଇଅଛି । (୨)

ଜୈନ ଲେଖକ ହରିଭଦ୍ର 'ଆବଶ୍ୟକ ସୂତ୍ର' ଉପରେ 'ହରି-ଭଦ୍ରୀୟ ବୃତ୍ତି' ନାମକ ଏକ ଟୀକା ରଚନା କରିଥିଲେ । ସେଥିରୁ ଜଣାଯାଏ, କଳିଙ୍ଗାଧିପତି ଓ ମହାବୀର ସ୍ୱାମୀଙ୍କ ପିତାଙ୍କ ମଧ୍ୟରେ ବନ୍ଧୁତା ଥିବାରୁ କଳିଙ୍ଗ-ରାଜଙ୍କ ନିମନ୍ତ୍ରଣରେ ମହାବୀର ସ୍ୱ-ଧର୍ମ ପ୍ରଚାର କରିବା ପାଇଁ କଳିଙ୍ଗକୁ ଆଗମନ କରିଥିଲେ । ସୁତରାଂ ଐତିହାସିକ କାଶୀପ୍ରସାଦ ଜୟସ୍ୱାଲଙ୍କ ମତରେ ମହାବୀର କୁମାରୀଗିରି (ବର୍ତ୍ତମାନ ଖଣ୍ଡଗିରି) ପର୍ବତ ଶିଖରକୁ ସ୍ୱ-ଧର୍ମ ପ୍ରଚାରର କେନ୍ଦ୍ର କରିଥିଲେ (୩) ମୂଳ ଓ ତାହାର ଟୀକା ଉଭୟ ଗ୍ରନ୍ଥକୁ ମିଳାଇ ପଢ଼ିଲେ ସ୍ପଷ୍ଟ ଜଣାଯାଏ, କଳିଙ୍ଗାଧିପତିଙ୍କ ଅନୁରୋଧ ରକ୍ଷା କରି ମହାବୀର ସ୍ୱାମୀ କଳିଙ୍ଗ ଅନ୍ତର୍ଗତ ତୋଷଳୀ ନଗରକୁ ସ୍ୱଧର୍ମ ପ୍ରଚାର ପାଇଁ ଆଗମନ କରିଥିଲେ । ଏଥିରୁ ସେ ସମୟରେ କଳିଙ୍ଗର ରାଜଧାନୀ ତୋଷଳୀ ନଗରୀରେ ଅବସ୍ଥିତ ଥିବା ସ୍ଥିର କରାଯାଇ ପାରେ ।

ଧଉଳୀ ପାହାଡ଼ରେ ଉତ୍କୀର୍ଣ୍ଣ କଳିଙ୍ଗାନୁଶାସନ ଦ୍ୱୟରେ ସର୍ବ-ପ୍ରଥମେ 'ତୋଷଳୀ'ର ଉଲ୍ଲେଖ ମିଳେ । ସେଥିରୁ ଜଣାଯାଏ ଯେ, ମୌର୍ଯ୍ୟସମ୍ରାଟ୍ ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ) କଳିଙ୍ଗ ବିଜୟ ପରେ ପ୍ରାୟ ୨୮ ବର୍ଷ କାଳ (ଖ୍ରୀ: ପୂ: ୨୬୧-୨୩୨) ଉକ୍ତ ରାଜ୍ୟକୁ ତୋଷଳୀ ନଗରରୁ ଶାସନ କରିଥିଲେ । ବିରାଟ ମୌର୍ଯ୍ୟ ସାମ୍ରାଜ୍ୟର ଶାସନ ପାଇଁ ଅଶୋକ ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳରେ ତକ୍ଷଶୀଳା, ମଧ୍ୟ-ଭାରତରେ ଉଜ୍ଜୟିନୀ, ଦକ୍ଷିଣ ଭାରତରେ ସୁବର୍ଣ୍ଣ ଗିରି (ବର୍ତ୍ତମାନ କର୍ଣ୍ଣାଟକ ରାଜ୍ୟରେ ଅବସ୍ଥିତ) ଓ ପୂର୍ବରେ କଳିଙ୍ଗ ରାଜ୍ୟର ତୋଷଳୀ

(୨) Ptolemy's 'Geography of India' I. A. Vol. XIII, 1884, p. 333.

(୩) Buddhism in Orissa by Dr N. K. Sahu, p. 6

ଠାରେ କୁମାର ଓ ଉଚ୍ଚପଦସ୍ଥ ରାଜ କର୍ମଚାରୀମାନଙ୍କୁ ନିଯୁକ୍ତ କରିଥିଲେ । ତାଙ୍କର ଚତୁର୍ଦ୍ଦଶ ଅନୁଶାସନ ଗୁଡ଼ିକ ସାମ୍ରାଜ୍ୟର ସୀମାନ୍ତ ପ୍ରଦେଶ ଗୁଡ଼ିକରେ ଖୋଦିତ ହୋଇଥିବାର ଜଣାଯାଏ । ସେଥିମଧ୍ୟରୁ ପ୍ରଥମେ ନିମ୍ନଲିଖିତ ଛଅଟି ସ୍ଥାନରେ ସେଗୁଡ଼ିକ ଆବିଷ୍କୃତ ହୋଇଥିଲା— ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଗତ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପେଶୱାର ଜିଲ୍ଲାର 'ସାହାବାଜଗଡ଼ି' (ପ୍ରାଚୀନ କପର୍ଦ୍ଦିଗିରି) ଓ ହାଜାରା ଜିଲ୍ଲାର 'ମାନସେହ୍ରା' ଉତ୍ତରପ୍ରଦେଶର ସାହାରାନପୁର ଜିଲ୍ଲା ଅନ୍ତର୍ଗତ 'କାଲସୀ' ଗୁଜୁରାଟ ଅନ୍ତର୍ଗତ 'ଗିରିନଗର' ବା ଗିର୍ଣ୍ଣାର ଏବଂ ଓଡ଼ିଶାର 'ଧଉଳୀ ପର୍ବତ' ଓ 'ଯୌଗଡ଼ ପର୍ବତ' ।

୧୯୨୯ ମସିହାରେ ଶ୍ରୀ ଅମଳାନନ୍ଦ ଘୋଷ ଆନ୍ଧ୍ର ରାଜ୍ୟର କରନୁଲ ଜିଲ୍ଲାର 'ଯେରାଗୁଡ଼ି' ନାମକ ଗ୍ରାମ ନିକଟବର୍ତ୍ତୀ ପାହାଡ଼ରେ ଖୋଳା ହୋଇଥିବା ଚତୁର୍ଦ୍ଦଶ ଅନୁଶାସନ ଆବିଷ୍କାର କରିଥିଲେ । ଏହି ପାହାଡ଼ଟି ତୁଙ୍ଗଭଦ୍ରା ନଦୀ କୂଳରେ ଅବସ୍ଥିତ । କିନ୍ତୁ ଧଉଳୀ ଓ ଯୌଗଡ଼ରେ ଚତୁର୍ଦ୍ଦଶ ଅନୁଶାସନ ପରିବର୍ତ୍ତରେ ୧୧ଟି ଅନୁଶାସନ ଖୋଦିତ ହୋଇଥିଲା ଏବଂ ଅନ୍ୟ ତିନୋଟି ଅନୁଶାସନ ପରିବର୍ତ୍ତରେ ନୂତନ ବିଜିତ କଳିଙ୍ଗାଧିବାସୀ ମାନଙ୍କର ସୁଶାସନ ନିମନ୍ତେ ଦୁଇଟି ସ୍ୱତନ୍ତ୍ର କଳିଙ୍ଗାନୁଶାସନ ଉତ୍କୀର୍ଣ୍ଣ ହୋଇଥିଲା ।

ଧଉଳୀରେ ଥିବା କଳିଙ୍ଗାନୁଶାସନ ଦୁଇଟି ସୂକ୍ଷ୍ମ ଭାବରେ ବିଚାର କଲେ ସ୍ପଷ୍ଟ ଭାବରେ ଜଣାଯାଏ ଯେ, ତୋଷଳୀ ନଗରୀ ଧଉଳୀ ପାହାଡ଼ ନିକଟରେ ଅବସ୍ଥିତ ଥିଲା ଏବଂ ଏହି ଦୁଇଟି ଅନୁଶାସନ ତୋଷଳୀର ଶାସନ ପରିଚାଳନା କରୁଥିବା 'କୁମାର', 'ମହାମାତ୍ର' ଓ 'ନଗର ବ୍ୟବହାରକ' ପ୍ରଭୃତି ରାଜକର୍ମଚାରୀମାନଙ୍କୁ ଲକ୍ଷ୍ୟ କରି ଲେଖାଯାଇଥିଲା । ପ୍ରଥମ ଅନୁଶାସନର ପ୍ରଥମ ବାକ୍ୟ ହେଉଛି—

> "ଦେବାନାଂ ପିୟସ ବଚନେନ ତୋସଲୟଂ ମହାମାତା ନଗଲବିୟୋହାଲକା ଚ ବତବିୟ, ଅଂକିଛିଦଖାମି ହକଂତଂ ଇଛାମି କିଂତି କଂମନ ପଟିବେଦୟେହଂ ।"

ଅର୍ଥାତ୍ ଦେବପ୍ରିୟ (ଅଶୋକ) ତୋଷଳୀରେ ଅବସ୍ଥିତ ମହାମାତ୍ର (ମହାମାତ୍ୟ) ଓ ନଗର ବ୍ୟବହାରକ (ନଗର ପରିଚାଳକ)ଙ୍କୁ ନିର୍ଦ୍ଦେଶ ଦେଉଛନ୍ତି— "ମୁଁ ଯାହାକିଛି ଦେଖେ ବା ମନରେ ଭାବେ ତାହାକୁ କାର୍ଯ୍ୟରେ ପରିଣତ କରିବାକୁ ଇଚ୍ଛା କରେ।" ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ରାଜ କର୍ମଚାରୀମାନେ ଅନୁଶାସନରେ ଖୋଦିତ ହୋଇଥିବା ଧଉଳି ପାହାଡ଼ ନିକଟବର୍ତ୍ତୀ କୌଣସି ସ୍ଥାନରେ ଅବସ୍ଥାନ କରୁଥିଲେ । ଏହା ପରେ ସେ ନାନାପ୍ରକାର ଉପଦେଶ ଦେଇ ଶେଷଆଡ଼କୁ ଲେଖିଛନ୍ତି— "ଆଦେଶ ପାଳନ ମହା ଫଳପ୍ରଦ ଓ ଆଦେଶ ଲଂଘନ ବିପଜ୍ଜନକ । ଯେଉଁମାନେ ଆଦେଶ ଲଂଘନ କରୁଛନ୍ତି, ସେମାନେ ନିଜର ସ୍ୱାର୍ଥହାନି ଓ ରାଜାଙ୍କ ଶତ୍ରୁତାଚରଣ କରୁଛନ୍ତି । ରାଜାଙ୍କ ଆଦେଶ ଅନୁଯାୟୀ କାର୍ଯ୍ୟ କଲେ ଦୁଇଟି ଫଳଲାଭ ହେବ—ପ୍ରଥମଟି ସ୍ୱର୍ଗଲାଭ ଓ ଦ୍ୱିତୀୟଟି ମୋର ସନ୍ତୋଷ ବିଧାନ ।" (ମୂଳର ଓଡ଼ିଆ ଅନୁବାଦ)

ନଗରବାସୀଙ୍କୁ ରାଜାଜ୍ଞା ବୁଝାଇବା ଅନୁଶାସନ ଉତ୍କୀର୍ଣ୍ଣ କରିବାର ପ୍ରଧାନ ଲକ୍ଷ୍ୟ ଥିବାରୁ ସେ ଆଦେଶ ଦେଇଛନ୍ତି— "ଏହି ଧର୍ମଲିପି ତିଷ୍ୟ (ପୁଷ୍ୟ) ନକ୍ଷତ୍ର ଯୁକ୍ତ ଦିନମାନଙ୍କରେ ଲୋକମାନଙ୍କୁ ବୁଝାଇ ଦେବ । ଆଉ ମଧ୍ୟେ ମଧ୍ୟେ ଜଣେ ଲୋକ ଶୁଣିବା ଇଚ୍ଛାକଲେ ତାକୁ ବୁଝାଇ ଦେବ । ଏହିପରି ଭାବରେ ତୁମ୍ଭେମାନେ ମୋର ଆଦେଶ ପାଳନ କରିବ ।" ଏହା ପରେ କେବଳ ନଗରର ଶାସନକର୍ତ୍ତାଙ୍କୁ ଲକ୍ଷ୍ୟକରି ଲେଖାଯାଇଛି—

— ମୂଳର ସଂସ୍କୃତାନୁବାଦ —

"ଏତଦ୍ଭେ ଅର୍ଥାପ୍ରେପ୍ସୁଂ ଲିପି ଲେଖିତା ହିତେନ ନଗର ବ୍ୟବହାରକାଃ ଶାଶ୍ୱତଂ ସମୟଂ ଯୁଞ୍ଜ୍ୟରନ୍ନିତି, ନଗର ଜନସ୍ୟାକସ୍ମାତ୍-ପରିବାଧୋ ବା ଅକସ୍ମାତ୍ ପରି-କ୍ଲେଶୋ ବା ନସ୍ୟାତ୍ ।"

ଅର୍ଥାତ୍ ଏହି ଧର୍ମଲିପି ଲେଖିବାର ଉଦ୍ଦେଶ୍ୟ ଏହି ଯେ, ନଗର ବ୍ୟବହାରକ ବା ନଗରର ଶାସନକର୍ତ୍ତା ଚିରକାଳ ନଗରବାସୀଙ୍କ ହିତ

ଓ ସୁଖ ପାଇଁ ସମସ୍ତ ସମୟ ନିୟୋଗ କରିବେ । ନଗରବାସୀଙ୍କର ଯେପରି କୌଣସି ଆକସ୍ମିକ ବିପତ୍ତି ବା କ୍ଲେଶ (ଅଗ୍ନିକାଣ୍ଡ, ହତ୍ୟାକାଣ୍ଡ, ଶତ୍ରୁ ଆକ୍ରମଣ, ବନ୍ୟା, ରୋଗଭୟ ଇତ୍ୟାଦି) ନ ହୁଏ ସେଥିପ୍ରତି ନଗର ପରିଚାଳକ ସର୍ବଦା ଦୃଷ୍ଟି ଦେବେ ।

ଦ୍ୱିତୀୟ କଳିଙ୍ଗାନୁଶାସନ ଆରମ୍ଭରେ ତୋଷଳୀରେ ଅବସ୍ଥିତ 'କୁମାର' (ରାଜକୁମାର ଓ ମହାମାତ୍ରମାନଙ୍କୁ ସୁଶାସନ ପାଇଁ କଠୋର ନିର୍ଦ୍ଦେଶ ଏବଂ ନୂତନ ବିଜିତ କଳିଙ୍ଗର ଅସନ୍ତୁଷ୍ଟ ଓ ଉଦ୍‌ବିଗ୍ନ ପ୍ରଜାମାନଙ୍କୁ ଗଭୀର ସାନ୍ତ୍ୱନା ଦିଆଯାଇଛି । ପ୍ରଜାମାନଙ୍କୁ ଲକ୍ଷ୍ୟକରି ସେ ପ୍ରାଣର ଆବେଗରେ ଘୋଷଣା କରିଛନ୍ତି — "ସେମାନେ ମୋତେ ଭୟ କରନ୍ତୁ ନାହିଁ । ସେମାନେ ଉଦ୍‌ବିଗ୍ନ ହୁଅନ୍ତୁ ନାହିଁ । ସେମାନେ ମୋତେ ବିଶ୍ୱାସ କରନ୍ତୁ । ସେମାନେ ସୁଖରେ ରହନ୍ତୁ ଓ ଦୁଃଖଭୋଗ ନ କରନ୍ତୁ । ସେମାନେ ବୁଝନ୍ତୁ ଯେ, ଯାହା କ୍ଷମଣୀୟ, ତାହା ସେ (ଅଶୋକ) କ୍ଷମା ଦେବାକୁ ସର୍ବଦା ତତ୍ପର ।" × × ×

ପ୍ରଜାମାନଙ୍କୁ ଆଶ୍ୱାସନା ଦେବାପାଇଁ ପୁଣି ଲେଖାଯାଇଛି— "ପ୍ରଜାମାନେ ବୁଝନ୍ତୁ, ଦେବପ୍ରିୟ (ଅଶୋକ, ଆମ୍ଭମାନଙ୍କ ପିତୃ ସଦୃଶ । ସେ ନିଜ ସନ୍ତାନର ଯେପରି କଲ୍ୟାଣ ଇଚ୍ଛା କରନ୍ତି, ଅମ୍ଭମାନଙ୍କର ମଧ୍ୟ ସେହିପରି କଲ୍ୟାଣ କାମନା କରନ୍ତି । ଆମ୍ଭେମାନେ ରାଜାଙ୍କର ସନ୍ତାନ ତୁଲ୍ୟ ।"

ନାଗରିକମାନଙ୍କ ହିତସୁଖ ସାଧନ ପ୍ରତି ପ୍ରିୟଦର୍ଶୀ ରାଜା ବିଶେଷ ଗୁରୁତ୍ୱ ଆରୋପ କରୁଥିବା ବିଷୟ ସେମାନଙ୍କୁ ବୁଝାଇବ । ପ୍ରଥମ କଳିଙ୍ଗାନୁଶାସନ ଖୋଦନର ପ୍ରଧାନ ଲକ୍ଷ୍ୟ ଥିବାରୁ ଏହାକୁ ଧାରଣ କରୁଥିବା ଶୈଳଖଣ୍ଡ ନିକଟରେ ତୋଷଳୀ ନଗରର ଅବସ୍ଥିତି ନିଃସନ୍ଦେହରେ ନିର୍ଦ୍ଧାରିତ ହୋଇପାରେ । ଏହା ମଧ୍ୟ ଦ୍ୱିତୀୟ କଳିଙ୍ଗାନୁଶାସନ ଦ୍ୱାରା ସମର୍ଥିତ ହୁଏ । ଏଥିରେ ତୋଷଳୀରେ ଅବସ୍ଥିତ ରାଜକୁମାରଙ୍କ ଦ୍ୱାରା ଅଳ୍ପଦିନ ପୂର୍ବେ ସ୍ୱାଧୀନତା ହରାଇଥିବା ବିକ୍ଷୁବ୍ଧ ଓ ଅସନ୍ତୁଷ୍ଟ କଳିଙ୍ଗ ଜନତା ମଧ୍ୟରେ ଦେବପ୍ରିୟ (ଅଶୋକ)ଙ୍କର ଶାନ୍ତି ଓ ସାନ୍ତ୍ୱନା ମନ୍ତ୍ର-

ପ୍ରତି ମହାଘୋଷଣା ପ୍ରଚାର କରାଇବା ପାଇଁ କଠୋର ନିର୍ଦ୍ଦେଶ ଦିଆଯାଇଛି । ତେଣୁ ରାଜାଜ୍ଞା ଘୋଷଣା ଖୋଦିତ ହୋଇଥିବା ଧଉଳୀ ପାହାଡ଼ ଜନାକୀର୍ଣ୍ଣ ଶାସନ କେନ୍ଦ୍ର ତୋଷଳୀ ନିକଟରେ ଦଣ୍ଡାୟମାନ ଥିବା ସୁନିଶ୍ଚିତ ।

ବିରାଟ ଭାରତ ଉପମହାଦେଶର ବିଭିନ୍ନ ପ୍ରାନ୍ତରେ ଆବିଷ୍କୃତ ଅଶୋକଙ୍କ ଅଭିଲେଖ ସମୂହର ଅବସ୍ଥିତି ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ସେଗୁଡ଼ିକ ସାଧାରଣତଃ ଶାସନକେନ୍ଦ୍ର ବା ଜନାକୀର୍ଣ୍ଣ ପ୍ରସିଦ୍ଧ ନଗର ଗୁଡ଼ିକ ଅଦୂରରେ ଉତ୍କୀର୍ଣ୍ଣ ହୋଇଥିଲା । ସାହାବାଜଗଡ଼ି ଲେଖ ପ୍ରାଚୀନ 'ପୁଷ୍କରାବତୀ' ନଗରୀ ନିକଟରେ 'ମାନ-ସେହ୍ରା' ଧର୍ମଲିପି 'ରାଜପୁର' ଓ 'ଅଭିସାର' ନାମକ ଦୁଇଟି ନଗରର ଅଦୂରରେ, 'ସ୍ୱତନ୍ତ୍ର ଶୈଳଲେଖ ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳର ରାଜଧାନୀ ତକ୍ଷଶୀଳାରେ, କଲସୀ ଲେଖ 'ସ୍ରୁଘ୍ନ' ନାମକ ନଗର ଉପ-କଣ୍ଠରେ, ରାଣୀଙ୍କ ଲେଖ ପ୍ରସିଦ୍ଧ ଶାସନକେନ୍ଦ୍ର 'କୌଶାମ୍ବୀ'ରେ, ଲୁମ୍ବିନୀ ସ୍ତମ୍ଭଲେଖ 'କପିଳବାସ୍ତୁ' ନଗରର ଅଳ୍ପ ଦୂରରେ, 'ବାରବାର ପର୍ବତ' (ଗୋରଥ ଗିରି) ଲେଖ ବୌଦ୍ଧକେନ୍ଦ୍ର ଗୟାର ଅଦୂରରେ, ବୈରାଟ ଶୈଳ ଲେଖ ରାଜସ୍ଥାନ ଅନ୍ତର୍ଗତ 'ବିରାଟ ନଗର' ନିକଟରେ, ଏକ ସ୍ୱତନ୍ତ୍ର ଶୈଳ ଲେଖ ମଧ୍ୟଭାରତର ରାଜଧାନୀ ଉଜ୍ଜୟିନୀରେ, ସାଞ୍ଚୀ ସ୍ତମ୍ଭଲେଖ 'ବିଦିଶା' ନଗର ନିକଟରେ, ଗିର୍ଣ୍ଣାର ଅନୁଶାସନ ପଶ୍ଚିମ ଭାରତର ରାଜଧାନୀ 'ଗିରି-ନଗର'ର ସୀମାରେ ଖୋଦିତ ହୋଇଥିଲା ।

ଗିର୍ଣ୍ଣାର ଠାରେ ଅଶୋକଙ୍କ ଅନୁଶାସନ ଉତ୍କୀର୍ଣ୍ଣ ହୋଇଥିବା ଶୈଳଖଣ୍ଡରେ ପରବର୍ତ୍ତୀ କାଳରେ ଶକ ନୃପତି 'ରୁଦ୍ରଦାମନ' (ପ୍ରଥମ ଶତାବ୍ଦୀ) ଓ ଗୁପ୍ତ ସମ୍ରାଟ ସ୍କନ୍ଦଗୁପ୍ତଙ୍କ ଲେଖ ଖୋଦିତ ହୋଇଥିବାର ଦେଖାଯାଏ । ଏହା ମୌର୍ଯ୍ୟ ଯୁଗରୁ ସୌରାଷ୍ଟ୍ର ପ୍ରଦେଶର ରାଜଧାନୀ ଥିଲା । ଉକ୍ତ ଲେଖରୁ ଜଣାଯାଏ ଯେ, ଅଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ 'ଗିରିନଗର' ନିକଟରେ 'ସୁଦର୍ଶନ' ନାମକ ବିରାଟ ଜଳାଶୟ ଖନନ କରିଥିଲେ । ପଶ୍ଚିମ ଭୂଖଣ୍ଡସ୍ଥ ଗିରିନଗର ପରି ପୂର୍ବ

ଭୂଖଣ୍ଡରେ କଳିଙ୍ଗର ରାଜଧାନୀ ତୋଷଳୀ ଅଶୋକଙ୍କ 'ଧର୍ମଲିପି' ଧାରଣ କରିଥିବା ଧଉଳୀ ପାହାଡ଼ ନିକଟରେ ଅବସ୍ଥିତ ହେବାର ନିର୍ଦ୍ଧାରରେ ସ୍ଥିର କରାଯାଇପାରେ । ଏହା ନିକଟବର୍ତ୍ତୀ କପିଳେଶ୍ୱର ଗ୍ରାମରୁ ଲବ୍ଧ ନାମ ସ୍ତମ୍ଭଲେଖର ପ୍ରତିଲିପି (ଖ୍ରୀ: ପୂ: ୨୫୦ ଅବ୍ଦ) ଭାସ୍କରେ-ଶ୍ୱର ମନ୍ଦିର ନିକଟରୁ ମିଳିଥିବା ସିଂହ ଗାତ୍ରରେ ପଞ୍ଚମ ଶତାବ୍ଦୀର ଏକ ଲେଖ ଏବଂ ଅଶୋକ ଅନୁଶାସନ ସମ୍ମୁଖସ୍ଥ ଏକ ଗୁମ୍ଫାରେ ୮ମ ଭୌମ ସମ୍ବତ୍ ବା ୭୦୬ ଖ୍ରୀଷ୍ଟାବ୍ଦରେ ଖୋଦିତ ଭୌମସମ୍ରାଟ୍ ଶ୍ରୀ ଶାନ୍ତିକରଙ୍କ ରାଜତ୍ୱ କାଳୀନ ଅଭିଲେଖର ଆବିଷ୍କାର ଦ୍ୱାରା ଅନ୍ତତଃ ପ୍ରାୟ ଏକ ସହସ୍ର ବର୍ଷ ପର୍ଯ୍ୟନ୍ତ ଧଉଳୀ ପାହାଡ଼ ନିକଟରେ ଏହି ଶାସନକେନ୍ଦ୍ର ବିଦ୍ୟ-ମାନ ଥିଲା । ସାଧାରଣତଃ ସବୁ ଯୁଗରେ ଜନତାର ଦୃଷ୍ଟି ଆକର୍ଷଣ ଲାଗି ବିଜ୍ଞାପନ ଓ ଶାସନ ସମ୍ପର୍କୀୟ ଗୁରୁତ୍ୱପୂର୍ଣ୍ଣ ଘୋଷଣା ସମୂହ ଶାସନକେନ୍ଦ୍ର ବା ବଡ଼ ବଡ଼ ନଗରର ଜନାକୀର୍ଣ୍ଣ ଅଞ୍ଚଳରେ ଲିପିବଦ୍ଧ କରାଯାଇଥାଏ । ଏହି ସନାତନ ନିୟମାନୁଯାୟୀ 'ଗଜୋତ୍ତମ' ମହାପୁରୁଷ ଗୌତମଙ୍କ ସଙ୍କେତ ରୂପୀ ପୂଜାପ୍ରାପ୍ତ ହସ୍ତୀ ଚିତ୍ର ଏବଂ ବୌଦ୍ଧଧର୍ମ ପ୍ରଚାର ପାଇଁ ସର୍ବସ୍ୱ ଉତ୍ସର୍ଗ କରିଥିବା ଦେବପ୍ରିୟଙ୍କ ପ୍ରାଣସ୍ପର୍ଶୀ ଘୋଷଣା ବହନ କରିଥିବା ଧଉଳୀ ପାହାଡ଼ କଳିଙ୍ଗର ଶାସନ କେନ୍ଦ୍ର ତୋଷଳୀ ନିକଟରେ ଅବସ୍ଥିତ ଥିବାର ନିର୍ବିବାଦରେ ଗ୍ରହଣ କରାଯାଇପାରେ ।

ଧଉଳୀରେ ଅଶୋକ ଯୁଗର ବହୁ ପ୍ରାଚୀନ ବୌଦ୍ଧକୀର୍ତ୍ତିର ଆବିଷ୍କାର, ନିକଟରେ ତୋଷଳୀ ନଗରର ଅବସ୍ଥିତି ସମ୍ପର୍କରେ ଅକାଟ୍ୟ ପ୍ରମାଣ ରୂପେ ଗ୍ରହଣୀୟ । ପ୍ରିୟଦର୍ଶୀଙ୍କ ରାଜତ୍ୱର ବୈଭବ ଓ ଗୌର-ବର ମୂକସାକ୍ଷୀ ସ୍ୱରୂପ ଧଉଳୀ ପାହାଡ଼ ଗାତ୍ରର ନିର୍ମିତ ଓ ପରବର୍ତ୍ତୀ କାଳରେ 'ଅଶ୍ୱତ୍ଥାମା' ନାମରେ ପରିଚିତ ହସ୍ତୀ ଅଦ୍ୟାପି ସଗର୍ବରେ ଦଣ୍ଡାୟମାନ । ଦେବପ୍ରିୟଙ୍କ ଆଦେଶରେ ବୌଦ୍ଧ ଶ୍ରମଣମାନଙ୍କ 'ବର୍ଷା-ବାସ' ପାଇଁ ପର୍ବତରେ ଖୋଦିତ ବହୁସଂଖ୍ୟକ କ୍ଷୁଦ୍ର ଗୁମ୍ଫା, ଦ୍ୱିସହସ୍ର ଦ୍ୱିଶତ ବର୍ଷର ଝଡ଼ଝଞ୍ଜା, ପାଣିପବନ ଓ ଖରା କାକର ସହ୍ୟକରି ମଧ୍ୟ ଅଦ୍ୟାପି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ବିଦ୍ୟମାନ । ସେଥିମଧ୍ୟରୁ ଅଧିକାଂଶ ଗୁମ୍ଫା ଦକ୍ଷିଣାଭିମୁଖ ହୋଇଥିବାରୁ ଦୟା ତୀରବର୍ତ୍ତୀ ଉଚ୍ଚତମ

ପାହାଡ଼ର ଦକ୍ଷିଣକୁ ତୋଷଳୀ ନଗର ଅବସ୍ଥିତ ଥିବାର ପ୍ରତ୍ନତାତ୍ତ୍ୱିକ ବର୍ଗର ଦ୍ୱାରା ସ୍ଥିର କରାଯାଇପାରେ । ଅଶୋକଙ୍କ ପ୍ରଚାରିତ ବୌଦ୍ଧ ଧର୍ମର ଦୁଇଟି ସ୍ମୃତିସ୍ତମ୍ଭ ସ୍ୱରୂପ ଉଚ୍ଚତମ ପାହାଡ଼ର ପୂର୍ବଶିଖର ଓ ହସ୍ତୀମଣ୍ଡିତ ପାହାଡ଼ର ପୂର୍ବଭାଗରେ ଦୁଇଟି ସ୍ତୂପ ନିର୍ମିତ ହୋଇଥିଲା । ଗତ ଶତାବ୍ଦୀର ଦୁଇ ବିଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ମାର୍କହାମ କିଟୋ (୧୮୩୭) ଓ ବେଗଲାର (୧୮୭୫) ଙ୍କ ଧଉଳୀ ପର୍ବତ ପରିଦର୍ଶନ ସମୟ ପର୍ଯ୍ୟନ୍ତ ଏହି ଦୁଇଟି ସ୍ତୂପର ଧ୍ୱଂସାବଶେଷ ସ୍ୱରୂପ ରହିଥିବା ଇଟାଖଣ୍ଡ ଗୁଡ଼ିକ ଇତସ୍ତତଃ ବିକ୍ଷିପ୍ତ ଅବସ୍ଥାରେ ପଡ଼ିଥିଲା । କିଟୋ ମଧ୍ୟ ଏହି ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ ସମତଳ ଭୂମିରେ କେତେକ ପ୍ରାଚୀନ ପ୍ରାସାଦର ଧ୍ୱଂସାବଶେଷ ଥିବାର ଲକ୍ଷ୍ୟ କରିଥିଲେ । ଜେ· ଡବଲିଉ ମାକକ୍ରିଣ୍ଡିଲ (J. W. Mc. Crindle) ନାମକ ପାଶ୍ଚାତ୍ୟ ଐତିହାସିକ ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀଙ୍କ "ଭାରତର ଭୌଗୋଳିକ ବିବରଣୀ" ପୁସ୍ତକ ସମ୍ବନ୍ଧରେ ଆଲୋଚନା ପ୍ରସଙ୍ଗରେ ତୋଷଳୀ କୌଶଲ୍ୟାଗଙ୍ଗ ପାର୍ଶ୍ୱ ଭାଗରେ ଅବସ୍ଥିତ ଥିବାର ସ୍ଥିର କରିଥିଲେ । ତାଙ୍କର ସୁଚିନ୍ତିତ ମତ ନିମ୍ନରେ ଉଦ୍ଧାର କରାଗଲା —

"Tosalei, called Metropolis, has become of great importance since recent Archaeological discoveries have led to the finding of the name in the Asoka inscriptions on the Dhauli rock. The inscription begins thus— "By the orders of Devānāmpiya (beloved of the Gods) it is enjoined to the public officers charged with the administration of the city of Tosali" Vestiges of a larger city have been discovered not far from the site of this monument and there can be no doubt that the Toshali of the inscription was the capital in Asoka's time of the province of Orissa and continued to be so till at least the time of Ptolemy. The city was situated

on the margin of a pool called Kosala-Ganga, which was an object of great religious veneration through out all the country." (୪)

ଏତେଗୁଡ଼ିଏ ପ୍ରାଚୀନ ବୌଦ୍ଧକୀର୍ତ୍ତିର ଏକତ୍ର ସମାବେଶ ଯୋଗୁଁ କୋଶଳ ନଗର ତାହାର ଗୌରବମୟ ଯୁଗରେ ଉତ୍ତର ଓ ପଶ୍ଚିମରେ ଦୟାନଦୀ ପର୍ଯ୍ୟନ୍ତ ଓ ପୂର୍ବରେ ବର୍ତ୍ତମାନ ବିରାଟ କୌଶଲ୍ୟାଗଙ୍ଗ ଜଳାଶୟର ପଶ୍ଚିମ ସୀମା ମଧ୍ୟବର୍ତ୍ତୀ ଭୂଭାଗ ଉପରେ ବିସ୍ତୃତ ଥିବାର ସିଦ୍ଧାନ୍ତ କରାଯାଇପାରେ ।

ଏହି ସିଦ୍ଧାନ୍ତ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ରଚିତ ମହାଯାନୀ ବୌଦ୍ଧ-ମାନଙ୍କ ଦ୍ୱାରା ବିଶେଷ ଆଦୃତ ଗଣ୍ଡବ୍ୟୂହ ବା ଅବତଂସକ ସୂତ୍ରରେ ପ୍ରଦତ୍ତ କୋଶଳ ନଗର ବର୍ଣ୍ଣନା ଦ୍ୱାରା ସମର୍ଥିତ ହୁଏ । ଏଥିରୁ ଜଣାଯାଏ ଯେ, କୋଶଳ ନଗରର ଉତ୍ତର ଦିଗ୍‌ବିଭାଗରେ ସୁରଭି ନାମକ ପର୍ବତ ବିଦ୍ୟମାନ ଥିଲା । ଏହା ଏକ ବହୁ ଜନବସତିପୂର୍ଣ୍ଣ ନଗର ଥିଲା । ଏହାର କେନ୍ଦ୍ରସ୍ଥଳରେ ଥିବା ଶୃଙ୍ଗାଟକ (ଚତୁଷ୍ପଥ ବା ଚଉଛକ)ରୁ ଚତୁର୍ଦ୍ଦିଗକୁ ପ୍ରଶସ୍ତ ରାଜପଥମାନ ବିସ୍ତୀର୍ଣ୍ଣ ହୋଇଥିଲା । ଏହି ପଥଗୁଡ଼ିକରୁ ବାହାରିଥିବା ସାହି, ଗଳି, କନ୍ଦିଗୁଡ଼ି-ର ଉଭୟ ପାର୍ଶ୍ୱ ଗୃହମାଳା ଦ୍ୱାରା ଶୋଭିତ ଥିଲା । ଏହି ଜନାକୀର୍ଣ୍ଣ ନଗରର ଉତ୍ତର ପ୍ରାନ୍ତବର୍ତ୍ତୀ ସୁରଭି ପର୍ବତ (ଧଉଳୀ ପାହାଡ଼)ର ଶିଖର ପ୍ରଦେଶ ବହୁ ଭେଷଜ ଉପବନ ଓ ପ୍ରମୋଦୋଦ୍ୟାନ ଦ୍ୱାରା ମଣ୍ଡିତ ଥିଲା । (୫)

ସୁରଭି ପର୍ବତ — ବର୍ତ୍ତମାନ ଧଉଳୀ ପାହାଡ଼ର ପ୍ରାଚୀନ ନାମ ସମ୍ବନ୍ଧରେ ଆଲୋଚନା ଆବଶ୍ୟକ । ଧଉଳୀରେ ଥିବା ପ୍ରଥମ ଅନୁଶାସନର ପ୍ରଥମ ଧାଡ଼ିରେ ପର୍ବତର ନାମ ଜ୍ଞାପକ ଶବ୍ଦଟି

(୪) Indian Antiquary, Vol. XIII (1884), P. 352.

(୫) ବିସ୍ତୃତ ବିବରଣୀ ପାଇଁ 'କୋଶଳୀର ପ୍ରାଚୀନ ବୌଦ୍ଧକୀର୍ତ୍ତି' ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଅକ୍ଷର କାଳକ୍ରମେ ଲିଭିଗଲାଣି । ଯଥା—"ଇୟଂ ଧଂମଲିପି × × × ସି ପବତସି ଦେବାନଂ ପିୟେନା ପିୟଦସିନା ଲିଖିତା ।" "ଅର୍ଥାତ୍ ଏହି ଧର୍ମଲିପି ଦେବପ୍ରିୟଙ୍କ ଆଦେଶରେ × × × ପର୍ବତରେ ଲେଖାଯାଇଅଛି ।" ଏହି ତିନୋଟି ଅକ୍ଷର ଲୋପ ହୋଇଯିବାରୁ ପର୍ବତର ନାମ ଜଣାପଡୁ ନ ଥିଲା । କିନ୍ତୁ 'ଗଣ୍ଡବ୍ୟୂହ' ଗ୍ରନ୍ଥର ଆବିଷ୍କାର ପରେ ଏହି ପର୍ବତର ପ୍ରାଚୀନ ନାମ 'ସୁରଭ' ଥିବା ସ୍ଥିର କରାଗଲା । ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁତ୍ଥାନ ଯୁଗରେ ପ୍ରାଚୀନ ବୌଦ୍ଧ ଓ ଜୈନ କୀର୍ତ୍ତି ମଣ୍ଡିତ ବହୁ ପର୍ବତର ନାମ ପରି ଏହାର ନାମ ମଧ୍ୟ ପରିବର୍ତ୍ତିତ ହୋଇଥିଲା । ଯଥା— ଶ୍ରୀ ଖାରବେଳଙ୍କ ସମ୍ପ୍ରଦାୟ ଜୈନମାନଙ୍କ ପାଇଁ ନିର୍ମିତ ନାନା ଲେଣ (ଗୁମ୍ଫା), ବାପୀ ଓ ମନ୍ଦିର ଶୋଭିତ ସୋମବଂଶୀୟ ପ୍ରଖ୍ୟାତ ନରପତି ଉଦ୍ୟୋତକେଶରୀଙ୍କ (୧୦୩୫-୧୦୬୦ ଖ୍ରୀଷ୍ଟାବ୍ଦ) ରାଜତ୍ୱ ଶେଷପର୍ଯ୍ୟନ୍ତ ଏକ ଜୈନପୀଠ ଥିବା କୁମାରୀ ପର୍ବତର ନାମ ହେଲା ଖଣ୍ଡଗିରି ବା ଖଣ୍ଡଗିରି । 'କଳିଙ୍ଗ ଚକ୍ରବର୍ତ୍ତୀ' ସମଗ୍ର ଭାରତ ବିଜୟୀ ଜୈନସମ୍ରାଟ ଶ୍ରୀ ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଲେଖ ଓ ରାଣୀହଂସପୁର ପ୍ରଭୃତି ବହୁ ଭାସ୍କର୍ଯ୍ୟ ଖଚିତ ଜୈନଗୁହା ଧାରଣ କରିଥିବା 'କୁମାରୀ ପର୍ବତ'ର ନୂତନ ନାମ ହେଲା ଉଦୟଗିରି ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରୁ ବହୁ ବୌଦ୍ଧସ୍ତୂପ, ସ୍ତମ୍ଭ ଓ ବିହାରାଦି ଦ୍ୱାରା ପରିଶୋଭିତ ଓ ସମଗ୍ର ଭାରତରେ ଏକ ପ୍ରସିଦ୍ଧ ବୌଦ୍ଧକେନ୍ଦ୍ର ରୂପେ ବିଖ୍ୟାତ 'ପୁଷ୍ପଗିରି' ନାମ ହୋଇଗଲା 'ଲଳିତଗିରି' ବା 'ଉଦୟଗିରି' । ଅଶୋକଙ୍କ ଏକାଦଶଟି ଅନୁଶାସନ ଓ ଦୁଇଟି କଳିଙ୍ଗ ଅନୁଶାସନ ଉତ୍କୀର୍ଣ୍ଣ ହୋଇଥିବା ଋଷିକୁଲ୍ୟା ତୀରବର୍ତ୍ତୀ 'ଖପିଙ୍ଗଳ' ପର୍ବତର ପ୍ରାଚୀନ ନାମ ଲୁପ୍ତ ହୋଇ ପରବର୍ତ୍ତୀ କାଳରେ ଏହା ନିକଟରେ 'ଯଉଗଡ଼' ନିର୍ମିତ ହେବାରୁ ଲୋକେ ଏହାକୁ ଯୌଗଡ଼ ପର୍ବତ ବୋଲି କହିବାକୁ ଲାଗିଲେ । ବୌଦ୍ଧ ମହାଯାନ ପନ୍ଥାର ପ୍ରବର୍ତ୍ତକ ଭାରତ ପ୍ରସିଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନଙ୍କ ନିବାସ ପାଇଁ ବିରାଟ ବିହାର ଧାରଣ କରିଥିବା 'ପରିମଳଗିରି' ବ୍ରାହ୍ମଣ୍ୟ ଯୁଗରେ 'ଗନ୍ଧମାଦନ' ପର୍ବତ ନାମରେ

ଅଭିହିତ ହେଲା । କେବଳ ଯେ ଉତ୍କଳରେ ଏପରି ଘଟିଲା, ତାହା ନୁହେଁ ଏହି ନାମ ପରିବର୍ତ୍ତନ ସ୍ରୋତ ସମଗ୍ର ଭାରତକୁ ପ୍ଲାବିତ କରିଥିଲା । ତେଣୁ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶସ୍ଥ ଅଶୋକଙ୍କ ଚତୁର୍ଦ୍ଦଶ ଅନୁଶାସନ ମଣ୍ଡିତ 'କପର୍ଦ୍ଦିଗିରି' ନାମ ହେଲା 'ସାହାବାଜଗଡ଼ି' ।

ମୌର୍ଯ୍ୟ ଓ ମୌର୍ଯ୍ୟ ପରବର୍ତ୍ତୀ ଯୁଗର ବହୁ ଗୁହା ଶୋଭିତ ମଗଧ (ବିହାର) ଅନ୍ତର୍ଭୁକ୍ତ 'ଗୋରଥଗିରି'ର ପରବର୍ତ୍ତୀ ନାମ ହେଲା 'ପ୍ରବରଗିରି' ବା 'ବାରବାର ପର୍ବତ' । ସେଠାରେ ଅଶୋକଙ୍କ ଲେଖ ଖୋଦିତ ହୋଇଥିବା ନ୍ୟଗ୍ରୋଧ ଗୁହା, ଖଲତିକ ଗୁହା ଓ ସୁପ୍ରିୟ ଗୁହାର ବର୍ତ୍ତମାନ ନାମ ହେଉଛି 'କର୍ଣ୍ଣଚୌପର', ସୁଦାମା, ବିଶ୍ୱାମିତ୍ର (ବିଶ୍ୱଝୋପ୍ରି) । ଅନ୍ୟ ଗୋଟିଏ କ୍ଷୁଦ୍ର ଗୁମ୍ଫା ଲୋମଶଋଷି ଗୁମ୍ଫା ନାମରେ ପରିଚିତ—(Barua Asoka and his Inscriptions, Part II, page. 8)

ସେହିପରି 'ତୋଷଳୀ' ନଗର କାଳକ୍ରମେ ଲୋକମୁଖରେ ଧଉଳୀ ରୂପରେ ପରିବର୍ତ୍ତିତ ହେବାରୁ (୬) ଏହା ନିକଟରେ ଥିବା ସୁଉଚ୍ଚ ପର୍ବତ କ୍ରମଶଃ ବନ୍ଦିତ ହୋଇ ନଗର ନାମାନୁସାରେ ପର୍ବତର ନାମ ହେଲା ଧଉଳୀ ପର୍ବତ । ଏହି ପର୍ବତ ଶିଖରରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ନିର୍ମିତ ଶିବ 'ଧବଳେଶ୍ୱର' ନାମରେ ଅଦ୍ୟାବଧି ପୂଜିତ ହେଉଛନ୍ତି । ତାଙ୍କ ନାମ ଲୋକମୁଖରେ କ୍ରମଶଃ ଅପଭ୍ରଷ୍ଟ ହୋଇ 'ଧଉଳେଶ୍ୱର'

---

(୬) ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ 'ତୋଷଳୀ' ଶବ୍ଦ କାଳକ୍ରମେ 'ତୋହଲି', 'ଦୋହଲି' ଓ 'ଧଉଳୀ' ରୂପେ ଅପଭ୍ରଷ୍ଟ ହୋଇଥିବା ଭାଷାତତ୍ତ୍ୱ ଦୃଷ୍ଟିରୁ ବିଚାର କରି ସ୍ଥିର କରିଥିଲେ । ପ୍ରସିଦ୍ଧ ବୌଦ୍ଧପଣ୍ଡିତ ସିଲ୍ଭାନ ଲେଭି 'କୋଶଳ' ପରିବର୍ତ୍ତିରେ 'କୋହଳ' ବ୍ୟବହାର ଥିବା ଉଲ୍ଲେଖ କରିଛନ୍ତି । ପ୍ରାକୃତ ଭାଷାବିତ୍ ପଣ୍ଡିତ ପିସେଲ୍ (Pischel) 'ଷ' କାଳକ୍ରମେ 'ହ' ରୂପ ଧାରଣ କରିଥିବା ମତପ୍ରକାଶ କରିଛନ୍ତି । ଯଥା— ଦୁଃସହ, ଦୂସର, ଦୁହଲ । (Early Inscriptions of Bihar and Orissa by A. P. Banarjee Sastri, P. 144)

ଶ୍ୱେତରେ ଉଚ୍ଚାରିତ ହୋଇଥିବାରୁ ତାଙ୍କ ଦ୍ୱାରା ସବର୍ଣ୍ଣୀକୃତ ପର୍ବତ 'ଧଉଳେଶ୍ୱର' ପର୍ବତ ବା 'ଧଉଳୀ' ପର୍ବତ ନାମ ଧାରଣ କରିଥିବା ମଧ୍ୟ ସମ୍ଭବପର ।

ଅତି ପ୍ରାଚୀନ ଯୁଗରୁ ବୌଦ୍ଧ ଓ ଜୈନମାନଙ୍କ ତୀର୍ଥ ରୂପେ ପରିଚିତ ବହୁ ପର୍ବତର ନାମ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗରେ ପରିବର୍ତ୍ତିତ ହୋଇଥିବାର ଭୂରି ଭୂରି ପ୍ରମାଣ ଇତିହାସରୁ ମିଳେ । କେବଳ ଯେ ସୁରଭ ପର୍ବତର ନାମ ପରିବର୍ତ୍ତିତ ହୋଇଗଲା ତାହା ନୁହେଁ; ଅଶୋକଙ୍କ ରାଜତ୍ୱରୁ ଅକ୍ଳାନ୍ତ ପରିଚର୍ଯ୍ୟା ଲାଭ କରିଥିବା ହସ୍ତୀ ମଧ୍ୟ 'ମହାଭାରତ'ରେ ପ୍ରସିଦ୍ଧ 'ଅଶ୍ୱତ୍ଥାମା' ହସ୍ତୀ ରୂପେ ପୂଜିତ ହେବାକୁ ଲାଗିଲେ । ଏହା ନିକଟରେ ଥିବା ଗୁମ୍ଫାଗୁଡ଼ିକ 'ପଞ୍ଚ-ପାଣ୍ଡବ' ଗୁମ୍ଫା ନାମରେ ଖ୍ୟାତ ହେଲା । ସେହିପରି ଭୁବନେଶ୍ୱରରେ ଅଶୋକ ନିର୍ମିତ ଏକ ସ୍ତମ୍ଭର ଅଂଶବିଶେଷ 'ଭାସ୍କରେଶ୍ୱର' ଲିଙ୍ଗ ନାମରେ ପୂଜିତ ହେବାରୁ ତାହାର ଅଦୂରରେ ଥିବା ପାଞ୍ଚଟି ପ୍ରଶସ୍ତ ଗୁମ୍ଫା ପଞ୍ଚପାଣ୍ଡବ ଗୁମ୍ଫା ନାମରେ ନାମିତ ହେଲା । ବହୁ ଶତାବ୍ଦୀ ବ୍ୟାପୀ ଏହି ଐତିହାସିକ ପରିବର୍ତ୍ତନ ଫଳରେ ଏକଦା ବିଶେଷ ପ୍ରସିଦ୍ଧି ଲାଭ କରିଥିବା ତୋଷଳ ନଗର ସୀମାନ୍ତବର୍ତ୍ତୀ ସୁରଭ ପର୍ବତର ପ୍ରାଚୀନ ନାମ ବର୍ତ୍ତମାନ ବିସ୍ମୃତି ଗର୍ଭରେ ଲୁପ୍ତ । ଏହି ନାମ ପରିବର୍ତ୍ତନ କେବେ ଘଟିଲା ତାହା ଅଭ୍ରାନ୍ତ ଭାବରେ ସ୍ଥିର କରିବା ପାଇଁ ଏପର୍ଯ୍ୟନ୍ତ କୌଣସି ତଥ୍ୟ ନ ମିଳିଥିଲେ ମଧ୍ୟ ଗଙ୍ଗ ରାଜତ୍ୱ ଆରମ୍ଭରେ ଏକାମ୍ର କ୍ଷେତ୍ରର ପଶ୍ଚିମ ସୀମାରେ ଦଣ୍ଡାୟମାନ 'କୁମାରୀ ଗିରି' ଓ 'କୁମାରଗିରି' ଯଥାକ୍ରମେ 'ଖଣ୍ଡାଚଳ' ଓ 'ଉଦୟାଚଳ'; ଏହି ନୂତନ ନାମରେ ନାମିତ ହୋଇଥିବା ଯୁଗରେ ଏକାମ୍ରର ଦକ୍ଷିଣ-ପୂର୍ବ କୋଣରେ ଅବସ୍ଥିତ 'ସୁରଭ ପର୍ବତ' 'ଧବଳଗିରି' ନାମରେ ଅଭିହିତ ହୋଇଥିବ ।

## ତୋଷଳୀ ସହିତ ଭାରତର ଅନ୍ୟାନ୍ୟ ପ୍ରାନ୍ତର ଯୋଗାଯୋଗ·

ଧଉଳୀ ପାହାଡ଼ରେ ଉତ୍କୀର୍ଣ୍ଣ ପ୍ରଥମ କଳିଙ୍ଗାନୁଶାସନର ଶେଷାଂଶର ସୂକ୍ଷ୍ମ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, କଳିଙ୍ଗ

ରାଜଧାନୀ ତୋଷଳୀ ମୌର୍ଯ୍ୟ ସାମ୍ରାଜ୍ୟର ରାଜଧାନୀ 'ପାଟଳୀପୁତ୍ର' ମଧ୍ୟ ଭାରତରେ ଶାସନକେନ୍ଦ୍ର 'ଉଜ୍ଜୟିନୀ' ଓ ଭାରତର ସୁଦୂର ଉତ୍ତର-ପଶ୍ଚିମ ସୀମାନ୍ତରେ ଅବସ୍ଥିତ 'ତକ୍ଷଶୀଳା' ସହିତ ରାଜପଥ ଦ୍ୱାରା ସଂଯୁକ୍ତ ଥିଲା । ଏହି ଅନୁଶାସନରେ ପ୍ରିୟଦର୍ଶୀ ଅଶୋକ ତୋଷଳୀ ନଗରର ବ୍ୟବହାରିକ (ନଗରର ଶାସନ ପରିଚାଳକ)ମାନଙ୍କୁ ନଗର-ବାସୀମାନଙ୍କୁ ଆକସ୍ମିକ ଦୁର୍ଘଟଣା ଓ ବିପତ୍ତିରୁ ରକ୍ଷା କରିବା ପାଇଁ ସର୍ବଦା ସଚେତନ ହେବାପାଇଁ ନିର୍ଦ୍ଦେଶ ଦେଇ ସେମାନେ ରାଜାଜ୍ଞା ଯଥାଯଥ ଭାବରେ ପ୍ରତିପାଳନ କରୁଛନ୍ତି କି ନାହିଁ ତାହା ଜାଣିବା ପାଇଁ ବିଭିନ୍ନ ଶାସନକେନ୍ଦ୍ରରୁ ତୋଷଳୀକୁ ଉଚ୍ଚ କର୍ମଚାରୀମାନଙ୍କୁ ପଠାଇବାର ବ୍ୟବସ୍ଥା କରିଥିଲେ । ଯଥା— "ମୋର ଉଦ୍ଦେଶ୍ୟ ସିଦ୍ଧି ପାଇଁ ମୁଁ ପ୍ରତି ପାଞ୍ଚବର୍ଷରେ ଦୟାଳୁ, ଶାନ୍ତ ଓ ସୁଶୀଳ ବର୍ଗସଙ୍ଗକ କର୍ମଚାରୀ-ମାନଙ୍କୁ ପଠାଇବି । ଉଜ୍ଜୟିନୀରୁ ମଧ୍ୟ ତିନବର୍ଷ ଗତ ନ ହେଉଣୁ କୁମାର ଏହି ଉଦ୍ଦେଶ୍ୟରେ (ତୋଷଳୀବାସୀଙ୍କ ଅବସ୍ଥା ଜାଣିବା ପାଇଁ) ବର୍ଗମାନଙ୍କୁ ପଠାଇବେ । ତକ୍ଷଶୀଳାରୁ ମଧ୍ୟ ସେହିପରି କର୍ମ-ଚାରୀମାନେ ଆସିବେ ।"

ପ୍ରିୟଦର୍ଶୀ ପାଟଳୀପୁତ୍ରରେ ଅବସ୍ଥାନ କରୁଥିଲେ ଓ ସେ ତୋଷଳୀକୁ ଅନୁସନ୍ଧାନ (ଭ୍ରମଣ)ରେ ପଠାଉଥିବା ଉଚ୍ଚ କର୍ମଚାରୀମାନେ ପାଟଳୀପୁତ୍ରରୁ ଏଠାକୁ ଆସୁଥିଲେ । ବିରାଟ କଳିଙ୍ଗ ରାଜ୍ୟର ଦକ୍ଷିଣ ଭାଗକୁ ଶାସନ କରିବା ପାଇଁ ସମାପ (ବର୍ତ୍ତମାନ ଜଉଗଡ଼) ଠାରେ ଅନ୍ୟ ଏକ ଶାସନ କେନ୍ଦ୍ର ଥିବାରୁ ତୋଷଳୀ ସହିତ ଏହା ରାଜପଥ ଦ୍ୱାରା ସଂଯୁକ୍ତ ହୋଇ-ଥିବା ସୁନିଶ୍ଚିତ । ଗତ କେତେବର୍ଷର ପ୍ରାତ୍ନତାତ୍ତ୍ୱିକ ଅନୁସନ୍ଧାନ ଫଳରେ ଏହି ରାଜପଥ ଗୁଡ଼ିକର ଅସ୍ତିତ୍ୱ ସମ୍ବନ୍ଧରେ ଉପଲବ୍ଧ ତଥ୍ୟ ନିମ୍ନରେ ଆଲୋଚନା କରାଗଲା ।

### ତୋଷଳୀ-ପାଟଳୀପୁତ୍ର ରାଜପଥ—

ଭୂପୃଷ୍ଠରେ ଧ୍ୱଂସାବଶେଷ ପୁରାତନ କୀର୍ତ୍ତିଗୁଡ଼ିକର ଅବସ୍ଥିତି, ଭୂଖନନ ଫଳରେ ପରିଦୃଷ୍ଟ ମୁଦ୍ରା, ମୂର୍ତ୍ତି, ଅସ୍ତ୍ରଶସ୍ତ୍ର ପ୍ରଭୃତି ପ୍ରତ୍ନସମ୍ପଦର

ଆବିଷ୍କାର, ବିଭିନ୍ନ ଅଞ୍ଚଳର ଭୌଗୋଳିକ ପରିସ୍ଥିତି ସମ୍ବନ୍ଧରେ ପର୍ଯ୍ୟାଲୋଚନା ଏବଂ ଉକ୍ତ ଯୁଗର ଲେଖ ଓ ଗ୍ରନ୍ଥାଦିରୁ ଉପଲବ୍ଧ ପ୍ରମାଣ ସାହାଯ୍ୟରେ ପ୍ରାଚୀନ ପଥଗୁଡ଼ିକର ବିସ୍ତାର ନିର୍ଣ୍ଣୟ କରାଯାଇପାରେ । ଉପରୋକ୍ତ ପ୍ରାତ୍ନତାତ୍ତ୍ୱିକ ଗବେଷଣାର ଧାରା ତୋଷଳୀ-ପାଟଳୀପୁତ୍ର ପଥର ସନ୍ଧାନ ନିମିତ୍ତ ଅବଲମ୍ବନୀୟ । ତୋଷଳୀରେ ଅଶୋକ ରାଜତ୍ୱ କାଳର, ଶିଶୁପାଳ ଦୁର୍ଗରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର, ଖଣ୍ଡଗିରି ଓ ଉଦୟଗିରିରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ପ୍ରାଚୀନ କୀର୍ତ୍ତିରାଜି ଅଦ୍ୟାପି ବିଦ୍ୟମାନ । ନନ୍ଦ ଓ ମୌର୍ଯ୍ୟଯୁଗରେ ପ୍ରଚଳିତ ବିଭିନ୍ନ ସଙ୍କେତ-ଲାଞ୍ଛିତ (Punchmarked) ବଣଟି ମୁଦ୍ରା ଝାଡ଼ାପଡ଼ା ଗ୍ରାମରୁ ଓ ୪୮ ଟି ମୁଦ୍ରା ଖଣ୍ଡଗିରିର ପାଦଦେଶରେ ଅବସ୍ଥିତ 'ଯଗମାରା' ଗ୍ରାମରୁ ମିଳିଥିବାରୁ ଧଉଳୀ ଓ ଖଣ୍ଡଗିରି ମଧ୍ୟବର୍ତ୍ତୀ ଅଞ୍ଚଳରେ ଅନ୍ତତଃ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରୁ ଏକ ଶାସନକେନ୍ଦ୍ରର ଅଭ୍ୟୁଦୟ ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ ତଥ୍ୟ ମିଳୁଅଛି ।

ପଟିଆ ଅଞ୍ଚଳରୁ ଏକ ପ୍ରାଚୀନ ତାମ୍ରଶାସନର ପ୍ରାପ୍ତି, ନରାଜରେ ପ୍ରାଚୀନ ବୌଦ୍ଧ କୀର୍ତ୍ତିରାଜିର ବିଦ୍ୟମାନତା, କଟକରୁ ପ୍ରାପ୍ତ ପନ୍ଦର ମାଇଲ ଉତ୍ତରକୁ ଅବସ୍ଥିତ ରାମେଶ୍ୱର ପାହାଡ଼ରୁ ୩୭୬ଟି ରୌପ୍ୟ ସଙ୍କେତଲାଞ୍ଛିତ ମୁଦ୍ରା (୭) ଓ ଧର୍ମଶାଳା ନିକଟବର୍ତ୍ତୀ କାଇମା ପାହାଡ଼ରୁ କନ୍ତି କୁଶାନ ମୁଦ୍ରାର ଆବିଷ୍କାର; ଯାଜପୁର, ଉଦୟଗିରି, ଲଳିତଗିରି, ରତ୍ନଗିରି ଅଞ୍ଚଳରେ ବହୁ ପ୍ରାଚୀନ କୀର୍ତ୍ତିର ଅସ୍ତିତ୍ୱ ଉକ୍ତ ପଥର ସଂକ୍ରମଣ-ରେଖାର ସୂଚନା ଦିଏ । ମହାଭାରତ ଯୁଗରୁ ପ୍ରସିଦ୍ଧ ଯାଜପୁର ଠାରୁ ଦୂର ଦିଗକୁ ରାଜପଥ ଲମ୍ବିଥିଲା । ତୋଟିଏ ପଥ 'ଉପକୂଳବର୍ତ୍ତୀ ଅଞ୍ଚଳରେ କୁପାରି, ସୋରୋ, ଜୟରାମପୁର (ଏଠାରେ ଗୁପ୍ତଯୁଗରେ ଏକ ବୌଦ୍ଧବିହାର ଥିଲା) (୮) ପ୍ରଭୃତି ପାଖେ ପାଖେ ଇତିହାସ ପ୍ରସିଦ୍ଧ ତାମ୍ରଲିପ୍ତି ବନ୍ଦରକୁ ଯାଇଥିଲା ।

---

(୭) O. H. R. J. Vol XII, No. 3, pp. 123-160
ଶ୍ରୀ ପ୍ରଶାନ୍ତ କୁମାର ରାୟଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୮) O.H.R.J. Vol ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ପ୍ରବନ୍ଧ ପଠନୀୟ

ଯାଜପୁର (ବିରଜା କ୍ଷେତ୍ର) ଠାରୁ ବୈତରଣୀ ନଦୀ ଉପତ୍ୟକାରେ ଅନ୍ୟ ଏକ ପଥ ବର୍ତ୍ତମାନ ଓଡ଼ିଶାର ଉତ୍ତର ସୀମାରେ ଅବସ୍ଥିତ ଖିଚିଙ୍ଗ ବିରାଟ ଗଡ଼ (୨ୟ ଶତାବ୍ଦୀ) ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ରାସ୍ତାର ପାଖେ ପାଖେ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ନିକଟବର୍ତ୍ତୀ 'ବଇଦାଖିଆ'ରେ ବହୁ ପ୍ରାଚୀନ ଜୈନକୀର୍ତ୍ତି, କେନ୍ଦୁଝର ଟାଉନ ଠାରୁ ଅଳ୍ପ ଦୂରରେ ଅବସ୍ଥିତ 'ସୀତାବିଞ୍ଜି' ନାମକ ସ୍ଥାନରେ ପଞ୍ଚମ ଶତାବ୍ଦୀର ବହୁ ଲେଖ, ଗୁହା ଓ ଭିତ୍ତିଚିତ୍ର, କେନ୍ଦୁଝର ଜିଲ୍ଲା ସୀମାରେ ଅବସ୍ଥିତ 'ଅଶନାପାଟ' ନାମକ ସ୍ଥାନରୁ ଏକ କ୍ଷୁଦ୍ର ନଟରାଜ ବିଗ୍ରହ ତଳେ ଚତୁର୍ଥ ଶତାବ୍ଦୀର ବ୍ରାହ୍ମୀ ବର୍ଣ୍ଣମାଳାରେ ଲିଖିତ ଏକ ସଂସ୍କୃତ ଲେଖ (୯) ମିଳିଲାଣି । ଖିଚିଙ୍ଗରେ ବହୁ ପ୍ରାଚୀନ ଶିବମନ୍ଦିର, ତାହା ନିକଟବର୍ତ୍ତୀ ବିରାଟଗଡ଼ରେ ଦ୍ୱିତୀୟ ଶତାବ୍ଦୀର ଏକ ଦୁର୍ଗର ଭଗ୍ନାବଶେଷ, ଉକ୍ତ ଅଞ୍ଚଳର 'ଭଞ୍ଜକିଆ' ଓ 'ଚେଳନ୍ଦ' ଗ୍ରାମରୁ କୁଶାନ ଯୁଗର ବହୁ ମୁଦ୍ରା ଓ 'ବଦଲଦା' ଗ୍ରାମରୁ ମୌର୍ଯ୍ୟ ଓ ମୌର୍ଯ୍ୟ ପୂର୍ବଯୁଗର ସଙ୍କେତ ଲାଞ୍ଛିତ ୧୯୬ଟି ମୁଦ୍ରାର ଆବିଷ୍କାର ଫଳରେ ଖିଚିଙ୍ଗ ଉକ୍ତ ପଥରେ ଯାଜପୁର (ବିରଜା) ପରି ଏକ ପ୍ରଧାନ କେନ୍ଦ୍ର ଥିବାର ଜଣାଯାଉଛି ।

ଖିଚିଙ୍ଗ ଠାରୁ ଉତ୍ତରକୁ ଏହା ସିଂହଭୂମି ଜିଲ୍ଲାର ବହୁ ପ୍ରାଚୀନ କୀର୍ତ୍ତିମଣ୍ଡିତ 'ବେନୁସାଗର', ମାନଭୂମ ଜିଲ୍ଲାର ବହୁ ପୁରାତନ ଦେବାଳୟ ଶୋଭିତ 'ତେଲକୁପି ଓ 'ପାକ୍ଷେଟ' ଯାଇ ଦେଇ ମଗଧର ପ୍ରାଚୀନ ରାଜଧାନୀ ଗିରିବ୍ରଜ, ରାଜଗୃହ ବା ରାଜଗିର, ବୌଦ୍ଧକେନ୍ଦ୍ର ଗୟା, ଅଶୋକ ଯୁଗର ବହୁ ଅଭିଲେଖ ଓ କୀର୍ତ୍ତିମଣ୍ଡିତ 'ଗୋରଥଗିରି' (୧୦)

---

(୯) O. H. R. J. Vol. XIII July 1965 No. 2 pp 1-8,

(୧୦) ଏହି ପଥରେ ଥିବା ପ୍ରସିଦ୍ଧ ଗିରିଦୁର୍ଗ 'ଗୋରଥଗିରି' ଓ ଶାସନକେନ୍ଦ୍ର 'ରାଜଗୃହ' ଓ 'ମଥୁରା'ର ସ୍ପଷ୍ଟ ଉଲ୍ଲେଖ କଳିଙ୍ଗ ସମ୍ରାଟ୍ ଶ୍ରୀ ଖାରବେଳଙ୍କ ହାତୀଗୁମ୍ଫା ଲେଖରେ ଦେଖାଯାଏ । ବିଶେଷ ବିବରଣ ଜାଣିବା ପାଇଁ ମୋ ଦ୍ୱାରା ଲିଖିତ 'ଶ୍ରୀ ଖାରବେଳ' ଦ୍ରଷ୍ଟବ୍ୟ ।

ଅଞ୍ଚଳମ କରି ଶୋଣ ଓ ଗଙ୍ଗାନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ମଗଧର ରାଜଧାନୀ 'ପାଟଳୀପୁତ୍ର'କୁ ସ୍ପର୍ଶ କରୁଥିଲା ।

ପାଟଳୀପୁତ୍ରରୁ ପଶ୍ଚିମାଭିମୁଖ ହୋଇ ଏହି ପଥ ବୁଦ୍ଧ ଓ ମହାବୀରଙ୍କ ସମ୍ପର୍କରୁ ପ୍ରସିଦ୍ଧି ଲାଭ କରିଥିବା ପୁଣ୍ୟଭୂମି କାଶୀ, ଗଙ୍ଗା ଓ ଯମୁନାର ସଙ୍ଗମସ୍ଥଳରେ ଅବସ୍ଥିତ ପବିତ୍ର ପ୍ରୟାଗ ତୀର୍ଥ ଏକ ପ୍ରସିଦ୍ଧ ଶାସନକେନ୍ଦ୍ର କୌଶାମ୍ବୀ ଅତିକ୍ରମକରି ଦ୍ରୁତ ଯମୁନା ତୀରବର୍ତ୍ତୀ ପୁରାଣ ପ୍ରସିଦ୍ଧ ବୌଦ୍ଧ, ଜୈନ ଓ ବ୍ରାହ୍ମଣ୍ୟ ଧର୍ମର ଏକ ମିଳନ ପୀଠ ମଥୁରାକୁ ସ୍ପର୍ଶ କରୁଥିଲା । ମଥୁରା ଠାରୁ ମହାଭାରତ ଯୁଗରୁ ପ୍ରସିଦ୍ଧି ଲାଭ କରିଥିବା କୁରୁକ୍ଷେତ୍ର ଓ ଶାକଳ (ଶୈଳକୋଟ) ବାଟଦେଇ ଏହି ପଥଟି ଉତ୍ତର ପଶ୍ଚିମ ସୀମାନ୍ତବର୍ତ୍ତୀ ଗାନ୍ଧାର ରାଜ୍ୟର ରାଜଧାନୀ ଦେବପ୍ରିୟଙ୍କ ଏକ ଶାସନ କେନ୍ଦ୍ର ତକ୍ଷଶୀଳାକୁ ଯାଇଥିଲା ।

## ତୋଷଳୀ-ଉଜ୍ଜୟିନୀ ରାଜପଥ—

ତୋଷଳୀ-ଉଜ୍ଜୟିନୀ ରାଜପଥ ଦୟାନଦୀ କୂଳେ କୂଳେ ଅତିରଗଡ଼ ପର୍ଯ୍ୟନ୍ତ ଯାଇ ସେଠାରୁ ବରୁଣେଇ ପାହାଡ଼ ଘାଟି ପାରହୋଇ ବିସ୍ତୃତ ସମତଳ ଅଞ୍ଚଳରେ ଅବସ୍ଥିତ ଗୋବିନ୍ଦପୁର (ନୟାଗଡ଼ ଅନ୍ତର୍ଗତ) ଦେଇ ମହାନଦୀ କୂଳବର୍ତ୍ତୀ ବହୁ ପ୍ରାଚୀନ କୀର୍ତ୍ତିମଣ୍ଡିତ କଣ୍ଟିଲୋରେ ପହଞ୍ଚୁଥିଲା । କଣ୍ଟିଲୋ ସୁଦୂର ଅତୀତରୁ ମଧ୍ୟ ଏକ ଶାସନ ଓ ବ୍ୟବସାୟ କେନ୍ଦ୍ର ଥିଲା । ସେଠାରୁ ଏହି ପଥ ଦୀର୍ଘ, ଭୟଙ୍କର ଓ ବିପଜ୍ଜନକ ବଡ଼ମୂଳ ଘାଟି ପାରହୋଇ 'ବୌଦ', 'ଗନ୍ଧଗଡ଼', ମନମୁଣ୍ଡା ବାଟଦେଇ ତେଲ ଓ ମହାନଦୀ ସଂଗମ ସ୍ଥଳରେ ଅବସ୍ଥିତ 'ସୁବର୍ଣ୍ଣପୁର' (ବର୍ତ୍ତମାନ ସୋନପୁର)କୁ ସ୍ପର୍ଶ କରୁଥିଲା । ସୁବର୍ଣ୍ଣପୁରରୁ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ବହୁ ସଙ୍କେତ-ଲାଞ୍ଛିତ ରୌପ୍ୟମୁଦ୍ରା (Punch marked coins)ର ଆବିଷ୍କାର ମୌର୍ଯ୍ୟ ଯୁଗରେ ଏହାର ଅବସ୍ଥିତିର ସୂଚନା ଦିଏ । (୧୧) ଏହି ପ୍ରାଚୀନ ପଥର ମୂକସାକ୍ଷୀ ସ୍ୱରୂପ ଅଦ୍ୟାପି

---

(୧୧) O. H. R. J. Vol. I, No. 2, pp. 27—30

ବୌଦ୍, 'ଗନ୍ଧଗଣ୍ଡ' ଓ 'ସୋନପୁର' ପ୍ରଭୃତି ସ୍ଥାନରେ ଶତ ଶତ ଦେବମନ୍ଦିର ଓ ବୌଦ୍ଧରେ ପୂଜିତ ବିରାଟ ବୌଦ୍ଧମୂର୍ତ୍ତି ଓ ବୌଦ୍ଧ ବିହାରର ଧ୍ୱଂସାବଶେଷ ବିଦ୍ୟମାନ । ସୋନପୁର ଠାରୁ ଏହି ରାସ୍ତାଟି ଅଙ୍ଗନଦୀ କୂଳେ କୂଳେ 'ପାପହରଣ' ତୀର୍ଥ ବାଟେଦେଇ ବହୁ ପ୍ରାଚୀନ କୀର୍ତ୍ତିମଣ୍ଡିତ 'ଶ୍ରୀପୁର' 'ରତ୍ନପୁର' ଓ 'ବିଦିଶା' ପ୍ରଭୃତି ନଗର ପାର ହୋଇ ଉଜ୍ଜୟିନୀକୁ ସଂଯୁକ୍ତ କରୁଥିଲା ; ଏହି ପଥରେ ବିଦିଶାରୁ ଅଦୂରବର୍ତ୍ତୀ ସାଞ୍ଚୀଠାରେ ଏକ ସ୍ତମ୍ଭରେ ଅଶୋକଙ୍କ ଲେଖ ଦେଖାଯାଏ ।

## ତୋଷଲୀ ଓ ସୁବର୍ଣ୍ଣଗିରି ପଥ—

ତୋଷଳୀକୁ ଅଶୋକଙ୍କ ସମୟରେ ଦକ୍ଷିଣାପଥର ରାଜଧାନୀ ଥିବା ସୁବର୍ଣ୍ଣଗିରିକୁ ସଂଯୁକ୍ତ କରୁଥିବା ରାଜପଥ ଶ୍ରୀକ୍ଷେତ୍ର ବାଟେ ସମୁଦ୍ର କୂଳେ କୂଳେ ପାଲୁର (ଋଷିକୁଲ୍ୟା ମୁହାଣରେ ଥିବା ପ୍ରାଚୀନ ପୋତାଶ୍ରୟ), ସମାପ (ଦକ୍ଷିଣ କଳିଙ୍ଗର ରାଜଧାନୀ) ଶାଳିହୁଣ୍ଡମ୍, ଶଙ୍କରମ୍, ରାମତୀର୍ଥମ୍ (ବହୁ ପ୍ରାଚୀନ ବୌଦ୍ଧକୀର୍ତ୍ତି ମଣ୍ଡିତ) ଅମରାବତୀ (ଏଠାରେ ଅତି ପ୍ରାଚୀନ ବୌଦ୍ଧସ୍ତୂପ ବିଦ୍ୟମାନ), ମୋଷଳୀ, ଶ୍ରୀଧାନ୍ୟକଟକ, ନାଗାର୍ଜ୍ଜୁନକୋଣ୍ଡା (ବହୁ ପ୍ରାଚୀନ ବୌଦ୍ଧକୀର୍ତ୍ତି ମଣ୍ଡିତ) ପ୍ରଭୃତି ସ୍ଥାନକୁ ସ୍ପର୍ଶ କରୁଥିଲା । ଶ୍ରୀକ୍ଷେତ୍ର ଓ ପାଲୁର ମଧ୍ୟବର୍ତ୍ତୀ ଓ ସମୁଦ୍ର କୂଳରେ ଅବସ୍ଥିତ 'ଗୁରୁବାଇ' ନାମକ ସ୍ଥାନରୁ କୁଶାନ ଯୁଗର ବହୁ ମୁଦ୍ରା ଆବିଷ୍କାର ଏହି ରାଜପଥର ପ୍ରାଚୀନତ୍ୱ ଜ୍ଞାପକ ।

## ତୋଷଲୀ ଓ ତୋଷଲ ରାଜ୍ୟ—

ମୌର୍ଯ୍ୟସାମ୍ରାଜ୍ୟର ବିଭିନ୍ନ ଶାସନକେନ୍ଦ୍ର ଓ ପ୍ରସିଦ୍ଧ ନଗରମାନଙ୍କ ସହିତ ରାଜପଥ ଦ୍ୱାରା ସଂଯୁକ୍ତ ହୋଇ କ୍ଷିପ୍ରଗତିରେ ତୋଷଳୀ ନଗରର ଶ୍ରୀବୃଦ୍ଧି ସାଧିତ ହେଲା । ଧନ-ଜନ-ପୂର୍ଣ୍ଣ ଏହି ନଗରର ଖ୍ୟାତି ଭାରତ ସୀମା ଅତିକ୍ରମ କରି ସୁଦୂର ଗ୍ରୀକ୍ ସାମ୍ରାଜ୍ୟରେ ବ୍ୟାପ୍ତ ହୋଇଥିଲା । ତେଣୁ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଆବିର୍ଭୂତ ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀ ସ୍ୱକୃତ 'ଭାରତ ଓ ଦକ୍ଷିଣ ଏସିଆର

ଭୌଗୋଳିକ ବିବରଣ (Geography of India and Southern Asia) ନାମକ ଗ୍ରନ୍ଥରେ ଏହାକୁ ଏକ metropolis ବା ଚତୁର୍ଦ୍ଦିଗରେ ରାଜପଥ ଦ୍ୱାରା ସଂଯୁକ୍ତ ଏକ ମହାନଗରୀ ଆଖ୍ୟା ପ୍ରଦାନ କରିଥିଲେ । (୧୨) ଏହାର ଖ୍ୟାତି ଓ ପ୍ରତିପତ୍ତି ବୃଦ୍ଧି ଫଳରେ ଦେବପ୍ରିୟ ପ୍ରିୟ-ଦର୍ଶୀ ଅଶୋକଙ୍କ ଶାସନ ସମୟରେ, ଜୈନସମ୍ରାଟ୍ ଶ୍ରୀ ଖାରବେଳଙ୍କ ରାଜତ୍ୱ କାଳରେ (ଖ୍ରୀ: ପୂ: ପ୍ରଥମ ଶତାବ୍ଦୀ) ଓ ସଂସ୍କୃତ ମହାଭାରତ ରଚନା କାଳରେ 'କଳିଙ୍ଗ' ନାମରେ ଆଖ୍ୟାତ ଓଡ଼ିଶାର ଉପକୂଳବର୍ତ୍ତୀ ଏକ ମୁଖ୍ୟ ଭୂଖଣ୍ଡ 'ତୋଷଲୀ' ବା ତୋଷଳ ନାମରେ ପ୍ରଖ୍ୟାତ ହେଲା । ଅଗଙ୍ଗା ଗୋଦାବରୀ ବିସ୍ତୃତ କଳିଙ୍ଗ କ୍ରମଶଃ ସଙ୍କୁଚିତ ହୋଇ ମହେନ୍ଦ୍ର ପର୍ବତ ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ସୀମାବଦ୍ଧ ହେଲା ।

ରାଜଧାନୀ ବା ମୁଖ୍ୟ ଶାସନକେନ୍ଦ୍ରର ନାମାନୁସାରେ ସେଠାରୁ ଶାସିତ ଭୂଭାଗର ନାମକରଣ ପ୍ରଥା ବହୁ ପ୍ରାଚୀନ କାଳରୁ ଅଦ୍ୟାବଧି ଏ ଦେଶରେ ପ୍ରଚଳିତ । ଯଥା— ଇତିହାସ ପ୍ରସିଦ୍ଧ କୁରୁକ୍ଷେତ୍ର, କାଶୀ; ଅବନ୍ତୀ, ବେଙ୍ଗୀ ପ୍ରଭୃତି ରାଜଧାନୀର ନାମାନୁସାରେ କୁରୁ, କାଶୀ; ଅବନ୍ତୀ, ବେଙ୍ଗୀ ପ୍ରଭୃତି ରାଜ୍ୟ ନାମିତ ହୋଇଥିଲା । ଏବେମଧ୍ୟ ପୁରୀ, କଟକ; ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର, କୋରାପୁଟ ପ୍ରଭୃତି ବିଭିନ୍ନ ଶାସନକେନ୍ଦ୍ରର ନାମ ଅନୁଯାୟୀ ପ୍ରତ୍ୟେକଟି ଠାରୁ ଶାସିତ ଅଞ୍ଚଳ ବିଶେଷ ତତ୍ ତତ୍ ନାମଧେୟ ଜିଲ୍ଲା ରୂପେ ଗଠିତ ହୋଇଅଛି ।

ଓଡ଼ିଶାର ଅନ୍ତର୍ଗତ ଉପକୂଳବର୍ତ୍ତୀ ଏକ ବିଶାଳ ଭୂଖଣ୍ଡ କେବେ କଳିଙ୍ଗ ପରିବର୍ତ୍ତରେ ସର୍ବପ୍ରଥମେ ତୋଷଲୀ ବା ତୋଷଳ ନାମରେ ବିଦିତ ହେଲା ତାହା ଏପର୍ଯ୍ୟନ୍ତ ଯଥାର୍ଥ ରୂପେ ଜଣାଯାଇ ନାହିଁ । ଏ ସମ୍ପର୍କରେ କେତେକ ପୁରାଣ ଓ ପ୍ରାଚୀନ ଗ୍ରନ୍ଥରେ ଉଲ୍ଲେଖ ମିଳିଲେ ମଧ୍ୟ ସେଗୁଡ଼ିକର ରଚନା କାଳ ସମ୍ବନ୍ଧରେ ମତଦ୍ୱୈଧ ଥିବାରୁ ପ୍ରଥମେ ଲେଖଗତ ପ୍ରମାଣ ସମୂହ ବିଚାର କରାଗଲା । କେନ୍ଦୁଝର ଜିଲ୍ଲା ଚମ୍ପୁଆ

(୧୨) I: A, Vol. XIII (1884) p. 382.

ସବ୍ଡିଭିଜନସ୍ଥ 'ଅସନାପାଟ' ନାମକ ଗ୍ରାମରୁ ଆବିଷ୍କୃତ ଶିବତାଣ୍ଡବ ମୂର୍ତ୍ତିର ପାଦପୀଠରେ ଉତ୍କୀର୍ଣ୍ଣ ମହାରାଜ ଶ୍ରୀ ଶତ୍ରୁଭଞ୍ଜଙ୍କ ଏକ ସଂସ୍କୃତ ଲେଖରୁ ଜଣାଯାଏ ଯେ, ସେ ପାଟଳୀପୁତ୍ର, ଗୟା, ପୁଣ୍ଡ୍ରବର୍ଦ୍ଧନ, ବର୍ଦ୍ଧମାନ, ତାମ୍ରଲିପ୍ତ ଓ ଉଭୟ ତୋଷଳୀରେ ଏକଲକ୍ଷ ଗୋଦାନ କରିଥିଲେ । ଏଥିରେ ବ୍ୟବହୃତ ବ୍ରାହ୍ମୀ ବର୍ଣ୍ଣମାଳା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ପ୍ରଚଳିତ ଥିବାର ସ୍ଥିର କରାଯାଇଅଛି । (୧୩) ଏଥିରେ 'ଉଭୟ ତୋଷଳୀ' ପଦ ବ୍ୟବହାର ଦ୍ୱାରା ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଉକ୍ତ ଲେଖ ରଚନା ପୂର୍ବରୁ ତୋଷଳୀ ବା ତୋଷଳ ରାଜ୍ୟର ଆୟତନ ବହୁତ ବୃଦ୍ଧିଲାଭ କରିଥିବାରୁ ଏହା ଉତ୍ତର ଓ ଦକ୍ଷିଣ ଦୁଇଟି ବିଭାଗରେ ବିଭକ୍ତ ହୋଇସାରିଥିଲା ।

ମୌଦ୍‌ଗଲ ବଂଶୀୟ ମହାରାଜ ଶ୍ରୀ ଶମ୍ଭୁଯଶଙ୍କର ଏରବଙ୍ଗ ତାମ୍ରଶାସନରେ 'ଦକ୍ଷିଣ ତୋଷଳୀ'ରେ ଗ୍ରାମଦାନ ବିଷୟ ବର୍ଣ୍ଣିତ ହୋଇଛି । ଏହା ୨୮୫ ସମ୍ବତ୍‌ରେ ପ୍ରଦତ୍ତ ହୋଇଥିବା ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ମତପ୍ରକାଶ କରିଛନ୍ତି । (୧୪) ଏହାକୁ ଗୁପ୍ତାବ୍ଦ ରୂପେ ଗ୍ରହଣ କଲେ ଏହାର ସମୟ ହେବ ୫୭୫ ଖ୍ରୀଷ୍ଟାବ୍ଦ । ଉକ୍ତ ଶମ୍ଭୁଯଶଙ୍କ ୨୬୦ ସମ୍ବତ୍‌ରେ (୫୮୦ ଖ୍ରୀଷ୍ଟାବ୍ଦ) ପ୍ରଦତ୍ତ ସୋର ତାମ୍ରଶାସନରେ 'ଉତ୍ତର ତୋଷଳୀ'ରେ ଭୂମିଦାନର ଉଲ୍ଲେଖ ଦେଖାଯାଏ । (୧୫) ଶମ୍ଭୁଯଶଙ୍କ ଅଧୀନସ୍ଥ ସାମନ୍ତ ରାଜା ଶ୍ରୀ ଶିବରାଜଙ୍କ ପଟିଆ କିଲାରୁ ପ୍ରାପ୍ତ ୨୮୩ ସମ୍ବତ୍ (୬୦୩ ଖ୍ରୀଷ୍ଟାବ୍ଦ)ରେ ପ୍ରଦତ୍ତ ତାମ୍ରଶାସନରୁ ସେ 'ଦକ୍ଷିଣ ତୋଷଳୀ'ରେ ୩୨ ଜଣ ବ୍ରାହ୍ମଣଙ୍କୁ ଗ୍ରାମଦାନ କରିଥିବା ବିଷୟ ଜଣାଯାଏ । (୧୬)

---

(୧୩) 'Asanapat' by A. Das, I. A. S
O. H. R. J. Vol. XIII, July 1965, No. 2, pp. 1-8

(୧୪) O. H. R. J. Vol. XII, No. 3, pp. 113—122

(୧୫) E. I. Vol XXIII, p. 201

(୧୬) E. I. Vol. IX, pp. 285-288

ଶମ୍ଭୁଯଶଙ୍କ ସମସାମୟିକ ଭଞ୍ଜ ମହାସାମନ୍ତ ଶ୍ରୀ ଲୋକବିଗ୍ରହଙ୍କ କଣାସ ତାମ୍ରଶାସନ ଅନୁଯାୟୀ ସେ ୨୮୦ ଗୁପ୍ତାବ୍ଦ ବା ୬୦୦ ଖ୍ରୀଷ୍ଟାବ୍ଦରେ ଅଷ୍ଟାଦଶାଟବୀ ରାଜ୍ୟ ସମେତ ତୋଷଳୀରେ ଶାସନ କରୁଥିଲେ । ଯଥା—

"ପ୍ରବର୍ତ୍ତମାନଗୁପ୍ତକାଳସମ୍ବତ୍ସରେ ଅଶୀତ୍ୟୁତ୍ତର ଶତଦ୍ୱୟେ ତୋଷଳ୍ୟାଂ ସାଷ୍ଟାଦଶାଟବୀରାଜ୍ୟାୟାଂ ।"

ଏହି ଦାନପତ୍ର ଦ୍ୱାରା ଦକ୍ଷିଣ ତୋଷଳୀରେ ଅବସ୍ଥିତ ଓଡ଼ଙ୍କ (ବର୍ତ୍ତମାନ ଓଲସିଂହ) ଗ୍ରାମ ମଣିନାଗେଶ୍ୱର ଭଟ୍ଟାରକ (ରଣପୁରରେ ଅବସ୍ଥିତ)ଙ୍କ ସେବାପୂଜା ପାଇଁ ଦିଆଯାଇଥିଲା । (୧୭) ଧର୍ମରାଜଙ୍କ ସୁମଣ୍ଡଳ ତାମ୍ରଶାସନରୁ ଜଣାଯାଏ, ଲୋକବିଗ୍ରହଙ୍କ ପୂର୍ବବର୍ତ୍ତୀ ପୃଥିବୀ ବିଗ୍ରହ ୨୫୦ ଗୁପ୍ତାବ୍ଦରେ (୫୮୦ ଖ୍ରୀଷ୍ଟାବ୍ଦରେ) କେବଳ କଳିଙ୍ଗ ରାଷ୍ଟ୍ରରେ ରାଜତ୍ୱ କରୁଥିଲେ । "କଳିଙ୍ଗ ରାଷ୍ଟ୍ରମନୁଶାସତି ଶ୍ରୀ ପୃଥିବୀ ବିଗ୍ରହ ଭଟ୍ଟାରକେ" (୧୮) । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଷଷ୍ଠ ଶତାବ୍ଦୀ ବେଳକୁ କଳିଙ୍ଗ ରାଷ୍ଟ୍ର ତୋଷଳୀ ରାଜ୍ୟ ଠାରୁ ସ୍ୱତନ୍ତ୍ର ହୋଇଯାଇଥିଲା ।

ମହାସାନ୍ଧିବିଗ୍ରହିକ ସୋମଦତ୍ତଙ୍କ ସୋରୋ ତାମ୍ରଶାସନରେ ଉତ୍ତର ତୋଷଳୀ ଉଡ୍ର ବିଷୟର ଅନ୍ତର୍ଭୁକ୍ତ ଥିବାର ଉଲ୍ଲେଖ ହୋଇଛି (୧୯) । ଯଥା— "ଉଡ୍ର ବିଷୟେ ଉତ୍ତର ତୋଷଳ୍ୟାଂ" । ଉକ୍ତ ସୋମଦତ୍ତ କ୍ରମଶଃ ନିଜର କ୍ଷମତା ବୃଦ୍ଧି କରି ଶ୍ରୀ ସାମନ୍ତ ମହାରାଜ ପଦବୀ ଧାରଣ ପୂର୍ବକ ଦଣ୍ଡଭୁକ୍ତି ବିଷୟ ସମେତ ଉତ୍କଳ ଦେଶ ଶାସନ କରୁଥିବା ତାଙ୍କର ମେଦିନୀପୁର ଦାନପତ୍ରରୁ ଜଣାଯାଏ । ଯଥା— "ସହିତା-ମୁତ୍କଳ ଦେଶେନ ଦଣ୍ଡଭୁକ୍ତିଂ ପ୍ରଶାସତି" (୨୦) । ସୋମଦତ୍ତଙ୍କ ଦୁଇଟି

(୧୭) E. I. Vol. XXVIII, p. 331.

(୧୮) O. H. R. J. Vol. I, pp. 66—69

(୧୯) E. I. Vol. XXIII, p. 202.

(୨୦) J. A. S. Bengal Vol. XI, (1945) No. 1, pp. 7-8

ଦାନପତ୍ର ଅନୁଯାୟୀ ଉତ୍ତର ତୋଷଳୀ ଉଡ୍ର ବା ଉତ୍କଳର ଅନ୍ତର୍ଭୁକ୍ତ ଥିଲା ।

**ଦଣ୍ଡଭୁକ୍ତି ମଣ୍ଡଳ** — ସେ ଯୁଗରେ ବର୍ତ୍ତମାନ ମେଦିନୀପୁର ଅଞ୍ଚଳ ଦଣ୍ଡଭୁକ୍ତି ନାମରେ ପରିଚିତ ହେଉଥିଲା । ଭୌମବଂଶୀୟା ମହାରାଜ ଧିରାଜ ପରମେଶ୍ୱରୀ ତ୍ରିଭୁବନ ମହାଦେବୀଙ୍କ ବୌଦରୁ ପ୍ରାପ୍ତ ଦୁଇଟି ତାମ୍ରଶାସନ ଅନୁଯାୟୀ 'ଦଣ୍ଡଭୁକ୍ତି ମଣ୍ଡଳ' ଉତ୍ତର ତୋଷଳୀର ଅନ୍ତର୍ଭୁକ୍ତ ଥିଲା ।' (୨୧) ଯଥା— "ଉତ୍ତର ତୋଷଳାୟାଂ ଦଣ୍ଡଭୁକ୍ତି-ମଣ୍ଡଳେ" । ଏହି ଦାନପତ୍ର ଦୁଇଟିର ସମୟ ଭୌମାବ୍ଦ ୧୫୮ ବା ୭୨୨ ଖ୍ରୀଷ୍ଟାବ୍ଦ । ଏହାଦ୍ୱାରା ଦଣ୍ଡଭୁକ୍ତି ବା ମେଦିନୀପୁର ଅଞ୍ଚଳ ଉତ୍ତର ତୋଷଳୀର ଏକ ବିଭାଗ ରୂପେ ଶାସିତ ହେଉଥିବା ନିଃସନ୍ଦେହରେ ପ୍ରତିପାଦିତ ହୁଏ ।

**କୋଙ୍ଗୋଦ ମଣ୍ଡଳ** — ସପ୍ତମ ଶତାବ୍ଦୀ ଆରମ୍ଭରୁ ଦକ୍ଷିଣ ତୋଷଳୀ ଅନ୍ତର୍ଗତ ଏକ ଅଂଶ କୋଙ୍ଗଦମଣ୍ଡଳ ନାମରେ ପରିଚିତ ହେବାକୁ ଲାଗିଲା । ଶୈଳୋଦ୍ଭବ ବଂଶୀୟ ମାଧବରାଜଙ୍କ ୩୦୦ ଗୁପ୍ତାବ୍ଦ ବା ୬୨୦ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଗଞ୍ଜାମ ତାମ୍ରଶାସନ ଅନୁଯାୟୀ ସେ ଶାଳିମା ନଦୀ (ବର୍ତ୍ତମାନର ଶାଳିଆ ନଦୀ) କୂଳରେ 'କୋଙ୍ଗୋଦ' ନାମକ ରାଜଧାନୀ ପ୍ରତିଷ୍ଠା କରିଥିଲେ । ଏହି ରାଜଧାନୀର ନାମାନୁସାରେ ଏ ମଣ୍ଡଳର ନାମ ହେଲା କୋଙ୍ଗୋଦ । ଭୌମ ଶୁଭକର ଦେବଙ୍କ ୧୦୩ ଭୌମ ସମ୍ବତ ବା ୭୧୭ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଧରାକୋଟ ଦାନପତ୍ର ଅନୁଯାୟୀ ବର୍ତ୍ତମାନ ଧରାକୋଟ ଅଞ୍ଚଳ ଦକ୍ଷିଣ ତୋଷଳୀ ଅନ୍ତର୍ଭୁକ୍ତ 'କୋଙ୍ଗୋଦମଣ୍ଡଳ'ରେ ଅବସ୍ଥିତ ଥିଲା । (୨୨)

ଭୌମବଂଶୀୟା ଦଣ୍ଡୀ ମହାଦେବୀଙ୍କ ଏକ ଗଞ୍ଜାମ ତାମ୍ରଶାସନରେ ଉସମ୍ଭା ଗ୍ରାମ (ବର୍ତ୍ତମାନ ଉମ୍ଭା ଗ୍ରାମ) ଦକ୍ଷିଣ ତୋଷଳୀର କୋଙ୍ଗୋଦ-

---

(୨୧) E. I. Vol. XXIX, pp. 210-220

(୨୨) J. A. H. R. S. Vol IV, pp. 189-194

ମଣ୍ଡଳରେ ଥିବାର ବର୍ଣ୍ଣିତ ହୋଇଛି । (୨୩) ତାଙ୍କର ୧୮୦ ଭୌମ ସମ୍ବତ୍ ବା ୭୯୪ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଅନ୍ୟ ଏକ ଗଞ୍ଜାମ ତାମ୍ର-ଶାସନରେ ପୂର୍ବଖଣ୍ଡ (ଛତ୍ରପୁର ଅଞ୍ଚଳ) କୋଙ୍ଗୋଦମଣ୍ଡଳରେ ପ୍ରବର୍ତ୍ତିତ ହୋଇଅଛି । (୨୪) ଉକ୍ତ ରାଣୀଙ୍କ କୁମାରଙ୍କ ତାମ୍ରଶାସନ ଦ୍ୱାରା ପ୍ରଦତ୍ତ ସମୁଦ୍ର ନିକଟବର୍ତ୍ତୀ (ଚିଲିକାକୁ ଲକ୍ଷ୍ୟ କରାଯାଇଛି) କଣ୍ଟଶର (ଘଣ୍ଟଶିଳା) ନଗର ଦକ୍ଷିଣ ତୋଷଲୀର କୋଙ୍ଗୋଦମଣ୍ଡଳରେ ଅବସ୍ଥିତ ଥିବାର ବର୍ଣ୍ଣିତ ହୋଇଛି । (୨୫) ଏହା ୧୮୭ ଭୌମସମ୍ବତ୍ ବା ୮୦୧ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ହୋଇଥିଲା ।

ଉକ୍ତ ଅଞ୍ଚଳରେ ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ଜୟବର୍ମ ଦେବଙ୍କ ୫୦ ଭୌମସମ୍ବତ୍ ବା ୬୬୪ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ବଡ଼ଖେମୁଣ୍ଡି ଦାନପତ୍ରରେ ବର୍ଣ୍ଣନ ବିଷୟ (ଗଞ୍ଜାମର କୋଇରଣୀ ଅଞ୍ଚଳ) କୋଙ୍ଗୋଦ ମଣ୍ଡଳରେ ପ୍ରବର୍ତ୍ତିତ ହୋଇଛି । (୨୬) 'କୋଙ୍ଗୋଦ' ରାଜଧାନୀରୁ ରାଜତ୍ୱ କରୁଥିବା ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ଦାନପତ୍ର ସମୂହ ପୁରୀ ଜିଲ୍ଲାର ପୁରୀ, ଖୁର୍ଦ୍ଧା, ବାଣପୁର, ଚନ୍ଦ୍ରେଶ୍ୱର, ରଣପୁର, ପାରିକୁଦ ଓ ଗଞ୍ଜାମ ଜିଲ୍ଲାର ଗଞ୍ଜାମ, ପୁରୁଷୋତ୍ତମପୁର, ବୁଗୁଡ଼ା, ନବନା, କୋଣ୍ଡେଡ଼ା ପ୍ରଭୃତି ସ୍ଥାନରୁ ଆବିଷ୍କୃତ ହୋଇଅଛି । ଏଗୁଡ଼ିକରେ ବର୍ଣ୍ଣିତ ପ୍ରାପ୍ତ ସମସ୍ତ ଗ୍ରାମ ଗଞ୍ଜାମ ଜିଲ୍ଲାର ଉତ୍ତରାଂଶ ଓ ପୁରୀ ଜିଲ୍ଲାର ଦକ୍ଷିଣ ଭାଗରେ ଚିହ୍ନିତ ହୋଇପାରୁଛି । ତେଣୁ ଉକ୍ତ ଅଞ୍ଚଳକୁ ନେଇ କୋଙ୍ଗୋଦ ମଣ୍ଡଳ ଗଠିତ ହୋଇଥିଲା ।

**ଯମଗର୍ତ୍ତ ମଣ୍ଡଳ** — ଅନୁଗୁଳ ଖଣ୍ଡଜଳନର ସନ୍ତ୍ରିବ ଗ୍ରାମରୁ ମିଳିଥିବା ଦଣ୍ଡୀ ମହାଦେବୀଙ୍କ ଏକ ତାମ୍ରଶାସନ ଅନୁଯାୟୀ 'ଯମଗର୍ତ୍ତ-

---

(୨୩) E. I. Vol. VI, pp. 140-142

(୨୪) E I. Vol. VI, pp. 133-140

(୨୫) J. B. O. R. S. Vol.V; pp. 564-577

(୨୬) I. H. Q. Vol. XII, No. 3, 1936, pp. 489—493

ମଣ୍ଡଳ' ଦକ୍ଷିଣ ତୋଷଳୀ ଅନ୍ତର୍ଭୁକ୍ତ ଥିଲା । ଏହି ଦାନପତ୍ରଟି ୧୮୦ ଭୌମସମ୍ବତ୍ ବା ୭୧୪ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ହୋଇଥିଲା । (୨୨) ଏଠାରେ ଶୁକବଂଶୀୟ ରାଜାମାନେ ଭୌମସମ୍ରାଟ ମାନଙ୍କ ସାମନ୍ତ ରାଜା ରୂପେ ରାଜତ୍ୱ କରୁଥିଲେ । ପାଲଲହଡ଼ା, ଅନୁଗୁଳ, ଢେଙ୍କାନାଳ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ଥିଲା ।

**ଯାଜପୁରମଣ୍ଡଳ** --- ଖଣ୍ଡପଡ଼ା, ବାଙ୍କୀ ପ୍ରଭୃତି ମହାନଦୀର ଦକ୍ଷିଣ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଓ ନରସିଂହପୁର, ବଡ଼ାମ୍ବା ପ୍ରଭୃତି ମହାନଦୀର ଉତ୍ତର ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ନେଇ ଯାଜପୁରମଣ୍ଡଳ ଗଠିତ ହୋଇଥିଲା । ସେଠାରେ ନନ୍ଦବଂଶୀୟ ରାଜାମାନେ ଭୌମସମ୍ରାଟମାନଙ୍କ ସାମନ୍ତ ରାଜା ରୂପେ ରାଜତ୍ୱ କରୁଥିଲେ ଏବଂ ଭୌମସମ୍ବତ୍ ବ୍ୟବହାର କରୁଥିଲେ ।

କେଉଁ ପର୍ବତମାଳା ଓ ନଦୀ ଦକ୍ଷିଣ ତୋଷଳୀ ଓ ଉତ୍ତର ତୋଷଳୀର ସୀମା ରୂପେ ନିର୍ଦ୍ଦିଷ୍ଟ ଥିଲା ତାହା ବର୍ତ୍ତମାନ ଅବସ୍ଥାରେ ସ୍ଥିର କରିବା ସହଜସାଧ୍ୟ ନୁହେଁ । କାଲେଶ୍ୱର ଜଲାର ଧାମନଗର ନିକଟବର୍ତ୍ତୀ ବହୁ ପ୍ରାଚୀନ ବୌଦ୍ଧକୀର୍ତ୍ତିମଣ୍ଡିତ ଭୂପାର "ପଦ୍ମତଦ୍ରୋଣୀ କୋମାରକ ଗ୍ରାମ" ଏବଂ ଏକ ବୌଦ୍ଧବିହାର ଅବସ୍ଥିତ ଥିବା ବୈତରଣୀ ନଦୀର ଉତ୍ତର ପାର୍ଶ୍ୱବର୍ତ୍ତୀ 'ପୋଲଣପୁର' ଗ୍ରାମ, ଢେଙ୍କାନାଳର ନଡ଼ଲେ, ଗଙ୍କେଇଜୋଡ଼ ପାଲଲହଡ଼ାର ସୁମେଇ (ସୋମକୋଇ) ନଈ, କେନ୍ଦୁଝରର ଦେଉଳ ନଈ ପ୍ରଭୃତି ଉତ୍ତର ତୋଷଳୀର ଅନ୍ତର୍ଗତ ଥିବାର ଭୌମ ତାମ୍ରଶାସନ ଗୁଡ଼ିକରେ ବର୍ଣ୍ଣିତ ହୋଇଛନ୍ତି । ତେଣୁ ଅନ୍ୟ ବିରୁଦ୍ଧ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ବ୍ରାହ୍ମଣୀ ନଦୀକୁ ଉଭୟ ତୋଷଳୀର ସୀମା ରୂପେ ଗ୍ରହଣ କରାଯାଇପାରେ ।

ତୋଷଳୀ ରାଜ୍ୟର ପଶ୍ଚିମରେ ବୌଦ ପର୍ଯ୍ୟନ୍ତ ବିସ୍ତୃତ କୋଶଳ ରାଜ୍ୟ ଅବସ୍ଥିତ ଥିଲା । ସୋମବଂଶୀ ରାଜତ୍ୱ କାଳରେ ପ୍ରଦତ୍ତ ଅଧିକାଂଶ ଗ୍ରାମ କୋଶଳ ଦେଶରେ ଅବସ୍ଥିତ ଥିବାର ଜଣାଯାଏ । କିନ୍ତୁ

---

(୨୨) E. I, Vol. XXIX, p. 79

ସୋମବଂଶୀ ରାଜତ୍ୱ କାଳରେ ମଧ୍ୟ ( ଆ: ୯୦୦—୧୧୦୦ ଖ୍ରୀ:) ଉଭୟ ତୋଷଳୀ ବର୍ତ୍ତମାନ ଥିବାର ଲେଖଗତ ପ୍ରମାଣ ମିଳେ । ଉତ୍କଳରେ ସୋମବଂଶର ଆଧିପତ୍ୟ ପ୍ରତିଷ୍ଠା କରିଥିବା 'ପରମମାହେଶ୍ୱର' 'ପରମଭଟ୍ଟାରକ' 'ମହାରାଜାଧିରାଜ' 'ସୋମକୁଳ ତିଳକ' ପ୍ରଥମ ଯଯାତି (ଆ ୯୨୧—୯୬୫ ଖ୍ରୀଷ୍ଟାବ୍ଦ) ଦକ୍ଷିଣ ତୋଷଳୀସ୍ଥ ମରଡ଼ ବିଷୟରେ (ଜଗତସିଂହପୁର) ବ୍ରହ୍ମଗ୍ରାମ ଦାନ କରିଥିବାର ଜଣାଯାଏ । (୨୮) ଏହି ବଂଶର ଶେଷ ରାଜା କର୍ଣ୍ଣଦେବ ଉତ୍ତର ତୋଷଳୀରେ ଏକ ଗ୍ରାମ ଦାନ କରିଥିଲେ । (୨୯) ଦକ୍ଷିଣ ତୋଷଳୀର ଶେଷ ଉଲ୍ଲେଖ ଦେଖାଯାଏ ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ରାଜତ୍ୱ କରୁଥିବା ଖିଞ୍ଜାଳିର ଭଞ୍ଜରାଜା ଜୟଭଞ୍ଜ ଦେବଙ୍କ ଅନ୍ତିର ଗ୍ରାମ ତାମ୍ରଶାସନରେ । ଯଥା— 'କୋଟଗ୍ରାମଙ୍କ' (କୋଟଗ୍ରାମଙ୍କ) ବିଷୟେ ଦକ୍ଷିଣ ତୋଷଳସ୍ଥ 'ପଟବାଡ଼ପାଟକ' (୩୦)। ଏପର୍ଯ୍ୟନ୍ତ ଉପଲବ୍ଧ ଲେଖଗୁଡ଼ିକ ଆଲୋଚନା ଦ୍ୱାରା ଏହାହିଁ ପ୍ରତିପାଦିତ ହୁଏ ଯେ, ଦୁଇଭାଗରେ ବିଭକ୍ତ ତୋଷଳୀ ବା ତୋଷଳ ରାଜ୍ୟ ସ୍ଥୂଳତଃ ଆଧୁନିକ ମେଦିନୀପୁର, ବାଲେଶ୍ୱର, କଟକ, ପୁରୀ, ଢେଙ୍କାନାଳ ଜିଲ୍ଲା ଓ ଗଞ୍ଜାମର ଉତ୍ତରାଂଶକୁ ନେଇ ଗଠିତ ହୋଇଥିଲା ଏବଂ ଅନ୍ତତଃ ଦ୍ୱାଦଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ଏହି ଦୁଇ ବିଭାଗର ଅସ୍ତିତ୍ୱ ଅକ୍ଷୁର୍ଣ୍ଣ ଥିଲା । ଗଙ୍ଗରାଜତ୍ୱ କାଳରେ ଏହା କ୍ରମଶଃ ଲୋପ ପାଇଗଲା ।

## ପ୍ରାଚୀନ ଗ୍ରନ୍ଥ ସମୂହରେ ତୋଷଳୀ ବା ତୋଷଳ ରାଜ୍ୟର ଉଲ୍ଲେଖ –

ରାଜକୀୟ ଲେଖଗୁଡ଼ିକରେ 'ତୋଷଳୀ' ବା 'ତୋଷଳ'ର ବାରମ୍ବାର ନାମୋଲ୍ଲେଖ ଘଟିଥିବାରୁ ଏହା ଅନ୍ତତଃ ଖ୍ରୀଷ୍ଟୀୟ ଦ୍ୱିତୀୟ

---

(୨୮) E. I. Vol. III, pp. 351-365.

(୨୯) Inscriptions of Orissa, Vol. IV, by S. N. Rajaguru, page

(୩୦) E. I. Vol. XIX, pp. 41-45.

ଶତାବ୍ଦୀ ଠାରୁ ଦଧିଶୋଦଧି (ବଙ୍ଗୋପସାଗର) କୂଳବର୍ତ୍ତୀ ଏକ ମୁଖ୍ୟ ଭୂଖଣ୍ଡ ରୂପେ ପ୍ରତିଷ୍ଠା ଲାଭ କଲା । ତେଣୁ ସେହି ପ୍ରାଚୀନ ଯୁଗରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ରଚିତ ବହୁ ଗ୍ରନ୍ଥରେ ଏହି ରାଜ୍ୟର ବର୍ଣ୍ଣନା ମିଳେ । 'ଅଥର୍ବବେଦ ପରିଶିଷ୍ଟ' ନାମକ ଗ୍ରନ୍ଥର ଷଟ୍ପଞ୍ଚାଶତ ଅଧ୍ୟାୟରେ ଦକ୍ଷିଣ ସମୁଦ୍ର ଉପକୂଳବର୍ତ୍ତୀ ରାଜ୍ୟଗୁଡ଼ିକ ସହିତ 'କୋଶଳ' ଓ 'ତୋଶଳ' ସ୍ଥାନ ପାଇଅଛି । 'ମତ୍ସ୍ୟ ପୁରାଣ'ରେ ମଧ୍ୟ 'ତୋଷଳ' ଓ 'କୋଶଳ'ର ଏକତ୍ର ଉଲ୍ଲେଖ ଦେଖାଯାଏ । ଯଥା—

'ତୋଷଳା-କୋଶଳାଶ୍ଚୈବ ତ୍ରୈପୁରା ବୈଦିକାସ୍ତଥା
ତୁମୁରସ୍ତୁମୁରାଶ୍ଚୈବ ଷଟ୍ସୁରା ନଷଧୈଃସହ ॥

'ବାୟୁ ପୁରାଣ'ରେ ମଧ୍ୟ ଉକ୍ତ ଶ୍ଳୋକ ପରିଦୃଷ୍ଟ ହୁଏ । ମାର୍କଣ୍ଡେୟ ପୁରାଣର ଚତୁଃପଞ୍ଚାଶତ୍ତମ ଅଧ୍ୟାୟରେ 'ବୈଦିକା' ପଦ ପରିବର୍ତ୍ତରେ 'ଦଶାର୍ଣ୍ଣା' ପଦ ମିଳେ । ଯଥା—

"ତୋଷଳାଃ କୋସଳାଶ୍ଚୈବ ତ୍ରୈପୁରା ଦଶାର୍ଣ୍ଣାସ୍ତଥା"

ବ୍ରହ୍ମାଣ୍ଡ ପୁରାଣରେ 'କୋଶଳ - ତୋଷଳକାଃ' ପଦରେ ବ୍ୟବହୃତ 'ତୋଷଳ'କୁ ଉଇଲଫୋର୍ଡ଼ ସାହେବ ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀଙ୍କ ତୋଷଳ ସହିତ ଚିହ୍ନିତ କରିଛନ୍ତି । (୩୧) ହରିବଂଶ ଓ ବିଷ୍ଣୁ ପୁରାଣରେ ଶ୍ରୀକୃଷ୍ଣ 'ତୋଷଳ' ବା 'ତୋଷଳକ'ର ଜଣେ ମଲ୍ଲଙ୍କୁ ପରାସ୍ତ କରିଥିବା ବର୍ଣ୍ଣିତ ହୋଇଛି । (୩୨)

ପୁରାଣମାନଙ୍କ ପର ପ୍ରାଚୀନ ଜୈନଗ୍ରନ୍ଥ 'ଆବଶ୍ୟକ ସୂତ୍ର'ରେ ମହାବୀର ଜୀନ 'ତୋଷଳୀ' ପରେ 'ମୋଷଳୀ'କୁ ଯାତ୍ରା କରିଥିବା

---

(୩୧) I A, Vol. XIII, p. 382,

(୩୨) Early Inscriptions of Bihar and Orissa by A. P. Banarjee Sastri.
The Harivamsa II. 30. 48. 50. 55. Vishnu Purāna, Wilson's Edition, Vol. V, p. 39

ବିଷୟ ଏ ଅଧ୍ୟାୟ ଆରମ୍ଭରେ ଆଲୋଚିତ ହୋଇଅଛି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଭାରତର ଭୂଗୋଳ ପ୍ରଣେତା ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀ ତୋଷଲୀକୁ ଏକ ମହାନଗରୀ ରୂପେ ବର୍ଣ୍ଣନା କରିଥିବା ପୂର୍ବରୁ ବର୍ଣ୍ଣିତ ହୋଇଅଛି । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ପ୍ରଣୀତ ଭରତଙ୍କ 'ନାଟ୍ୟଶାସ୍ତ୍ର'ରେ କୋଶଳ, ତୋଷଳ ଓ କଳିଙ୍ଗର ଏକତ୍ର ଉଲ୍ଲେଖ ଦେଖାଯାଏ । ଯଥା—

"କୋଶଳାସ୍ତୋସଳାଶ୍ଚୈବ କଳିଙ୍ଗା ଯବନାଃ ଖସାଃ" (୩୩)

ଏହି ବର୍ଣ୍ଣନାର ସମସାମୟିକ ଲେଖସମୂହରୁ ଉପଲବ୍ଧ ତଥ୍ୟ ସହିତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ନବମ ଶତାବ୍ଦୀରେ ଆବିର୍ଭୂତ ବାଗ୍‌ଭଟଙ୍କ ଦ୍ୱାରା ରଚିତ 'କାବ୍ୟାନୁଶାସନ' ନାମକ ଅଳଙ୍କାର ଗ୍ରନ୍ଥରେ 'କଳିଙ୍ଗ-କୋଶଳ-ତୋସଳୋତ୍କଳ'ର ଏକତ୍ର ସମାବେଶ ଦେଖାଯାଏ । ଯଥା—

"କାରଣସ୍ୟାଃ ପରତଃ ପୂର୍ବଦେଶଃ । ଯତ୍ରାଙ୍ଗ-କଳିଙ୍ଗ-କୋଶଳ-ତୋସଳା" ।

ଦଶମ ଶତାବ୍ଦୀରେ ଆବିର୍ଭୂତ କବିରାଜ ରାଜଶେଖର ସ୍ୱ କୃତ **କାବ୍ୟମୀମାଂସା** ଗ୍ରନ୍ଥରେ ଉପରୋକ୍ତ ଉକ୍ତିକୁ ବିଶଦ ଭାବରେ ଲେଖିଛନ୍ତି । ଯଥା—

"ତତ୍ର ବାରାଣସ୍ୟାଃ ପରତଃ ପୂର୍ବଦେଶାଃ ଯତ୍ରାଙ୍ଗ- କଳିଙ୍ଗ କୋସଳ - ତୋସଳୋତ୍କଳ-ମଗଧ ମୁଦ୍‌ଗର-ବିଦେହ-ନେପାଳ ପୁଣ୍ଡ୍ର-ପ୍ରାଗ୍‌ଜ୍ୟୋତିଷ-ତାମ୍ରଲିପ୍ତ...... ପ୍ରଭୃତୟୋଃ ଜନପଦାଃ" । (୩୪)

---

(୩୩) 'ଗାଇକଓ୍ୱାଡ଼ ପ୍ରାଚ୍ୟ ଗ୍ରନ୍ଥମାଳା'ରେ ମୁଦ୍ରିତ ଓ ପ୍ରକାଶିତ ସପ୍ତଦଶ ଅଧ୍ୟାୟ ଶ୍ଳୋକ ୪୦, ପୃ ୨୦୮ ।

(୩୪) ଗାଇକଓ୍ୱାଡ ପ୍ରାଚ୍ୟ ଗ୍ରନ୍ଥମାଳାରେ ପ୍ରକାଶିତ 'କାବ୍ୟମୀମାଂସା'ର କବିରହସ୍ୟେ ସପ୍ତଦଶ ଅଧ୍ୟାୟ ।

କନଉଜ ରାଜଶେଖରଙ୍କ ଏହି ଭୌଗୋଳିକ ବର୍ଣ୍ଣନା ସେଯୁଗର ବିଭିନ୍ନ ଲେଖ ଦ୍ୱାରା ସମର୍ଥିତ ହୁଏ । ଗୁଜରାଟର ପ୍ରସିଦ୍ଧ ଜୈନକବି ଓ ଅଳଙ୍କାରିକ ସ୍ୱକୃତ 'ପରିଶିଷ୍ଟ ପର୍ବମ୍' ଗ୍ରନ୍ଥରେ 'ଆର୍ଯ୍ୟରକ୍ଷିତ' ବା 'ରକ୍ଷିତ ସ୍ୱାମୀ'ଙ୍କ ଜୈନଗୁରୁଙ୍କୁ 'ତୋଷଳୀପୁର' ବା ତୋଷଳୀ ଅଧିବାସୀ ରୂପେ ଅଭିହିତ କରିଛନ୍ତି ।

ଏ ସମସ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ବ୍ରାହ୍ମଣ୍ୟ ଧର୍ମର ପ୍ରବଳ ଅଭ୍ୟୁତ୍ଥାନ ଫଳରେ ତୋଷଳୀର ମାହାତ୍ମ୍ୟ ଓ ଗୌରବ କ୍ରମଶଃ ହ୍ରାସଲାଭ କରୁଥିଲେ ମଧ୍ୟ ଦ୍ୱାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣ ଲୁପ୍ତ ହୋଇ ନ ଥିଲା ।



# ଦ୍ୱିତୀୟ ଅଧ୍ୟାୟ

## ତୋଷଲୀ ଓ କଳିଙ୍ଗ ଯୁଦ୍ଧ

କଳିଙ୍ଗ ଯୁଦ୍ଧ ସମଗ୍ର ପୃଥିବୀ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ପ୍ରାୟ ସମଗ୍ର ଭାରତରେ ଆଧିପତ୍ୟ ଲାଭ କରିଥିବା ମୌର୍ଯ୍ୟସମ୍ରାଟ ଅଶୋକ କଳିଙ୍ଗ ଅଧିକାର ପାଇଁ ପ୍ରବଳ ଯୁଦ୍ଧରେ ପ୍ରବୃତ୍ତ ନ ହୋଇଥିଲେ ସେ ଯୁଗରେ ଜ୍ଞାତ ପୃଥିବୀରେ ବୌଦ୍ଧଧର୍ମର କ୍ଷିପ୍ର ପ୍ରସାର ସମ୍ଭବପର ହୋଇ ନ ଥାନ୍ତା । କଳିଙ୍ଗବାସୀ ସ୍ୱାଧୀନତା ରକ୍ଷାପ୍ରୟାସରେ 'ଚଣ୍ଡାଶୋକ'ଙ୍କୁ 'ଧର୍ମାଶୋକ'ରେ ପରିଣତ କରି ଓ ତାଙ୍କ ଦ୍ୱାରା ସମଗ୍ର ଜଗତବାସୀଙ୍କ ମଧ୍ୟରେ 'ଶାନ୍ତି-ମୈତ୍ରୀ-ପ୍ରୀତି' ବୌଦ୍ଧଧର୍ମ ପ୍ରଚାର କରାଇ ଗୌରବଶ୍ରୀରେ ମଣ୍ଡିତ ହୋଇଥିଲେ । ସହସ୍ର ସହସ୍ର କଳିଙ୍ଗ ବୀରଙ୍କ ପ୍ରାଣପାତ ଫଳରେ ମହାମାନବ ଗୌତମଙ୍କ ମହାବାଣୀ 'ଅହିଂସା ପରମୋ ଧର୍ମଃ' ସେ ଯୁଗର ଧର୍ମ ଜଗତରେ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ଏହି ଇତିହାସ ପ୍ରସିଦ୍ଧ ଯୁଦ୍ଧର ସମ୍ୟକ୍ ଆଲୋଚନା ନିମ୍ନରେ ପ୍ରଦାନ କରାଗଲା ।

**ମହାପଦ୍ମନନ୍ଦଙ୍କ କଳିଙ୍ଗ ବିଜୟ** — 'କଳିଙ୍ଗ ଚକ୍ରବର୍ତ୍ତୀ' ଭାରତ ଜୟୀ ଜୈନସମ୍ରାଟ୍ ଶ୍ରୀ ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଲେଖର ଦୁଇଟି ସ୍ଥାନରେ ଉଲ୍ଲେଖ ଲାଭ କରିଥିବା 'ନନ୍ଦରାଜ'ଙ୍କୁ ଭାରତ ବିଜୟୀ ନନ୍ଦବଂଶ ପ୍ରତିଷ୍ଠାତା ମହାପଦ୍ମ ନନ୍ଦ ରୂପେ ଗ୍ରହଣ କରିବା ସର୍ବଥା ଯୁକ୍ତିସଂଗତ । ପ୍ରଥମ ଉଲ୍ଲେଖରୁ ଜଣାଯାଏ, 'ନନ୍ଦରାଜ' ତିନିଶତ ବର୍ଷ ପୂର୍ବେ ଯେଉଁ ପ୍ରଣାଳୀର ଖନନ କାର୍ଯ୍ୟ ଆରମ୍ଭ କରି-ଥିଲେ ଶ୍ରୀ ଖାରବେଳ ସ୍ୱ ରାଜତ୍ୱର ପଞ୍ଚମ ବର୍ଷରେ ବହୁସହସ୍ର ମୁଦ୍ରା ବ୍ୟୟରେ 'ତନସୁଲୀ ବାଟ'ରେ ତାହାକୁ ଖୋଳାଇ ନଗର (କଳିଙ୍ଗ

ନଗର)ରେ ପ୍ରବେଶ କରାଇଥିଲେ । (୧) ଏଥିରେ ତଙ୍ଗସୁଲୀ (ତୋଷଲୀ) ଓ ନଗର (କଳିଙ୍ଗ ନଗରୀ) ଉଦ୍ଦେଶ୍ୟ ପୃଥକ୍ ଭାବରେ ସ୍ଥାନ ପାଇ-ଥିବାରୁ ଏହାଦ୍ୱାରା ନିକଟବର୍ତ୍ତୀ ଦୁଇଟି ନଗରର ଅବସ୍ଥିତି ସୂଚିତ ହେଉଅଛି ।

ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ବୃତ୍ତାନ୍ତରୁ ଜଣାଯାଏ ଯେ, ଶ୍ରୀ ଖାରବେଳ ସମଗ୍ର ଉତ୍ତରାପଥ ବିଜୟ ପରେ ଅଙ୍ଗ ମଗଧର ରାଜା ବୃହସ୍ପତି ମିତ୍ରଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରି ବିଜୟର ସ୍ମାରକ ସ୍ୱରୂପ ବହୁବର୍ଷ ପୂର୍ବେ କଳିଙ୍ଗରୁ 'ନନ୍ଦରାଜ' (ମହାପଦ୍ମ ନନ୍ଦ)ଙ୍କ ଦ୍ୱାରା ସ୍ଥାନାନ୍ତରିତ 'କଳିଙ୍ଗ ଜିନାସନ'କୁ ଅସଂଖ୍ୟ ଅଶ୍ୱ ଓ ଗଜାରୋହୀ ସୈନିକ ଓ ପରିଚରମାନଙ୍କ ବିରାଟ ଶୋଭାଯାତ୍ରା ମଧ୍ୟରେ ସ୍ୱଦେଶକୁ ଘେନିଆସିଥିଲେ । (୨) ହାତୀଗୁମ୍ଫା ଲେଖରେ ଏହି ଦୁଇଟି ଘଟଣାର ସ୍ପଷ୍ଟ ଉଲ୍ଲେଖ ଦ୍ୱାରା ମଗଧର ପ୍ରଥମ କ୍ଷମତାଶାଳୀ ସମ୍ରାଟ୍ ମହାପଦ୍ମନନ୍ଦଙ୍କ କଳିଙ୍ଗ ବିଜୟ ଏବଂ ମଗଧ ସମ୍ରାଟଙ୍କ ରାଜ୍ୟବିସ୍ତାର

---

(୧) "ପଞ୍ଚମେ ଚଦାନିଂ ବର୍ଷେ ନନ୍ଦରାଜେନ ତ୍ରିବର୍ଷଶତାତ ପୂର୍ବ ମୁଦ୍ଘାଟିତଂ ତନ (ଉ) ସୁଲୀୟ ବର୍ତ୍ମନଃ ପ୍ରଣାଲୀଂ ନଗରଂ ପ୍ରବେଶୟତି; ଶତସହସ୍ରୈଷ୍ଟ ଖାନୟତି" (ମୂଳର ସଂସ୍କୃତାନୁବାଦ)

"Old Brahmi Inscriptions in the Udayagiri and Khandagiri hills" by Dr. B. M. Barua.

ଲେଖବର୍ଣ୍ଣିତ ନଗର ବା କଳିଙ୍ଗ ନଗର 'ଶିଶୁପାଳ ଦୁର୍ଗ' ସହିତ ଚିହ୍ନିତ ହୋଇପାରେ । ବିଶେଷ ବିବରଣୀ ପାଇଁ ମୋ ପ୍ରଣୀତ 'ଶ୍ରୀ ଖାରବେଳ' ପୁସ୍ତକ ଦ୍ରଷ୍ଟବ୍ୟ ।

(୨) "ମାଗଧାନାଞ୍ଚ ରାଜାନଂ ବୃହସ୍ପତିମିତ୍ରଂ ପାଦୌ ବନ୍ଦୟତି । ନନ୍ଦରାଜନୀତଂ କାଳିଙ୍ଗଜିନାସନଂ ଅଙ୍ଗମଗଧେଭ୍ୟଃ କଳିଙ୍ଗ ମାନୟତି ଧ୍ୱଜ-ଗଜ-ସେନା-ବାହନ ସହସ୍ରୈଃ । ଅଙ୍ଗ-ମଗଧବାସିନଃ ପାଦୌ ବନ୍ଦୟତି" ।

(ମୂଳର ସଂସ୍କୃତାନୁବାଦ)

ନୀତି ଯୋଗୁଁ ପ୍ରତିବେଶୀ ଉଭୟ ରାଜ୍ୟ ମଧ୍ୟରେ ଶୋଷଣ ଭାବରେ ସ୍ୱେଚ୍ଛା ବୃଦ୍ଧି ନିର୍ବିବାଦରେ ପ୍ରତିପାଦିତ ହୁଏ ।

## ଅଶୋକଙ୍କ ଆକ୍ରମଣ ସମୟରେ କଳିଙ୍ଗର ଅବସ୍ଥା—

ନନ୍ଦ ବଂଶର ପତନ ସମୟରେ କଳିଙ୍ଗ ପୁନର୍ବାର ନିଜର ସ୍ୱାଧୀନତା ପ୍ରତିଷ୍ଠିତ କରିଥିବାର ଜଣାଯାଏ । କାରଣ ସମଗ୍ର ଭାରତରେ ନିଜର ଆଧିପତ୍ୟ ବିସ୍ତାର କରି ଏକ ବିରାଟ ସାମ୍ରାଜ୍ୟ ଗଠନ କରିଥିବା ପ୍ରବଳ ପରାକ୍ରାନ୍ତ ମୌର୍ଯ୍ୟସମ୍ରାଟ୍ ଚନ୍ଦ୍ରଗୁପ୍ତ (ଖ୍ରୀ: ପୂ ୩୨୧-୨୯୮ ଅବ୍ଦ)ଙ୍କ ରାଜତ୍ୱ କାଳରେ କଳିଙ୍ଗ ସ୍ୱାଧୀନ ଥିଲା । ତାଙ୍କ ପରେ ମଗଧରେ ରାଜତ୍ୱ କରିଥିବା ସମ୍ରାଟ୍ ବିନ୍ଦୁସାର (ଖ୍ରୀ: ପୂ: ୨୯୮ – ୨୭୨ ଅବ୍ଦ) ମଧ୍ୟ କଳିଙ୍ଗକୁ ମୌର୍ଯ୍ୟସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିବାର କୌଣସି ପ୍ରମାଣ ମିଳନାହିଁ । ଉତ୍ତରରେ ଗଙ୍ଗା ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଓ ପୂର୍ବରେ ମହୋଦଧି ଠାରୁ ପଶ୍ଚିମରେ ଅଙ୍ଗ-ମଗଧର ସୀମା ପର୍ଯ୍ୟନ୍ତ ବିସ୍ତୃତ ବିରାଟ କଳିଙ୍ଗ ରାଜ୍ୟ ସେ ସମୟରେ ଧନ-ଜନ-ଗୋପ-ଲକ୍ଷ୍ମୀରେ ପରିପୂର୍ଣ୍ଣ ଥିଲା । କଳିଙ୍ଗର ବେଳାଭୂମିରେ ସେ ଯୁଗରେ ଶତ ଶତ ପୋତାଶ୍ରୟ ଥିଲା । କଳିଙ୍ଗର ନାବିକ ଓ ବଣିକମାନେ ସାଗର ବକ୍ଷରେ ପୋତ ଚାଳନ କରି ସହସ୍ର ଯୋଜନ ଦୂରବର୍ତ୍ତୀ ବାଲି, ଯବ, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜ, ଭାରତ ମହାସାଗରର ମଉଡ଼ମଣି ସିଂହଳଦ୍ୱୀପ, ପ୍ରାଚ୍ୟ ଭୂଖଣ୍ଡରେ ଅବସ୍ଥିତ ବ୍ରହ୍ମ, ମାଳୟ ଉପଦ୍ୱୀପ, ଶ୍ୟାମ ପ୍ରଭୃତି ରାଜ୍ୟ ଓ ଭାରତର ଉପକୂଳବର୍ତ୍ତୀ ବିଭିନ୍ନ ପ୍ରଦେଶ ସହିତ ସାମୁଦ୍ରିକ ବାଣିଜ୍ୟ ଚଳାଇଥିଲେ । ଏହା ଫଳରେ କଳିଙ୍ଗକୁ ଧନରତ୍ନର ସ୍ରୋତ ଅବାରିତ ଭାବରେ ବୋହି ଆସି ଏ ରାଜ୍ୟକୁ ବିଶେଷ ସମୃଦ୍ଧିଶାଳୀ କରିଥିଲା ।

ଅଶୋକଙ୍କ ପୂର୍ବରୁ ଆର୍ଯ୍ୟାବର୍ତ୍ତରୁ ଆଗତ ବ୍ରାହ୍ମଣମାନେ ନାନା ସ୍ଥାନରେ ବସତି ସ୍ଥାପନ କରି ଏ ଭୂଖଣ୍ଡରେ ଆର୍ଯ୍ୟ ଧର୍ମ ଓ ସଂସ୍କୃତି ପ୍ରଚାର କରିଥିବା ପ୍ରିୟଦର୍ଶୀଙ୍କ ତ୍ରୟୋଦଶ ଅନୁଶାସନରୁ

ଜଣାଯାଏ । (୩) ମହାଭାରତ ବନପର୍ବରେ ପ୍ରଦତ୍ତ ବର୍ଣ୍ଣନା ଅନୁସାରେ ଗଙ୍ଗା ସଙ୍ଗମ ଠାରୁ ମହେନ୍ଦ୍ରମାଳ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡର ନାନା ସ୍ଥାନରେ ଅବସ୍ଥିତ ଆର୍ଯ୍ୟ ଋଷିମାନଙ୍କ ତପୋବନରୁ ଉତ୍ଥିତ ପୂତ ଯଜ୍ଞଧୂମ ଦ୍ୱାରା ବାୟୁମଣ୍ଡଳ ପାବିତ ହେଉଥିଲା । ବିରଜା, ଶାମ୍ଭବ କ୍ଷେତ୍ର (ଭୁବନେଶ୍ୱର) ବିଷ୍ଣୁ କ୍ଷେତ୍ର (ପୁରୀ) ଓ ମହେନ୍ଦ୍ର ଶିଖରରେ ପ୍ରତି-ଷ୍ଠିତ ତୀର୍ଥସ୍ଥଳ ଗୁଡ଼ିକ ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ସହସ୍ର ସହସ୍ର ତୀର୍ଥଯାତ୍ରୀମାନଙ୍କ ଦ୍ୱାରା ସର୍ବଦା ମୁଖରିତ ହେଉଥିଲା ।

ପ୍ରାଚୀନ ଜୈନଗ୍ରନ୍ଥରୁ ଜଣାଯାଏ ଯେ, ଭଗବାନ ମହାବୀର କଳିଙ୍ଗ ରାଜାଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ 'କୁମାରୀ ପର୍ବତ' ବା ଉଦୟଗି-ରିରେ ସ୍ୱ ଧର୍ମମତ ପ୍ରଚାର କରିଥିଲେ । ଏହା ପରେ କଳିଙ୍ଗରେ ଜୈନ ମତ ପ୍ରସାର ଲାଭ କରିଥିଲା । ତେଣୁ ନନ୍ଦରାଜ (ମହାପଦ୍ମନନ୍ଦ)ଙ୍କ ଆକ୍ରମଣ ବେଳକୁ କଳିଙ୍ଗରେ ଆବିର୍ଭୂତ ଜନୈକ ଜିନ (ଜୈନଧର୍ମ ପ୍ରଚାରକ)ଙ୍କ ଆସନ ଅତ୍ୟନ୍ତ ଭକ୍ତି ସହକାରେ ପୂଜିତ ହେଉଥିବାର ହାତୀଗୁମ୍ଫା ଲେଖରେ ବର୍ଣ୍ଣିତ ହୋଇଛି ।

ମହାମାନବ ଗୌତମଙ୍କ ପ୍ରବର୍ତ୍ତିତ ବୌଦ୍ଧଧର୍ମ ମଧ୍ୟ ବ୍ରାହ୍ମଣ୍ୟ ଓ ଜୈନଧର୍ମ ପରି କଳିଙ୍ଗ ଦେଶରେ ପ୍ରସାର ଲାଭ କରିଥିବା କେତେକ ପ୍ରାଚୀନ ବୌଦ୍ଧଗ୍ରନ୍ଥରୁ ପ୍ରମାଣ ମିଳେ । 'ବିନୟ ପିଟକ'ରୁ ଜଣାଯାଏ ଯେ, ସର୍ବପ୍ରଥମେ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ 'ତପସୁ' ଓ 'ଭଲ୍ଲିକ' ନାମକ ଦୁଇଜଣ ଉତ୍କଳୀୟ ବଣିକ । ସେମାନେ ଉକ୍କଳ ଜନପଦ (ଉତ୍କଳ)ରୁ ମଜ୍ଝିମ ଦେଶ (ମଧ୍ୟଦେଶ)କୁ ପାଞ୍ଚଶତ ଶକଟରେ ବିପୁଳ ପଣ୍ୟସମ୍ଭାର ନେଇ ବ୍ୟବସାୟ କରିବାକୁ ଯାଉଥିବା ସମୟରେ ଗୟା

---

(୩) "ଅଷ୍ଟବର୍ଷାଭିଷିକ୍ତସ୍ୟ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନଃ ରାଜ୍ଞଃ କଳିଙ୍ଗା ବିଜିତାଃ × × × ତତ୍ର ହି ବସନ୍ତି ବ୍ରାହ୍ମଣାଃ ବା ଶ୍ରମଣାଃ ବା ଅନ୍ୟେ ବା ପାଷଣ୍ଡା ଗୃହସ୍ଥା ବା" × ×

(ମୂଳର ସଂସ୍କୃତାନୁବାଦ)

ନିକଟବର୍ତ୍ତୀ 'ଉରୁବେଲା' ଜଙ୍ଗଲରେ ବୁଦ୍ଧତ୍ୱ ଲାଭ ପରେ ସାତସପ୍ତାହ ବ୍ୟାପୀ ପାନାହାର ବର୍ଜିତ ଶାକ୍ୟମୁନିଙ୍କ ଦର୍ଶନ ଲାଭ କରି ତାଙ୍କ ମୁଖରେ ମଧୁ ଦାନ କରିଥିଲେ । ଏହାପରେ ସେ ବୁଦ୍ଧ ସଂଜ୍ଞାପ୍ରାପ୍ତ ବୁଦ୍ଧଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଏହି ଘଟଣାର ସ୍ମାରକ ସ୍ୱରୂପ ବଣିକ ଦ୍ୱୟ ବୁଦ୍ଧଙ୍କ 'କେଶ' ଓ 'ନଖ' ଆଣି ନିଜ ଜନ୍ମଭୂମି ଉତ୍କଳରେ 'କେଶସ୍ତୂପ' ଓ 'ନଖସ୍ତୂପ' ନିର୍ମାଣ କରିଥିଲେ ।

ସେହିପରି କୁଶୀନଗର ଠାରେ ବୁଦ୍ଧଙ୍କ ଚିତାଭସ୍ମରୁ 'କ୍ଷେମ' ନାମକ ଜଣେ ଥେର (ବୌଦ୍ଧ ସନ୍ନ୍ୟାସୀ)ଙ୍କ ଦ୍ୱାରା ଆନୀତ ଏକ ବାମ କଲଦନ୍ତକୁ କଳିଙ୍ଗ ରାଜ ବ୍ରହ୍ମଦତ୍ତ ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ ପୂର୍ବକ ଦନ୍ତପୁର ଠାରେ ଏକ ଚୈତ୍ୟରେ ସଂରକ୍ଷଣ କରିଥିଲେ । (୪) ତେଣୁ ଅଶୋକଙ୍କ ରାଜତ୍ୱ ପୂର୍ବରୁ କଳିଙ୍ଗରେ ବ୍ରାହ୍ମଣ, ଶ୍ରମଣ (ବୌଦ୍ଧ ସନ୍ନ୍ୟାସୀ) ଓ ଅନ୍ୟ ପାଷାଣ୍ଡ (ଜୈନ ମତାବଲମ୍ବୀ)ମାନେ ବସତି ସ୍ଥାପନ ପୂର୍ବକ ନିର୍ବିଘ୍ନରେ ସ୍ୱ ସ୍ୱ ଧର୍ମମତ ପ୍ରଚାର କରୁଥିବା ବିଷୟ; ଯାହା ତାଙ୍କର ଚତୁର୍ଦ୍ଦଶ ଅନୁଶାସନରେ ବର୍ଣ୍ଣିତ ହୋଇଅଛି ତାହା ସର୍ବଥା ସତ୍ୟ ।

**କଳିଙ୍ଗର ସେନା** — ଗ୍ରୀକ୍‌ଦୂତ 'ମେଘାସ୍ଥିନିସ୍' ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜସଭାକୁ ଖ୍ରୀ: ପୂ: ୩୦୫ ଅବ୍ଦରେ ଆଗମନ କରିଥିଲେ । ସମ୍ଭବତଃ ସେ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ପାଟଳୀପୁତ୍ରରେ ଅବସ୍ଥାନ କରିଥିଲେ । ତାଙ୍କର ଭାରତ ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ ଯେ, ତାଙ୍କ ସମୟରେ କଳିଙ୍ଗ ଦେଶର ସେନା ୬୦ ହଜାର ପଦାତି, ୧୦୦୦ ଅଶ୍ୱ, ୭୦୦ ଯୁଦ୍ଧାଶ୍ୱ ଓ ବହୁସହସ୍ର ହସ୍ତୀଙ୍କୁ ନେଇ ଗଠିତ ହୋଇଥିଲା । କଳିଙ୍ଗର ଚତୁରଙ୍ଗ ବଳରେ ଯଥା— ପଦାତି, ଅଶ୍ୱାରୋହୀ, ଗଜାରୋହୀ ଓ ରଥୀ ପ୍ରାୟ ସବୁର

---

(୪) ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ସିଂହଳୀୟ କବି 'ଧର୍ମ-କୀର୍ତ୍ତି'ଙ୍କ ଦ୍ୱାରା ରଚିତ 'ଦାଠା ଧାତୁବଂଶ' ଗ୍ରନ୍ଥରେ ଲିଖିତ ।

ହଜାର ସୈନ୍ୟ ଅନ୍ତର୍ଭୁକ୍ତ ଥିଲେ । ସାହସୀ ଓ ରଣକୁଶଳ କଳିଙ୍ଗର ଏହି ବିରାଟ ସେନା ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କର ଭୀତି ଉତ୍ପାଦନ କରୁଥିଲା । ଏହି ସ୍ଥାୟୀ ସେନା ବ୍ୟତୀତ ସୁସ୍ଥ, ସବଳ, କର୍ମଠ ଓ ଉତ୍ସାହୀ ଯୁବକଗଣ ଯୁଦ୍ଧବିଦ୍ୟା ଶିକ୍ଷା କରି ଦେଶରକ୍ଷା ବା ଦେଶ ବିଜୟ ପାଇଁ ରଣାଙ୍ଗନରେ ଅବତୀର୍ଣ୍ଣ ହେବା ନିମିତ୍ତ ସର୍ବଦା ପ୍ରସ୍ତୁତ ଥିଲେ । ତେଣୁ ସ୍ୱ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ନିମିତ୍ତ ଯେଉଁ ପୃଥିବୀ ପ୍ରସିଦ୍ଧ କଳିଙ୍ଗ ଯୁଦ୍ଧ ସଂଘଟିତ ହୋଇଥିଲା ସେଥିରେ ବିଜୟୀ ଅଶୋକଙ୍କ ଆଦେଶରେ ଏକଶତ ପଚାଶ ହଜାର (ଦେଢ଼ଲକ୍ଷ) ସୈନ୍ୟ ବନ୍ଦୀ ରୂପେ ସ୍ଥାନାନ୍ତରିତ, ଯୁଦ୍ଧକ୍ଷେତ୍ରରେ ଶତସହସ୍ର (ଏକଲକ୍ଷ) ସୈନ୍ୟ ଆହତ ଓ ତାହାର ବହୁଗୁଣ ଲୋକ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ କରିଥିବା ଦେବାପ୍ରିୟଙ୍କ ତ୍ରୟୋଦଶ ଅନୁଶାସନରୁ ଜଣାଯାଏ । (୫)

ଲେଖୋକ୍ତ ତଥ୍ୟକୁ ଭିତ୍ତିକରି ଆଲୋଚ୍ୟ କଳିଙ୍ଗ ଯୁଦ୍ଧରେ ପ୍ରାୟ ତିନିଲକ୍ଷ ସୈନ୍ୟ ଅଂଶଗ୍ରହଣ କରିଥିବା ଐତିହାସିକମାନେ ସ୍ଥିର କରିଛନ୍ତି । ମେଗାସ୍ଥିନିସ୍‌ଙ୍କ ଗ୍ରନ୍ଥ ରଚନା ସମୟରେ ( ଖ୍ରୀ: ପୂ: ୩୦୦ ଅବ୍ଦ) ପ୍ରାୟ ସତୁରି ହଜାର ସୈନ୍ୟଙ୍କୁ ନେଇ ଗଠିତ କଳିଙ୍ଗ ବାହିନୀ କଳିଙ୍ଗ ଯୁଦ୍ଧ ସମୟକୁ ଅର୍ଥାତ୍ ପ୍ରାୟ ୪୦ ବର୍ଷ ମଧ୍ୟରେ ଅନ୍ତତଃ ତିନିଲକ୍ଷ ବା ଚତୁର୍ଗୁଣକୁ ବୃଦ୍ଧିଲାଭ କରିଥିବାରୁ ଗୁରୁତ୍ୱପୂର୍ଣ୍ଣ ଅବସ୍ଥାର ସମ୍ମୁଖୀନ ହେବାପାଇଁ ଏ ରାଜ୍ୟରେ ସୁଗଠିତ ସୈନ୍ୟ ସଂଗ୍ରହ ବ୍ୟବସ୍ଥା ଥିବାର ପ୍ରମାଣିତ ହୁଏ । ସୁଦୂର ଅତୀତରେ ସଂଘଟିତ ଏହି ଯୁଦ୍ଧରେ ଅସୀମ ସାହସ ଓ ବୀରତ୍ୱ ପ୍ରଦର୍ଶନ ଯୋଗୁଁ କଳିଙ୍ଗବାସୀ ଚଣ୍ଡ

---

(୫) "ଅଷ୍ଟବର୍ଷାଭିଷିକ୍ତସ୍ୟ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନଃ ରାଜ୍ଞୋ କଳିଙ୍ଗା ବିଜିତାଃ । ଅଧ୍ୟର୍ଦ୍ଧମାତ୍ର ପ୍ରାଣଶତସହସ୍ରଂ ଯତ୍ତତୋପବ୍ୟୂଢଂ, ଶତସହସ୍ରଂ ମାତ୍ରାନ୍ତ୍ରହତାଃ, ବହୁ ତାବତ୍ ବା ମୃତାଃ, ତତଃ ପଶ୍ଚାଦଧୁନା ଲବ୍‌ଧେଷୁ କଳିଙ୍ଗେଷୁ" × × ×

(ମୂଳର ସଂସ୍କୃତାନୁବାଦ)

ସାହସୀ "କଳଙ୍ଗାଃ ସାହସିକାଃ" ଏହି ଆପ୍ତବାକ୍ୟ ପରମ୍ପରା କ୍ରମେ ପ୍ରଚଳିତ ହୋଇ ଆସୁଅଛି ।

ଯୁଦ୍ଧର କାରଣ — ଦେବପ୍ରିୟ ପ୍ରିୟଦର୍ଶୀଙ୍କ ତ୍ରୟୋଦଶ ଅନୁଶାସନରେ କଳିଙ୍ଗ ଆକ୍ରମଣର କୌଣସି କାରଣର ଉଲ୍ଲେଖ ନାହିଁ । କିନ୍ତୁ ଏହାକୁ ସୂକ୍ଷ୍ମ ଭାବରେ ଆଲୋଚନା କଲେ ଜଣାଯାଏ ଯେ, ସେ ସମୃଦ୍ଧିଶାଳୀ ବିଶାଳ କଳିଙ୍ଗ ରାଜ୍ୟକୁ ସ୍ୱ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବା ପାଇଁ 'ଦିଗ୍‌ବିଜୟ'ରେ ବହିର୍ଗତ ହୋଇଥିଲେ । ସେ ଯୁଗରେ କ୍ଷମତାଶାଳୀ ରାଜାମାନେ 'ଚତୁରନ୍ତଦଧିମେଖଳା ବସୁନ୍ଧରା'ର ଅଧୀଶ୍ୱରତ୍ୱ ଲାଭକୁ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ବୋଲି ମନେକରୁଥିଲେ । ବୈଦିକ ଯୁଗରୁ ରାଜନ୍ୟବୃନ୍ଦ ଏହି ଲକ୍ଷ୍ୟ ସାଧନ ନିମିତ୍ତ ଅଶ୍ୱମେଧ, ରାଜସୂୟ ପ୍ରଭୃତି ଯଜ୍ଞାନୁଷ୍ଠାନ କରି ବିଭିନ୍ନ ରାଜ୍ୟ ଜୟ କରିବା ପାଇଁ ଯୁଦ୍ଧଯାତ୍ରା କରୁଥିଲେ । ମୌର୍ଯ୍ୟବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ଚାଣକ୍ୟଙ୍କ ପରାମର୍ଶରେ ବୈଦିକ ଯୁଗରୁ ପ୍ରଚଳିତ ପରମ୍ପରା ଅନୁସରଣ କରି ସମଗ୍ର ଭାରତ ବିଜୟରେ ପ୍ରବୃତ୍ତ ହୋଇଥିଲେ । କଳିଙ୍ଗ ଯୁଦ୍ଧ ପୂର୍ବରୁ ଅଶୋକ ବ୍ରାହ୍ମଣ୍ୟ ଧର୍ମର କ୍ରିୟାକର୍ମମାନ ଅନୁସରଣ କରୁଥିଲେ । ସିଂହଳରେ ରଚିତ 'ମହାବଂଶ' ନାମକ ଗ୍ରନ୍ଥରୁ ଜଣାଯାଏ ଯେ, ସେ ପ୍ରତ୍ୟହ ଷାଠିଏ ହଜାର ବ୍ରାହ୍ମଣଙ୍କୁ ଅନ୍ନବସ୍ତ୍ର ପ୍ରଦାନ କରୁଥିଲେ ଓ ଏଥିପାଇଁ ପ୍ରତ୍ୟହ ଶତ ଶତ ଜୀବ ବଧ ହେଉଥିଲା । ତେଣୁ ଅଶୋକ ତାଙ୍କ ପିତୃପିତାମହଙ୍କ ରାଜତ୍ୱ କାଳରେ ନିଜର ସ୍ୱାଧୀନତା ଓ ଅଖଣ୍ଡତା ଉପଭୋଗ କରୁଥିବା କଳିଙ୍ଗ ରାଷ୍ଟ୍ରରେ ନିଜର ଆଧିପତ୍ୟ ପ୍ରତିଷ୍ଠା ପୂର୍ବକ ସମଗ୍ର ଭାରତର ସାର୍ବଭୌମ ସମ୍ରାଟର ଗୌରବ ଲାଭ ଉଦ୍ଦେଶ୍ୟରେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିଥିଲେ ।

ଯୁଦ୍ଧାରମ୍ଭ — କଳିଙ୍ଗ ବିଜୟ ରୂପକ ଲକ୍ଷ୍ୟ ଲାଭପାଇଁ ତାଙ୍କୁ ରାଜ୍ୟାଭିଷେକ ପରେ ସାତ ବର୍ଷ କାଳ ଅପେକ୍ଷା କରିବାକୁ ପଡ଼ିଥିଲା । କାରଣ ରାଜ୍ୟାଭିଷେକ ପରେ ପାଟଳୀପୁତ୍ରର ସିଂହାସନରେ ନିଜକୁ ନିଷ୍କଣ୍ଟକ କରିବା ପାଇଁ ସେ ରାଜତ୍ୱର ପ୍ରଥମ ଚାରିବର୍ଷ କାଳ

ନିଜର ସମସ୍ତ ଶକ୍ତି ଓ ସମୟ ନିୟୋଗ କରିଥିଲେ । ଆଉମଧ ପାଟଳୀପୁତ୍ର ଠାରୁ ବହୁ ଦୂରରେ ଅବସ୍ଥିତ ଓ ପୃଷ୍ଠଭାଗରେ ଉତ୍ତୁଙ୍ଗ ପର୍ବତମାଳା ଓ ଘନ ଅରଣ୍ୟାନୀ ଦ୍ୱାରା ସୁରକ୍ଷିତ, କଳିଙ୍ଗ ରାଷ୍ଟ୍ରର ବିରାଟ ବାହିନୀକୁ ପରାଭୂତ କରିବା ପାଇଁ ଆବଶ୍ୟକ ବିପୁଳ ସେନା ସମାବେଶ ସମୟସାପେକ୍ଷ ।

ଯୁଦ୍ଧ ପାଇଁ ପ୍ରେରିତ ଅସଂଖ୍ୟ ସୈନ୍ୟଙ୍କ ବାହନ ରୂପେ ବ୍ୟବହୃତ ସହସ୍ର ସହସ୍ର ଗଜ ଓ ଅଶ୍ୱ ଏବଂ ସେମାନଙ୍କ ପାଇଁ ଆବଶ୍ୟକ ଯଥେଷ୍ଟ ଖାଦ୍ୟପଦାର୍ଥ, ପରିଧେୟ ଓ ଗୋଖାଦ୍ୟ, ବିପୁଳ ପରିମାଣରେ ଅସ୍ତ୍ରଶସ୍ତ୍ର ପାକ ପାଇଁ ପ୍ରୟୋଜନୀୟ ହଣ୍ଡା, ହାଣ୍ଡି ପ୍ରଭୃତି ପାତ୍ର, ପଥମଧ୍ୟରେ ବିଶ୍ରାମାର୍ଥେ ଅସ୍ଥାୟୀ ନିବାସୋପଯୋଗୀ ବହୁ ସରଞ୍ଜାମ ପ୍ରଭୃତିର ପରିବହନରେ ବ୍ୟବହୃତ ଅଗଣିତ ଗୋ-ମହିଷାଦି ପଶୁଙ୍କୁ ପ୍ରାୟ ପଞ୍ଚଶତ କ୍ରୋଶ ଲମ୍ବ ଦୀର୍ଘପଥ ର ବହୁ ଘାଟୀ ଓ ନଦୀ, ନାଳ ପ୍ରଭୃତି ଅତିକ୍ରମ ପୂର୍ବକ ସୈନ୍ୟଚାଳନା କରିବା ପାଇଁ ଅନେକ ଦିନ ଲାଗିଥିବ । ବିଶେଷତଃ ମଗଧ ବାହିନୀ ଆକ୍ରମଣ ପଥରେ ରଣୋନ୍ମତ୍ତ, ସ୍ୱାଧୀନତାପ୍ରେମୀ କଳିଙ୍ଗ ସେନାର ଭୀଷଣ ପ୍ରତିରୋଧର ସମ୍ମୁଖୀନ ହୋଇଥିବା ସୁନିଶ୍ଚିତ । ଏହି ସମସ୍ତ ବିଷୟ ବିଚାର କରି ଏହି ଯୁଦ୍ଧ ଅନ୍ତତଃ ଦୁଇବର୍ଷ ବ୍ୟାପୀ ହୋଇଥିବାର ସ୍ଥିର କରାଯାଇଛି । ଦେବପ୍ରିୟ ପ୍ରିୟଦର୍ଶୀଙ୍କ ରାଜ୍ୟାଭିଷେକର ଅଷ୍ଟମ ବର୍ଷରେ କଳିଙ୍ଗ ବିଜୟ ସମ୍ପୂର୍ଣ୍ଣ ହୋଇଥିବା ତାଙ୍କର ଚତୁର୍ଦ୍ଦଶ ଅନୁଶାସନର ଆଦ୍ୟରେ ଉଲ୍ଲେଖ ଥିବାରୁ (୭) ଅଶୋକ ରାଜତ୍ୱର ଷଷ୍ଠବର୍ଷରେ କଳିଙ୍ଗ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିବେ ।

**ଅଭିଯାନ ମାର୍ଗ —** କଳିଙ୍ଗ ଅଭିଯାନ ପାଇଁ ଅଶୋକ କେଉଁ ମାର୍ଗରେ ବିରାଟ ସୈନ୍ୟ ପରିଚାଳନ କରିଥିଲେ ସେ ସମ୍ପର୍କରେ

---

(୭) "ଅଷ୍ଟବର୍ଷାଭିଷିକ୍ତସ୍ୟ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନଃ ରାଜ୍ଞୋ କଳିଙ୍ଗା ବିଜିତ୍ୟା" (ମୂଳର ସଂସ୍କୃତାନୁବାଦ)

ତାଙ୍କର ଅନୁଶାସନ ମିଳିବ । କିନ୍ତୁ ସେ ଯୁଗରେ ପାଟଳୀପୁତ୍ରରୁ ତୋଷଳୀକୁ ଆସିବା ପାଇଁ ଦୁଇଟି ପଥ ଥିଲା । ପ୍ରଥମଟି ଅଧିକାଂଶରେ ବନମାର୍ଗ । ଏହା ପାଟଳୀପୁତ୍ରରୁ ଗୋରଥଗିରି (ବାରବାର ପର୍ବତ) ଗୟା, ରାଜଗିର (ପ୍ରାଚୀନ ଗିରିବ୍ରଜ ବା ରାଜଗୃହ), ମାନଭୂମି ଜିଲାର ପାଞ୍ଚେଟ, ସିଂହଭୂମି ଜିଲାର ବେଣୁସାଗର, ମୟୂରଭଞ୍ଜ ଜିଲାର ସୀମାନ୍ତବର୍ତ୍ତୀ ଖିଚିଙ୍ଗ ଦେଇ ବୈତରଣୀ ନଦୀ କୂଳେ କୂଳେ ଦକ୍ଷିଣାଭିମୁଖ ହୋଇ ବିରଜା କ୍ଷେତ୍ରରେ ପହଞ୍ଚୁଥିଲା । ସେଠାରୁ ଏହା ତୋଷଳୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । (୭) ଅପର ମାର୍ଗଟିର ଅଧିକାଂଶ ସମତଳ ଭୂମିରେ ବିସ୍ତୃତ ଥିଲା । ଏହା ମାନଭୂମିର ପାଞ୍ଚେଟ ଘାଟି ଠାରୁ ପ୍ରାଚ୍ୟ-ଖଣ୍ଡର ପ୍ରସିଦ୍ଧ ପୋତାଶ୍ରୟ ତାମ୍ରଲିପ୍ତି ଦେଇ ସେଠାରୁ କଳିଙ୍ଗର ଉପକୂଳ ଅଞ୍ଚଳରେ ପ୍ରବାହିତ ବହୁ ନଦୀ ନାଳ ଅତିକ୍ରମ ପୂର୍ବକ ବିରଜା କ୍ଷେତ୍ର ନିକଟରେ ପୂର୍ବୋକ୍ତ ପଥକୁ ସଂଯୁକ୍ତ କରୁଥିଲା । ଉପକୂଳରେ ଅନୁସୃତ ଉକ୍ତ ମାର୍ଗର ପ୍ରାଚୀନତା ଓ ଗୁରୁତ୍ୱ ସଂସ୍କୃତ ମହାଭାରତ ମହାକବି କାଳିଦାସ କୃତ 'ରଘୁବଂଶ ମହାକାବ୍ୟ' ଓ ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତ ଦ୍ୱାରା ସମର୍ଥିତ ହୁଏ ।

ମହାଭାରତ ବନପର୍ବରେ ବର୍ଣ୍ଣିତ ହୋଇଛି ଯେ, ଧର୍ମରାଜ ଯୁଧିଷ୍ଠିର ଗଙ୍ଗାସାଗର ସଙ୍ଗମ ଠାରୁ କଳିଙ୍ଗ ଦେଶକୁ ଆସି ବୈତରଣୀ ନଦୀ ତୀରସ୍ଥ ଯଜ୍ଞଭୂମି ବିରଜା କ୍ଷେତ୍ର, (ଯାଜପୁର) ଶାମ୍ଭବ ବନ (ଭୁବନେଶ୍ୱର) ସମୁଦ୍ର ତୀରବର୍ତ୍ତୀ ତୀର୍ଥ କ୍ଷେତ୍ର (ପୁରୀ) ଓ ମହେନ୍ଦ୍ରାଚଳ ଶିଖରରେ ଅବସ୍ଥିତ ତୀର୍ଥ ପରିଦର୍ଶନ କରିଥିଲେ । ସୂର୍ଯ୍ୟବଂଶୀୟ ମହାବୀର ରଘୁ ଦିଗ୍‌ବିଜୟ ସମୟରେ ହସ୍ତୀସେନା ସାହାଯ୍ୟରେ 'କପିଶା' ନଦୀ (ମେଦିନୀପୁର ଜିଲାର କଂସାଇ ନଦୀ) ପାରହୋଇ ଉତ୍କଳ ଦେଶରେ ପ୍ରବେଶ କରିଥିଲେ । ଉତ୍କଳ ଜୟ ପରେ ସେ କଳିଙ୍ଗକୁ ଯୁଦ୍ଧଯାତ୍ରା କରି ମହେନ୍ଦ୍ରାଚଳ ଶିଖରରେ ନିଜର ଆଧିପତ୍ୟ ପ୍ରତିଷ୍ଠା

(୭) ଏହି ମାର୍ଗ ସମ୍ବନ୍ଧରେ ପ୍ରଥମ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

କରିଥିଲେ । (୮) ଚୀନ୍ ପରିବ୍ରାଜକ ହୁଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ ଯେ, ସେ ତାମ୍ରଲିପ୍ତି ଠାରୁ ଉଡ୍ରରାଜ୍ୟ, କୋଙ୍ଗୋଦମଣ୍ଡଳ ଅତିକ୍ରମ ପୂର୍ବକ କଳିଙ୍ଗାଭିମୁଖରେ ଯାତ୍ରା କରିଥିଲେ ।

ଉକ୍ତ ପଥରେ ଦାମୋଦର, ରୂପନାରାୟଣ, କପିଶା, ସୁବର୍ଣ୍ଣ-ରେଖା, ବଳାଙ୍ଗୀ, ସାଳନ୍ଦୀ, ବୈତରଣୀ, ବ୍ରାହ୍ମଣୀ, ମହାନଦୀ, କାଠଯୋଡ଼ି, ଭର୍ଗବୀ, ଦୟା ପ୍ରଭୃତି କ୍ଷୁଦ୍ର ବୃହତ୍ ବହୁ ନଦୀ ଓ ଶତ ଶତ ନିର୍ଝରିଣୀ ଥିବାରୁ ବିରାଟ ସେନାକୁ ଚାଳନ ପାଇଁ ଆବଶ୍ୟକ ଜଳ ଯୋଗାଣ ସହଜ ଓ ସୁବିଧାଜନକ ଥିଲା ।

ଅଶୋକ କଳିଙ୍ଗ ବିଜୟ ପରେ ଘୋର ଅନୁତାପାନଳରେ ଦଗ୍ଧ ହୋଇ 'ଧର୍ମବିଜୟ' ବା ବୌଦ୍ଧଧର୍ମ ପ୍ରଚାରରେ ନିଜର ସମସ୍ତ ଶକ୍ତି, ସମ୍ବଳ ଓ ସମୟ ବିନିଯୋଗ କରିଥିବା ତାଙ୍କର ତ୍ରୟୋଦଶ ଅନୁଶାସନରେ ବର୍ଣ୍ଣିତ ହୋଇଛି । ଏହି ଧର୍ମବିଜୟକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେ ଉକ୍ତ ଦିଗ୍‌ବିଜୟ ପଥରେ ତାମ୍ରଲିପ୍ତିରେ ଏକ ସ୍ତମ୍ଭ ପ୍ରୋଥିତ କରିଥିବା ଏବଂ ଉଡ୍ର ଓ କଳିଙ୍ଗରେ ବହୁ ସ୍ତୂପ ନିର୍ମାଣ କରିଥିବା ହୁଏନ୍‌ସାଂଙ୍କ ଉତ୍କଳ ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ । (୯)

---

(୮) ସତୀର୍ତ୍ତ୍ୱା କପିଶାଂ ସୈନ୍ୟୈର୍ବଦ୍ଧଦ୍ୱିରଦସେତୁଭିଃ
ଉତ୍କଳାଦର୍ଶିତପଥଃ କଳିଙ୍ଗାଭିମୁଖୋ ଯଯୌ ।
ସଃ ତାପଂ ମହେନ୍ଦ୍ରସ୍ୟ ମୂର୍ଦ୍ଧ୍ନି ତୀକ୍ଷ୍ଣଂ ନ୍ୟବେଶୟତ୍
ଅଙ୍କୁଶଂ ଦ୍ୱିରଦସ୍ୟେବ ଯନ୍ତା ଗମ୍ଭୀରବେଦିନଃ ।
(ରଘୁବଂଶ, ଚତୁର୍ଥ ସର୍ଗ)

(୯) (କ) U-Cha (Udra) × ~ The Stupas, to the number of ten or so point out the spot where Buddha preached. *They were also founded by Asoka Rāja.*

(ଖ) Kie-ling-kia (Kalinga) × × × Not far from the south of the capital, there is a Stupa about a hundred feet high, *this was built by Asoka Rāja. Watter's Hieun-Tsang.*

ବହୁ ବୌଦ୍ଧସ୍ତୂପ ଶୋଭିତ ଏହି ଧର୍ମବିଜୟ ମାର୍ଗ କଳିଙ୍ଗ ଯୁଦ୍ଧରେ ଯୁଦ୍ଧଯାତ୍ରାର ପଥ ରୂପେ ସର୍ବଥା ଗ୍ରହଣୀୟ ।

**ଶେଷ ଯୁଦ୍ଧ —** ଉପକୂଳବର୍ତ୍ତୀ ମାର୍ଗରେ ବିରାଟ ମଗଧ ବାହିନୀ ଅଗ୍ରସର ହେଉଥିବା ସମୟରେ ସୁସଂଗଠିତ, ବୀର ଓ ସାହସୀ କଳିଙ୍ଗ ସେନା ଠାରୁ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ମଧ୍ୟେ ମଧ୍ୟେ ପ୍ରବଳ ଖଣ୍ଡଯୁଦ୍ଧ ହୋଇ ରକ୍ତର ସ୍ରୋତ ବହିଗଲା । ଯୁଦ୍ଧରତ କୌଣସି ରାଜ୍ୟକୁ ସମ୍ପୂର୍ଣ୍ଣ ରୂପେ ଆୟତ୍ତ କରିବା ପାଇଁ ତାହାର ରାଜଧାନୀକୁ ଅଧିକାର କରିବା ଏକ ଚିରାଚରିତ ପ୍ରଥା । ସେହି ଚିରନ୍ତନ ନୀତିକୁ ଅନୁସରଣ କରି ଅଶୋକଙ୍କ ନେତୃତ୍ୱରେ ପରିଚାଳିତ ବିରାଟ ମଗଧ ସେନା କଳିଙ୍ଗ ରାଷ୍ଟ୍ରର ରାଜଧାନୀ ତୋଷଳୀ ଅଧିକାର ନିମିତ୍ତ ପ୍ରବଳ ଆକ୍ରମଣ ଚଳାଇଥିଲେ । ତୋଷଳୀର ପଶ୍ଚିମ ଭାଗରେ ଅବସ୍ଥିତ ବିସ୍ତୀର୍ଣ୍ଣ ସମତଳ ଧାଙ୍ଗର ଭୂମିରେ (ଖ୍ରମ ଧାଙ୍ଗୀ ଓ (ବରଗଡ଼ ଧାଙ୍ଗୀ)ରେ କଳିଙ୍ଗବାହିନୀ ସମରାଙ୍ଗନରେ ଶେଷ ଜୀବନାହୁତି ପ୍ରଦାନ କରିଥିଲେ ।

କଳିଙ୍ଗର ବୀର ସୈନିକଗଣ 'ସ୍ୱର୍ଗାଦପି ଗରୀୟସୀ' ଜନନୀ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ପାଇଁ ନିଜର ଧନ ଜୀବନ ପ୍ରତି ସମସ୍ତ ମାୟା ମମତା ତ୍ୟାଗକରି ସିଂହବିକ୍ରମରେ ଶତ୍ରୁମାନଙ୍କ ଉପରେ ଝାମ୍ପ ପ୍ରଦାନ କରିଥିଲେ । କିନ୍ତୁ ବିରାଟ ମୌର୍ଯ୍ୟ ସାମ୍ରାଜ୍ୟର ବିଶାଳ ଚତୁରଙ୍ଗ ବଳ ସହିତ ମହୋଦଧି ତୀରବର୍ତ୍ତୀ ଏକମାତ୍ର କଳିଙ୍ଗ ରାଷ୍ଟ୍ରର ସୈନ୍ୟମାନେ ଯୁଦ୍ଧରେ ପ୍ରବୃତ୍ତ ହୋଇଥିବାରୁ ବିଜୟର ଆଶା କ୍ରମଶଃ କ୍ଷୀଣ ହୋଇଆସିଲା । କଳିଙ୍ଗରାଜ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କ ଠାରୁ କୌଣସି ପ୍ରକାର ସାହାଯ୍ୟ ପାଇ ନ ଥିଲେ । ପରନ୍ତୁ କଳିଙ୍ଗର ଚତୁଃପାର୍ଶ୍ୱବର୍ତ୍ତୀ ଭୂଖଣ୍ଡର ସାମନ୍ତ ରାଜାମାନେ ଅଶୋକଙ୍କୁ ସୈନ୍ୟସାମନ୍ତ, ଅସ୍ତ୍ରଶସ୍ତ୍ର ଖାଦ୍ୟପଦାର୍ଥ ପ୍ରଭୃତି ବହୁ ପରିମାଣରେ ସାହାଯ୍ୟ ଦେଇଥିଲେ । ପରିଣାମରେ ପ୍ରାଣମୂର୍ଚ୍ଛା ତୁମୁଳ ସଂଗ୍ରାମ ଚଳାଇ ମଧ୍ୟ କଳିଙ୍ଗ ସେନା ଶେଷରେ ପରାଜିତ ହେଲା । ଏହି ଯୁଦ୍ଧରେ ଏକଲକ୍ଷ ସୈନ୍ୟ ମୃତ,

ଦେଢ଼ଲକ୍ଷ ସୈନ୍ୟ କାରାବନ୍ଧ ଓ ଏହାର ବହୁଗୁଣ ଲୋକ ଆହତ ଓ କ୍ଷତିଗ୍ରସ୍ତ ହୋଇଥିବାରୁ ଏହାର ଭୟାବହତା ସହଜରେ ଅନୁମେୟ । ସମଗ୍ର ପୃଥିବୀ ଇତିହାସରେ ଏପରି ଭୀଷଣ ଲୋକସଂହାରକାରୀ ଯୁଦ୍ଧ ଖୁବ ଅଳ୍ପ ଘଟିଥିବାର ଜଣାଯାଏ । ଏହି ଦୃଷ୍ଟିରୁ ବିଚାର କଲେ କଳିଙ୍ଗ ଯୁଦ୍ଧର ଶେଷାଞ୍ଜଳର ଭୟାବହତା ବର୍ଣ୍ଣନା କରିଥିବା ଅଶୋକଙ୍କ ତ୍ରୟୋଦଶ ଅନୁଶାସନଟି । ଏହା ସ୍ୱାଧୀନତାପ୍ରେମୀ କଳିଙ୍ଗ-ବାସୀଙ୍କ ଗୌରବୋଜ୍ଜ୍ୱଳ ଇତିହାସର ଏକ ଛିନ୍ନପତ୍ର ରୂପେ ଗ୍ରହଣୀୟ ।

ଏହି ଯୁଦ୍ଧରେ ଏତେ ସଂଖ୍ୟାରେ କଳିଙ୍ଗ ସୈନ୍ୟ ମୃତ, ଆହତ ବା ବନ୍ଦୀ ହେଲେ ମଧ୍ୟ ଅଶୋକ କେବଳ କଳିଙ୍ଗର ଉପକୂଳବର୍ତ୍ତୀ ଭୂଭାଗରେ ନିଜର ପୂର୍ଣ୍ଣ ଆଧିପତ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇ-ଥିଲେ । ଘନ ଅରଣ୍ୟାନୀ ଓ ଦୁର୍ଗମ ପର୍ବତମାଳା ଆଚ୍ଛାଦିତ ଏହାର ସୀମାନ୍ତ ଅଞ୍ଚଳର ଅଧିବାସୀମାନେ ସର୍ବଦା ବିଦ୍ରୋହ ଆଚରଣ କରୁ-ଥିଲେ । ତେଣୁ ଧଉଳୀରେ ଥିବା ଦ୍ୱିତୀୟ କଳିଙ୍ଗ ଅନୁଶାସନରେ ଅଶୋକ ଅବିଜିତ ଉପାନ୍ତବାସୀ ବିଦ୍ରୋହୀ ଲୋକମାନଙ୍କୁ କ୍ଷମା ଦେବାପାଇଁ ସର୍ବଦା ତତ୍ପର ହେବା ଘୋଷଣା କରିଥିଲେ ।

## କଳିଙ୍ଗ ଯୁଦ୍ଧ ଓ ବୌଦ୍ଧଧର୍ମ—

କଳିଙ୍ଗ ଯୁଦ୍ଧ ପୂର୍ବରୁ ଅଶୋକ ଜଣେ ଉପାସକ ବୌଦ୍ଧ ବା ଗୃହୀ ବୌଦ୍ଧ ଥିଲେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମକୁ ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରି ନ ଥିଲେ । ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ ସତ, କିନ୍ତୁ ତାଙ୍କର ବୌଦ୍ଧଧର୍ମ ପ୍ରୀତି କ୍ଷୁଦ୍ର ସୀମାବଦ୍ଧ ଥିଲା । ସେ ତାକୁ ସମ୍ପୂର୍ଣ୍ଣ ରୂପେ ଗ୍ରହଣ କରିବାକୁ ସ୍ଥିର କରି ନ ଥିଲେ । କିନ୍ତୁ କଳିଙ୍ଗ ଯୁଦ୍ଧରେ ସଂଘଟିତ ଭୟାବହ ନରହତ୍ୟା ଓ ଧ୍ୱଂସଲୀଳା ସ୍ୱଚକ୍ଷୁରେ ଦେଖି ତାଙ୍କ ହୃଦୟ ଅନୁତାପାନଳରେ ଦଗ୍ଧ ହୋଇଥିଲା । "ହିଂସା ପ୍ରଣୋଦିତ ତରବାରିର ଜୟ, ଜୟ ନୁହେଁ" ଏହି ମହାବାକ୍ୟର ତାତ୍ପର୍ଯ୍ୟ ସେ ସମ୍ୟକ୍ ରୂପେ ହୃଦୟଙ୍ଗମ କରିପାରିଥିଲେ । ତେଣୁ ସ୍ୱକୃତ ପାପର ପ୍ରାୟଶ୍ଚିତ

ସ୍ୱରୂପ ସେ 'ଧର୍ମବିଜୟ'କୁ ଜୀବନର ପ୍ରଧାନ ବ୍ରତ ରୂପେ ଗ୍ରହଣ କରିଥିଲେ । ଅନୁତାପ ମାନବ ଜୀବନରେ କିପରି ଅଦ୍ଭୁତ ପରିବର୍ତ୍ତନ ଆଣିପାରେ ତାହା ତାଙ୍କର 'ତ୍ରୟୋଦଶ ଅନୁଶାସନ'ରେ ପରିସ୍ଫୁଟ ହୋଇଅଛି । ତାଙ୍କର ଅନ୍ତରର ବେଦନା ତାଙ୍କ ନିଜ ଭାଷାରେ କିପରି ଆତ୍ମପ୍ରକାଶ କରିଛି ତାହା ନିମ୍ନରେ ଉଦ୍ଧାର କରାଗଲା —

“କଳିଙ୍ଗ ବିଜୟୀ ପ୍ରିୟଦର୍ଶୀ ରାଜା ବର୍ତ୍ତମାନ ଘୋର ଅନୁତାପ କରୁଛନ୍ତି । ବିଜିତ ହେଲେମଧ୍ୟ ସହସ୍ର ସହସ୍ର ଲୋକଙ୍କ ବଧ, ମରଣ ଓ ଅପବାହ (ସ୍ଥାନାନ୍ତର) ଯୋଗୁଁ ସେ କଳିଙ୍ଗକୁ ଅବିଜିତ ବୋଲି ମନେକରନ୍ତି । ଦେବପ୍ରିୟ ଏପରି ନୃଶଂସ ହତ୍ୟାକାଣ୍ଡ ଯୋଗୁଁ ଘୋର ମନସ୍ତାପ ଭୋଗ କରୁଛନ୍ତି ।”

× × × “ଏହି ଯୁଦ୍ଧରେ ବହୁ ଧର୍ମପ୍ରାଣ ନିରୀହ ଲୋକ ବିପଦଗ୍ରସ୍ତ ହୋଇଥିବେ । ଆଉ ଯୁଦ୍ଧରେ ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କର ମିତ୍ର, ସହାୟ ଓ ଜ୍ଞାତିମାନେ ସେମାନଙ୍କ ପ୍ରତି ପ୍ରଗାଢ଼ ସ୍ନେହ ହେତୁରୁ ସେମାନଙ୍କ ମନରେ ମର୍ମାନ୍ତକ ବେଦନା ଅନୁଭବ କରୁଥିବେ । ଏପରି ମନୁଷ୍ୟ ଭାଗ୍ୟରେ ଘଟିଥାଏ । କିନ୍ତୁ ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଏହାକୁ ଅତ୍ୟନ୍ତ ଗୁରୁତର ବୋଲି ମନେକରୁଛନ୍ତି ।”

× × × “କଳିଙ୍ଗ ଯୁଦ୍ଧରେ ଯେତେ ଲୋକ ଆହତ, ମୃତ ଓ ଦେଶାନ୍ତରିତ ହୋଇଥିଲେ, ତାହାର ଏକଶତାଂଶ ବା ଏକ ସହସ୍ରାଂଶ ଲୋକଙ୍କର ଏବଂବିଧ ଦୁର୍ଦ୍ଦଶା ଘଟିଲେ ଦେବପ୍ରିୟ ପ୍ରିୟଦର୍ଶୀ ମର୍ମାନ୍ତକ ବେଦନା ଅନୁଭବ କରିବେ ।”

“ସର୍ବତ୍ର ଏପରି ଧର୍ମବିଜୟ ଲାଭକରି ସେ ଗଭୀର ଆତ୍ମପ୍ରସାଦ ଲାଭ କରୁଛନ୍ତି । ପ୍ରୀତିବର୍ଦ୍ଧକ ଧର୍ମବିଜୟରେ ତାଙ୍କର ପ୍ରଗାଢ଼ ଅନୁରାଗ ଜାତ ହୋଇଅଛି । କିନ୍ତୁ ପ୍ରୀତିଲାଭ ଅତି ସାମାନ୍ୟ କଥା । ସମସ୍ତଙ୍କ ପାରତ୍ରିକ ସୁଖଭୋଗକୁ ସେ ଅଧିକ ମୂଲ୍ୟବାନ ବୋଲି ମନେକରନ୍ତି । ମୋର ପୁତ୍ରପୌତ୍ରମାନଙ୍କ ଅବଗତି ନିମିତ୍ତ ମୋର କଳିଙ୍ଗ ବିଜୟ ବୃତ୍ତାନ୍ତ

ଲିପିବଦ୍ଧ ହୋଇଅଛି । (ସେମାନେ ବୁଝନ୍ତୁ) ଶସ୍ତକର୍ଷଣ ନରହତ୍ୟା) ଦ୍ୱାରା ଯେଉଁ ବିଜୟଲାଭ ହୁଏ, ତାହା ଅତି ନିର୍ଘଣ୍ୟ । ସେଥିରେ ଆମ୍ଭର ଶାନ୍ତିବିଧାନ ହୁଏ ନାହିଁ । କ୍ଷମା ଓ ଲଘୁଦଣ୍ଡତାଯୁକ୍ତ ଧର୍ମ-ବିଜୟକୁ ସେ ଜଗତର ଶ୍ରେଷ୍ଠ ବସ୍ତୁ ବୋଲି ମନେକରନ୍ତୁ । ଏହିବିଧ ଧର୍ମବିଜୟ ଇହ ଓ ପରଲୋକରେ ସୁଖ ପ୍ରଦାନ କରେ । ଧର୍ମବିଜୟ ପାଇଁ ସମସ୍ତ ଉଦ୍ୟମ ଓ ଶକ୍ତି ନିୟୋଜିତ ହେଉ ।" (୧୦)

ଉପରେ ଉଦ୍ଧୃତ ତାଙ୍କ ପ୍ରାଣର ଭାଷାକୁ ଆଲୋଚନା କଲେ ଜଣାଯାଏ ଯେ, କଳିଙ୍ଗ ଯୁଦ୍ଧର ଘୋର ବିଭିଷିକାର ଚିତ୍ର ଅଶୋକଙ୍କ ହୃଦୟକୁ ସର୍ବଦା ଆଲୋଡ଼ିତ କରୁଥିଲା । ସ୍ୱକୃତ ପାପର କ୍ଷାଳନ ନିମିତ୍ତ ସେ ସମଗ୍ର ବିଶ୍ୱକୁ ଅନନ୍ତ ପ୍ରେମରେ ଆଲିଙ୍ଗନ କରିବାକୁ ବ୍ୟାକୁଳ ହେଲେ । ସାର୍ବଜନୀନ ମୈତ୍ରୀବ୍ରତ, ସାର୍ବଭୌମ ପ୍ରେମପ୍ରବାହ ତାଙ୍କ ହୃଦୟର ନିଭୃତ କୋଣରୁ ନିର୍ଗତ ହୋଇ ସମଗ୍ର ଜୀବଜଗତକୁ ପ୍ଲାବିତ କଲା । ଆତ୍ମଶୁଦ୍ଧି ନିମିତ୍ତ ସେ ବହୁ ଧନ, ଜନ ଓ ନିଜର ସମସ୍ତ ଶକ୍ତି ବିନିଯୋଗ କରି ପଶ୍ଚିମରେ ମିଶର ଠାରୁ ପୂର୍ବରେ ବ୍ରହ୍ମଦେଶ ପର୍ଯ୍ୟନ୍ତ ଓ ଉତ୍ତରରେ ହିମାଳୟ ଠାରୁ ଦକ୍ଷିଣରେ କୁମାରିକା ପର୍ଯ୍ୟନ୍ତ ବିସ୍ତୃତ ଏହି ବିପୁଳା ପୃଥିବୀରେ ମହାମାନବ ଗୌତମ ବୁଦ୍ଧଙ୍କ ମହାବାଣୀ ପ୍ରଚାର କରାଇଥିଲେ । ପୃଥିବୀ ପୃଷ୍ଠରେ ଶତ ଶତ ବୌଦ୍ଧବିହାର, ସ୍ତମ୍ଭ ଓ ସ୍ତୂପ ଉତ୍ତୋଳିତ ହେଲା । ସହସ୍ର ସହସ୍ର ବୌଦ୍ଧ ଭିକ୍ଷୁ ଓ ଶ୍ରମଣ ଅଶୋକଙ୍କ ଅନ୍ତରର ବାଣୀକୁ ସମଗ୍ର ଦେଶରେ ପ୍ରଚାର କରିଥିଲେ । କେବଳ ମାନବ ସମାଜରେ ନୁହେଁ, ଜୀବଜଗତ ଓ ଉଦ୍ଭିଦ ଜଗତରେ ମଧ୍ୟ ଶାନ୍ତିସ୍ଥାପନ ପାଇଁ ଅଶୋକ ସର୍ବଦା ବ୍ୟାକୁଳ ହୋଇପଡ଼ିଥିଲେ ।

କଳିଙ୍ଗବାସୀଗଣ ନିଜର ପ୍ରିୟ ସ୍ୱାତନ୍ତ୍ର୍ୟ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ପାଇଁ ଅଶୋକଙ୍କ ସହିତ ଯେଉଁ ଭୂମୁଳ ସଂଗ୍ରାମ କରିଥିଲେ,

---

(୧୦) ପାଲିଭାଷାରେ ଲିଖିତ ମୂଳର ଓଡ଼ିଆ ଅନୁବାଦ ।

ତାହାର ଫଳ ସ୍ୱରୂପ ପୃଥିବୀରେ କିଛିକାଳ ପାଇଁ ଶାନ୍ତିମନ୍ତ୍ରପୂତ ଅହିଂସା ଧର୍ମ, ସାର୍ବଜନୀନ ମୈତ୍ରୀ ଓ ଜୀବେ ଦୟା ପ୍ରତିଷ୍ଠିତ ହୋଇଥିଲା । କଳିଙ୍ଗ ଯୁଦ୍ଧ ଯୋଗୁଁ ପୃଥିବୀ ଇତିହାସରେ ଏକ ନୂତନ ଅଧ୍ୟାୟ ଖୋଲିଗଲା । କଳିଙ୍ଗର ଦାନ ଅତି ଉଦାର ଓ ଅତି ମହତ୍ । ସହସ୍ର ସହସ୍ର ଦେଶପ୍ରାଣ କଳିଙ୍ଗ ବୀରଙ୍କ ସମାଧି ଉପରେ ବିରାଟ ବୌଦ୍ଧଧର୍ମର ସୌଧ ନିର୍ମିତ ହୋଇଥିଲା ।



# ତୃତୀୟ ଅଧ୍ୟାୟ

## ତୋଷଲୀର ପ୍ରାଚୀନ ବୌଦ୍ଧକୀର୍ତ୍ତି

ପୂର୍ବଘାଟ ପର୍ବତମାଳା ଠାରୁ ବିଚ୍ଛିନ୍ନ ଓ ଚତୁର୍ଦ୍ଦିଗରେ ସୁଜଳା, ସୁଫଳା ଓ ଶସ୍ୟଶ୍ୟାମଳା ସମତଳ ଭୂମି ଦ୍ୱାରା ବେଷ୍ଟିତ ଧଉଳୀ ପାହାଡ଼-ଶ୍ରେଣୀ ତିନିଗୋଟି ପାହାଡ଼କୁ ନେଇ ଗଠିତ । ଏଥିମଧ୍ୟରୁ ଦୟାନଦୀର ଦକ୍ଷିଣ କୂଳରେ ଦଣ୍ଡାୟମାନ ପାହାଡ଼ଟି ଅତି ଦୀର୍ଘ ଓ ସର୍ବୋଚ୍ଚ । ଏହାର ପୂର୍ବପାଖରେ ଥିବା ଉଚ୍ଚତମ ଶୃଙ୍ଗଟି ଭୂମି ପତନ ଠାରୁ ପ୍ରାୟ ୨୫୦ ଫୁଟ ଉଚ୍ଚ । ବର୍ତ୍ତମାନ ଏହି ଶୃଙ୍ଗ ଉପରେ ଭଗ୍ନଦଶାପନ୍ନ ଓ ଅଧୁନା ପୁନଃନିର୍ମିତ ଧବଳେଶ୍ୱର ମନ୍ଦିର ବିରାଜିତ । ଦୟାନଦୀକୁ ସ୍ପର୍ଶ କରୁଥିବା ଏହାର ପଶ୍ଚିମ ନାସୀରେ ବଜ୍ରଙ୍ଗେଶ୍ୱର ଓ ସିଦ୍ଧ ଗଣେଶଙ୍କ ମନ୍ଦିର ଦ୍ୱୟ ବିଦ୍ୟମାନ । ଏହି ଉଚ୍ଚତମ ପାହାଡ଼ର ଦକ୍ଷିଣକୁ ଅଳ୍ପ ଦୂରରେ ଥିବା ମଧ୍ୟବର୍ତ୍ତୀ ପାହାଡ଼ର ପଶ୍ଚିମକୁ ପ୍ରାଚୀନ ସଙ୍କଟେଶ୍ୱର (ପୁନର୍ଗଠିତ) ଶିବମନ୍ଦିର ପରିଦୃଷ୍ଟ ହୁଏ । ଏହିଠାରୁ ବିଚ୍ଛିନ୍ନ ଦକ୍ଷିଣ ସୀମାବର୍ତ୍ତୀ ଅନୁଚ୍ଚ ପାହାଡ଼ଟି 'ଅଶ୍ୱତ୍ଥାମା' ପାହାଡ଼ ନାମରେ ପରିଚିତ । ଏଥିରେ ଅଶୋକ ଯୁଗର ହସ୍ତୀ ବିଦ୍ୟମାନ ।

ଦେବପ୍ରିୟ ପ୍ରିୟଦର୍ଶୀଙ୍କ ରାଜତ୍ୱ କାଳରେ କଳିଙ୍ଗ ରାଜ୍ୟର ରାଜଧାନୀ ତୋଷଳୀକୁ ବୌଦ୍ଧଧର୍ମ ପ୍ରଚାରର ଏକ ପ୍ରଧାନ କେନ୍ଦ୍ରରେ ପରିଣତ କରିବା ପାଇଁ ଏହି ତିନୋଟି ପାହାଡ଼ରେ କେତେକ ସ୍ତୂପ ଓ ଚୈତ୍ୟ ନିର୍ମିତ, ସ୍ତମ୍ଭ ପ୍ରୋଥିତ ଓ ବହୁ କ୍ଷୁଦ୍ର କ୍ଷୁଦ୍ର ଗୁମ୍ଫା ଖୋଦିତ ହୋଇଥିଲା । ଜଣେ ବା ଦୁଇଜଣଙ୍କ ବାସୋପଯୋଗୀ ଏପରି ଶ୍ରେଷ୍ଠ ଶ୍ରେଷ୍ଠ ଗୁମ୍ଫା ମଗଧ ବା ଆଧୁନିକ ବିହାର ରାଜ୍ୟର 'ନାଗାର୍ଜୁନ' ଓ 'ବୋରବଗିରି' ପ୍ରଭୃତି ପର୍ବତ ଗାତରେ ବୌଦ୍ଧସମ୍ରାଟ୍ ଅଶୋକଙ୍କ ଦ୍ୱାରା 'ଆଜୀବକ' ନାମକ ସନ୍ନ୍ୟାସୀମାନଙ୍କ ନିବାସ ନିମିତ୍ତ ଖୋଦିତ

ହୋଇଥିବାର ଲେଖଗତ ପ୍ରମାଣ ମିଳେ । ସେହି ସୂତ୍ରକୁ ଅନୁସରଣ କରି ଅଶୋକ ଏଠାରେ ଛୋଟ ଛୋଟ ଗୁମ୍ଫା ଖୋଳାଇଥିଲେ । ଅଶ୍ବତ୍ଥାମା ପାହାଡ଼ରେ ଖୋଦିତ ଏକ ହସ୍ତୀର ନିମ୍ନଭାଗରେ ପ୍ରଜାବର୍ଗଙ୍କ ମଧ୍ୟରେ ବୌଦ୍ଧଧର୍ମର ପ୍ରଚାର ପାଇଁ 'ଦେବପ୍ରିୟ' 'ପ୍ରିୟଦର୍ଶୀ'ଙ୍କ ଧର୍ମାନୁଶାସନ ସମୂହ ପାଲି ଭାଷାରେ ସେ ଯୁଗରେ ପ୍ରଚଳିତ ବ୍ରାହ୍ମୀ ବର୍ଣ୍ଣମାଳାରେ ଲିପିବଦ୍ଧ ହୋଇଥିଲା ।

**ଅଶୋକ ଯୁଗର ହସ୍ତୀମୂର୍ତ୍ତି—** ଅଶୋକଙ୍କ ଦ୍ୱାରା ନିର୍ମିତ ପ୍ରାଚୀନ କୀର୍ତ୍ତିସମୂହ ମଧ୍ୟରୁ ହସ୍ତୀ ମୂର୍ତ୍ତିର ସମ୍ମୁଖ ଭାଗ ଏବଂ ଜଗନ୍ନାଥ ଭଟ୍, ଉର୍ଦ୍ଧଭଟ୍ଟ ବା ଲେପୋନ୍ମୁଖ ଅବସ୍ଥାରେ ଥିବା କେତେକ କ୍ଷୁଦ୍ର ଗୁମ୍ଫା ଅଦ୍ୟାପି ବିଦ୍ୟମାନ । ଅନ୍ୟଗୁଡ଼ିକ ବିଗତ ବହୁ ଶତାବ୍ଦୀ ମଧ୍ୟରେ ପ୍ରକୃତିର ସର୍ବଧ୍ୱଂସୀ ଶକ୍ତିର ପ୍ରଭାବରେ ଓ ମନୁଷ୍ୟର ନିଷ୍ଠୁର ହସ୍ତକ୍ଷେପ ଫଳରେ ସମ୍ପୂର୍ଣ୍ଣ ରୂପେ ଲୋପ ପାଇଅଛି । ପ୍ରବହମାନ କାଳସ୍ରୋତର ପ୍ରବଳ ପ୍ଲାବନ ସତ୍ତ୍ୱେ ନିଜର ଅସ୍ତିତ୍ୱକୁ ରକ୍ଷା କରିଥିବା କୀର୍ତ୍ତିସମୂହ ମଧ୍ୟରେ ବୃହତ୍ପୃଷ୍ଠ ଉଚ୍ଚତା ବିଶିଷ୍ଟ ହସ୍ତୀମୂର୍ତ୍ତିର ସମ୍ମୁଖ ଭାଗ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ । ଉକ୍ତ ହସ୍ତୀର ଅବୟବ ଅଶୋକ ଯୁଗର ଅଧିକାଂଶ ମୂର୍ତ୍ତି ପରି ଚିକ୍କଣ ଓ ସ୍ୱଚ୍ଛ ନ ହେଲେ ମଧ୍ୟ ଏହା ଅତ୍ୟନ୍ତ ଜୀବନ୍ତ ଏବଂ ଏହାର ମୁଖମଣ୍ଡଳ ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ ଓ କରୁଣାଦ୍ୟୋତକ ।

ପାହାଡ଼ ଦେହରୁ କଟାଯାଇଥିବା ୧୭ ଫୁଟ ଲମ୍ବ ଓ ୧୪ ଫୁଟ ଓସାର ଏକ ସ୍ଥାନ ଉପରେ ହସ୍ତୀଟି ଦଣ୍ଡାୟମାନ । ଏହି ସ୍ଥାନର ପୂର୍ବ ଓ ପଶ୍ଚିମ ଧାରରେ ଏବଂ ଉତ୍ତର ପାଖ ଧାରରେ କବାଟ ପାଇଁ ୩ ଫୁଟ ଜାଗା ଛାଡ଼ି ଚାରି ଇଞ୍ଚ ଓସାର ଓ ଦୁଇ ଇଞ୍ଚ ଗଭୀରରେ ଗୋଟିଏ ଖିଲ (Groove) ଖୋଳାଯାଇଅଛି । ଉତ୍ତର ପାଖ କାନ୍ଥରେ ହାତର ଦୁଇ ପାଖରେ ଏବଂ ହାତ ଥିବା ଜାଗାକୁ ଛାଡ଼ି ସ୍ଥାନ ଦେହରେ ଏପରି ଖିଲ ଥିଲା । ସୂର୍ଯ୍ୟତାପ ଓ ବର୍ଷାମାଡ଼ରୁ ପୂଜାପ୍ରାପ୍ତ ହସ୍ତୀକୁ ରକ୍ଷା କରିବା ପାଇଁ ମୋଟା ପଥରରେ ତିଆରି ଏକ ଦ୍ୱାରବିଶିଷ୍ଟ ଗୋଟିଏ ଘର ତିଆରି ହୋଇଥିଲା । କିନ୍ତୁ କାଳକ୍ରମେ ଏହି କାଷ୍ଠ ନିର୍ମିତ ଗୃହ ଲୁପ୍ତ ହୋଇ

ଯାଇଛି । ଗୁଡ଼ର ନିମ୍ନଭାଗରେ ପଥର କାଟିଯାଇ ୧୫ ଫୁଟ ଲମ୍ବ ଓ ୧୦ ଫୁଟ ଉଚ୍ଚ ଶୈଳଖଣ୍ଡକୁ ସମତଳ କରାଯାଇଥିଲା । ଏହାକୁ ଗୁଡ଼େଇଟି କ୍ଷେତ୍ରରେ ବିଭକ୍ତ କରାଯାଇ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଅନୁଶାସନ ସମୂହ ସେ ଯୁଗରେ ପ୍ରଚଳିତ ବ୍ରାହ୍ମୀମାନାରେ ଗଭୀର ଭାବରେ ଅତି ଯତ୍ନ ସହକାରେ ଖୋଦିତ ହୋଇଥିଲା । ତେଣୁ ପ୍ରାୟ ୨୨୦୦ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ସେଥିମଧ୍ୟରୁ ଅଧିକାଂଶ ଅକ୍ଷୁର୍ଣ୍ଣ ରହିଛି ।

ବୌଦ୍ଧ ସାହିତ୍ୟରେ ଶ୍ୱେତହସ୍ତୀର ମାହାତ୍ମ୍ୟ କୀର୍ତ୍ତିତ ହୋଇଥିବାରୁ ଧଉଳୀ ପାହାଡ଼ରେ ଏହି ହସ୍ତୀମୂର୍ତ୍ତି ଖୋଦିତ ହୋଇଥିଲା । ବୌଦ୍ଧ-ଶାସ୍ତ୍ରର ଏହି ନିର୍ଦ୍ଦେଶ ଅନୁଯାୟୀ ଉତ୍ତର ପ୍ରଦେଶରେ କଲସୀ ନାମକ ପର୍ବତ ଗାତ୍ରରେ ଅଶୋକଙ୍କ ଚତୁର୍ଦ୍ଦଶ ଅନୁଶାସନ ଉପରେ ସଗର୍ବରେ ଗମନ କରୁଥିବା ଏକ ହସ୍ତୀର ଚିତ୍ର ଅଙ୍କିତ ହୋଇଥିବାର ଦେଖାଯାଏ । ବୁଦ୍ଧଦେବ ନିଜେ 'ଗଜାତ୍ମ' ରୂପେ ଖ୍ୟାତ ହୋଇଥିବାରୁ ଏହାର ବୁଦ୍ଧତ୍ୱ ପ୍ରଦର୍ଶନ ନିମିତ୍ତ ଏହି ଚିତ୍ରର ପେଟତଳକୁ 'ଗଜତମେ' ବୋଲି ଗୁଡ଼େଇଟି ବ୍ରାହ୍ମୀ ଅକ୍ଷର ଗଭୀର ଭାବରେ ଖୋଳାଯାଇଛି । ଗୁଜୁରାଟର ଗିର୍ଣ୍ଣାର ପର୍ବତ ଗାତ୍ରରେ ଉତ୍କୀର୍ଣ୍ଣ ଅଶୋକଙ୍କ ଅନୁଶାସନ ଉପରେ ଏକ ହସ୍ତୀ ମୂର୍ତ୍ତି ଖୋଦିତ ହୋଇଅଛି । ଏହାର ନିମ୍ନଭାଗରେ ଲିଖିତ ହୋଇଛି 'ଶ୍ୱେତହସ୍ତୀ ସର୍ବଲୋକ ସୁଖ ହେତୁ ନାମ' ।

ଅଶୋକଙ୍କ ଯୁଗର ଗୁମ୍ଫା ଓ ସ୍ତୂପ— ବୌଦ୍ଧଧର୍ମରେ ପରମ ପବିତ୍ର ରୂପେ ବିବେଚିତ ଏହି ହସ୍ତୀମୂର୍ତ୍ତି ମଣ୍ଡନ କରୁଥିବା ଉକ୍ତ ପାହାଡ଼ ଦେହରେ କେତେକ ଗୁମ୍ଫା ମଧ୍ୟ ଖୋଦିତ ହୋଇଥିଲା ଏବଂ ଅଶୋକ ଅନୁଶାସନ ଥିବା ଶୈଳର ଉପରିଭାଗରେ ଏକ ସ୍ତୂପ ବା ଚୈତ୍ୟ ଓ ଅନ୍ୟ କେତେକ ପ୍ରାସାଦ ନିର୍ମିତ ହୋଇଥିଲା । ଭାରତର ପ୍ରତ୍ନତତ୍ତ୍ୱ ଅନୁସନ୍ଧିତ୍ସୁ ଇଂରେଜ କର୍ମଚାରୀ ମାରଖାମ କିଟୋ ୧୮୩୮ ଖ୍ରୀଷ୍ଟାବ୍ଦରେ ନିଜ ଜୀବନକୁ ସଂକଟାପନ୍ନ କରି ଧଉଳୀର ପ୍ରାଚୀନ ବୌଦ୍ଧକୀର୍ତ୍ତି ସମୂହ ସମ୍ବନ୍ଧରେ ଏକ ଉପାଦେୟ ବିବରଣ ପ୍ରକାଶ କରିଥିଲେ । ସେଥିରୁ ଜଣାଯାଏ ଯେ, ତାଙ୍କ ପରିଦର୍ଶନ ସମୟରେ

ଅଶୋକ ଯୁଗରେ ପ୍ରାଚୀନ ଗୁମ୍ଫା ଗୁଡ଼ିକ ଭଗ୍ନ ଅବସ୍ଥାରେ ଏବଂ ସ୍ତୂପ, ଚୈତ୍ୟ ଓ ଅନ୍ୟାନ୍ୟ ପ୍ରାସାଦ ଗୁଡ଼ିକର ମୂଳ ଭିତ୍ତି ମାତ୍ର ବିଦ୍ୟମାନ ଥିଲା । ଯଥା—

"There are many broken caves in the rocks adjoining the Asvathamā and the foundations of many buildings, one in particular above the inscription which may have been one of the chaityas or stupas mentioned in the inscription. (୧)

କଟୋ ପ୍ରଦତ୍ତ ବିବରଣୀରୁ ମଧ୍ୟ ଜଣାଯାଏ ଯେ, ହସ୍ତୀର ଦକ୍ଷିଣକୁ ଥିବା ଶୈଳଖଣ୍ଡରେ ଏକ ଧାଡ଼ିରେ ଖୋଳା ହୋଇଥିବା ପାଞ୍ଚଟି ଗୁମ୍ଫା 'ପଞ୍ଚପାଣ୍ଡବ' ଗୁମ୍ଫା ନାମରେ ପରିଚିତ ଥିଲା । ଏଗୁଡ଼ିକ ବ୍ୟତୀତ ଆଉ କେତେକ ଗୁମ୍ଫାର ଭଗ୍ନାବଶେଷ ଓ ପଥର ଦେହରେ ଖୋଦିତ ଛୋଟ ଛୋଟ ଖାଲ ମଧ୍ୟ ସେ ଦେଖିଥିଲେ । ଏ ଖାଲଗୁଡ଼ିକରେ ପୁଅ ସାହାଯ୍ୟରେ ଔଷଧ ଉପଯୋଗୀ ଚେରମୂଳ ସବୁ ଛେଚା, କୁଟା ଓ ବଟା ହେଉଥିବାର ସେ ଅନୁମାନ କରିଥିଲେ । (୨)

କଟୋଙ୍କ ଅନୁମାନ ଯଥାର୍ଥ । କାରଣ ଧଉଳୀ ପାହାଡ଼ରେ ଖୋଦିତ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଦ୍ୱିତୀୟ ଅନୁଶାସନରୁ ଜଣାଯାଏ ଯେ, "ସେ ସମଗ୍ର ଭାରତବର୍ଷରେ ଓ ସୁଦୂର ଗ୍ରୀକ୍ ରାଜ୍ୟ ଗୁଡ଼ିକରେ ଦୁଇପ୍ରକାର ଚିକିତ୍ସା ପ୍ରଣାଳୀ ପ୍ରଚଳନ କରିଥିଲେ— ମନୁଷ୍ୟ ଚିକିତ୍ସା ଓ ପଶୁଚିକିତ୍ସା । ଯେଉଁ ଯେଉଁ ସ୍ଥାନରେ ମନୁଷ୍ୟ ଓ ପଶୁଚିକିତ୍ସା ଉପଯୋଗୀ ଫଳମୂଳର ଅଭାବ ହେଉଥିଲା ସେଠାକୁ ଔଷଧ ବୃକ୍ଷମାନ ପଠାହୋଇ ରୋପିତ ହୋଇଥିଲା ।" ତାଙ୍କର ଏହି ଅନୁଶାସନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଆୟୁର୍ବେଦୀୟ ମତରେ ଚେର, ମୂଳ,

---

(୧) J. A. S. Bengal Vol. VII, pp 436.

(୨) „ „ p 435.

ଛେଲ ଓ ଫଳ ସାହାଯ୍ୟରେ ବିଭିନ୍ନ ଔଷଧ ପ୍ରସ୍ତୁତ କରିବା ପାଇଁ କେତେକ ଖଲ ଖୋଳା ହୋଇଥିବା ସର୍ବଥା ସମ୍ଭବପର ।

ତାଙ୍କ ବିବରଣୀରୁ ଆହୁରିମଧ୍ୟ ଜଣାଯାଏ ଯେ, ଧଉଳେଶ୍ୱର ମନ୍ଦିରର ଧ୍ୱଂସାବଶେଷ ଥିବା ଦୟା ଖଳବର୍ତ୍ତୀ ସର୍ବୋଚ୍ଚ ପାହାଡ଼ର ନିମ୍ନାଂଶରେ କେତେକ କ୍ଷୁଦ୍ର ଗୁମ୍ଫା ଅକ୍ଷୁର୍ଣ୍ଣ ଓ କେତେକ ଖଣ୍ଡିତ ଓ ଭଗ୍ନ ଅବସ୍ଥାରେ ଅବସ୍ଥିତ ଥିଲା । ସେଥିମଧ୍ୟରୁ ଗୋଟିଏ ଗୁମ୍ଫାରେ ଏକ ଲେଖ ଥିଲା । ଏହି ପାହାଡ଼ ଓ ଏହାର ଦକ୍ଷିଣକୁ ଥିବା ଅନ୍ୟୁଚ୍ଚ ପାହାଡ଼ ଉପରେ ଏବଂ ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ ସମତଳ ଭୂମିରେ କେତେକ ପ୍ରାଚୀନ ପ୍ରାସାଦର ଧ୍ୱଂସାବଶେଷ ବିଦ୍ୟମାନ ଥିଲା । ପରବର୍ତ୍ତୀ କାଳରେ ଏହି ପାହାଡ଼ ଗୁଡ଼ିକର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ନୂତନ ନୂତନ ଦେବାଳୟ (ଏପରିକି କୋଣାର୍କସ୍ଥ ଉତ୍ତୁଙ୍ଗ ସୂର୍ଯ୍ୟ ମନ୍ଦିର) ନିର୍ମାଣ ପାଇଁ ବହୁସଂଖ୍ୟାରେ ପଥର କଟାଯାଇଥିବାର ସେ ଲକ୍ଷ୍ୟ କରିଥିଲେ ।(୩)

କିଟୋଙ୍କ ଦ୍ୱାରା ସୂଚିତ ଲେଖଟି ହେଉଛି ପରବର୍ତ୍ତୀ କାଳରେ ଭୌମସମ୍ରାଟ୍ ଶ୍ରୀ ଶାନ୍ତିକର ଦେବଙ୍କ ରାଜତ୍ୱ କାଳରେ ୯୩ ଭୌମ ସମ୍ବତ୍‌ରେ ଏକ କ୍ଷୁଦ୍ର ଗୁମ୍ଫାର କାନ୍ଥରେ ଖୋଦିତ ଲେଖ ।

କିଟୋଙ୍କ ପରିଦର୍ଶନର ପ୍ରାୟ ୩୭ ବର୍ଷ ପରେ ୧୮୭୪ ଖ୍ରୀଷ୍ଟାବ୍ଦରେ ଗତ ଶତାବ୍ଦୀର ସୁନାମଧନ୍ୟ ପ୍ରତ୍ନତତ୍ତ୍ୱବିତ୍ ସାର୍ ଅଲେକଜାଣ୍ଡର କନିଂହାମଙ୍କ ସହକାରୀ ଜେ. ଡ଼ି. ବେଗଲାର ଧଉଳୀର ପ୍ରାଚୀନ ବୌଦ୍ଧ ଓ ହିନ୍ଦୁକୀର୍ତ୍ତି ସମୂହ ପରିଦର୍ଶନ କରି ଏକ ବିବରଣ ଲିପିବଦ୍ଧ କରିଥିଲେ । ସେଥିରୁ ଜଣାଯାଏ ଯେ, ହସ୍ତୀ ଖୋଦିତ ହୋଇଥିବା ପାହାଡ଼ର ଏକ ସମତଳ ଭୂମି ଉପରେ ଏବଂ ଅଳ୍ପ ଦୂରବର୍ତ୍ତୀ ବଖେତ ଭାଗରେ ଥିବା ଅନ୍ୟ ପାହାଡ଼ ଉପରେ ଦୃବେ ଦୁଇଟି ସ୍ତୂପର ଭଗ୍ନାବଶେଷ ବିଦ୍ୟମାନ ଥିଲା । କିନ୍ତୁ ବହୁକାଳ ହେଲା ସେଗୁଡ଼ିକ

(୩) J. A. S. B., Vol. VII, pp 436 ff.

ଖୋଳିଛନ୍ତି ସେଥିରୁ ଇଟାସବୁ ନିକଟବର୍ତ୍ତୀ ଅଞ୍ଚଳର ଲୋକେ ନେଇ-ଯାଉଥିବାରୁ ସେହି ଧ୍ୱଂସାବଶେଷ ଗୁଡ଼ିକର ମଧ୍ୟ କ୍ରମଶଃ ବିଲୟ ଘଟିଥିଲା । କେବଳ ଉଭୟ ସ୍ତୂପ ଥିବା ସ୍ଥାନର ଚାରିପାଖରେ ଏବଂ ପାହାଡ଼ର ପାଦଦେଶରେ କେତେକ ଇଟା ଇତସ୍ତତଃ ବିକ୍ଷିପ୍ତ ଭାବରେ ପଡ଼ିଥିବାର ସେ ଲକ୍ଷ୍ୟ କରିଥିଲେ—

"There appeared to me the remains of a Stupa on the flat terrace of the hill near the elephant and also one facing it on the opposite ridge, but they have long ago been dug into. A few bricks are to be found scattered about in the vicinity of both and at the foot of the hills." (୪)

ବେଗଲରଙ୍କ ଦ୍ୱାରା ବର୍ଣ୍ଣିତ ଭଗ୍ନଦଶାପନ୍ନ ଧବଳେଶ୍ୱର ମନ୍ଦିର ନିକଟରେ ଏକ ସ୍ତୂପର ଅବସ୍ଥିତି ଚଳନ୍ତି ବର୍ଷ ଏହି ମନ୍ଦିରର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ପରିଚାଳିତ ହେଉଥିବା ସମୟରେ ପ୍ରମାଣିତ ହୋଇଅଛି । ମନ୍ଦିରର ପଶ୍ଚିମକୁ ଥିବା ପାହାଡ଼ର ଅଂଶ ଅବନତ ଥିବାରୁ ସ୍ତୂପଟି ମନ୍ଦିରର ଉପକଣ୍ଠରେ ଅବସ୍ଥିତ ଥିଲା । ଏଠାରେ ପାହାଡ଼ର ଉପର ଅଂଶକୁ କଟାଯାଇ ସମତଳ କରାଯାଇଥିଲା । ଏହି ସମତଳ ଭୂମିରେ ଭଙ୍ଗା ଇଟା ଓ ମାଟି ପକାଯାଇ ଏକ କୁଦ କରାଯାଇଥିଲା ଓ ସେଥିରେ ଇଟା ଖଞ୍ଜାଯାଇ ସ୍ତୂପ ନିର୍ମିତ ହୋଇଥିଲା । ବର୍ତ୍ତମାନ ମନ୍ଦିର ପାଇଁ ସଡ଼କ ତିଆରି କରିବା ବେଳେ ସେହି ମାଟିକୁଦ ପଦାକୁ ଦେଖାଗଲା । ମନ୍ଦିର ମଧ୍ୟରେ ପୂଜିତ ଶିବଲିଙ୍ଗ ମଧ୍ୟ ଏକ ମାଟି ଗଦା ମଧ୍ୟରେ ପୋତା ହୋଇଥିବାର ପ୍ରମାଣ ମିଳିଲା । ଏହି ଲିଙ୍ଗଟି ୧୪ ଫୁଟ ଉଚ୍ଚ ଏବଂ ଏହାର ପ୍ରାୟ ୧୦ ଫୁଟ ମାଟିତଳେ ପୋତାଯାଇଥିଲା । ସାଧାରଣ

---

(୪) Archaeological Survey of India by A. Cunningham, Vol. XIII, by J. D. Beglar, 1874—75, 1875—76, pp. 95—98.

ଗୌରିପଟ୍ଟ ପତ୍ର ଏହାର ଶକ୍ତ ମଧ୍ୟ ଖଣ୍ଡିଏ ପଥରରେ ତିଆରି ନ ହୋଇ ଆକାର ପାଇଁ ଆବଶ୍ୟକ କେତେଖଣ୍ଡ କଟା ପଥରକୁ ଯୋଡ଼ି ନିର୍ମାଣ କରାଯାଇଥିଲା ।

ଅଶୋକ ସ୍ତମ୍ଭର ଅଂଶବିଶେଷ ରୂପେ ପ୍ରମାଣିତ ପ୍ରାୟ ୧୨ ଫୁଟ ଉଚ୍ଚ ଭାସ୍କରେଶ୍ୱର ଶିବଲିଙ୍ଗ ଗୃହପଟେ ଥିବା ଗୌରିପଟ୍ଟ ଗୃହଖଣ୍ଡ ପଥରରେ ତିଆରି ହୋଇଛି । ଏଠାରେ ମଧ୍ୟ ଏହି ନମୁନାରେ ଗୌରି-ପଟ୍ଟ ନିର୍ମିତ ହୋଇଥିବାରୁ ଏହାକୁ ସ୍ତୂପ ନିକଟବର୍ତ୍ତୀ ଏକ ସ୍ତମ୍ଭ ରୂପେ ନିଃସନ୍ଦେହରେ ଗ୍ରହଣ କରାଯାଇପାରେ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଏହି ମନ୍ଦିର ନିର୍ମିତ ହୋଇଥିବାରୁ ଏହି ସ୍ତମ୍ଭଟି ତତ୍ ପୂର୍ବବର୍ତ୍ତୀ— ଏହା ନିଃସନ୍ଦେହରେ ଗ୍ରହଣୀୟ । ତେବେ ଏହା ଅଶୋକ ଯୁଗର ବୋଲି ନିର୍ଦ୍ଧାରଣ କରିବା ପାଇଁ ଲେଖଗତ ପ୍ରମାଣ ନ ମିଳିଲେ ମଧ୍ୟ ପାର୍ଶ୍ୱ-ପାର୍ଶ୍ୱ କ ପ୍ରାଚୀନ କୀର୍ତ୍ତି ଗୁଡ଼ିକର ଅବସ୍ଥିତି ଦୃଷ୍ଟିରୁ ଏପରି ଅନୁମାନ ଯୁକ୍ତିସଂଗତ ।

କିଟୋ ଓ ବେଗଲର ସାହେବ ଦ୍ୱୟଙ୍କ ପ୍ରଦତ୍ତ ବିବରଣୀକୁ ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ, ୧୮୩୭ ଖ୍ରୀଷ୍ଟାବ୍ଦରେ କିଟୋ ଦେଖିଥିବା ସ୍ତୂପଦ୍ୱୟର ମୂଳଭିତ୍ତି ଅବାଧିତ ଭାବରେ ଖୋଳିତାଡ଼ି ପୁରୁଣା ବଡ଼ ବଡ଼ ଇଟାଗୁଡ଼ିକୁ ବୋହି ନେଇଯିବା ଫଳରେ ୧୮୭୪ ଖ୍ରୀଷ୍ଟାବ୍ଦ ବେଳକୁ ଏକାବେଳକେ ବିଲୁପ୍ତ ହୋଇଥିଲା । ପ୍ରାଚୀନ କୀର୍ତ୍ତିଗୁଡ଼ିକରୁ ଇଟା ପଥର ପ୍ରଭୃତି ବୋହି ନେବାପାଇଁ ଆମ ଲୋକ-ମାନଙ୍କର ଦୁର୍ଦ୍ଦମ ଲାଳସା ଫଳରେ ଗୌରବମୟ ଜାତୀୟ ସଂପଦ ରୂପେ ବିବେଚିତ ଉତ୍କଳର ନାନାସ୍ଥାନରେ ଅବସ୍ଥିତ ବହୁ ପ୍ରାଚୀନ କୀର୍ତ୍ତିର ଅସ୍ତିତ୍ୱ କ୍ରମଶଃ ଲୋପ ପାଇଯାଉଛି । କୀର୍ତ୍ତିଲୋପକାରୀ ଲୋକଙ୍କ ଦୌରାତ୍ମ୍ୟ ଯୋଗୁଁ ଧଉଳୀସ୍ଥିତ ଉତ୍କଳର ପ୍ରାଚୀନତମ ସ୍ତୂପଦ୍ୱୟ ବର୍ତ୍ତମାନ ଚିରକାଳ ପାଇଁ ବିସ୍ମୃତି ଗର୍ଭରେ ନିକ୍ଷିପ୍ତ ହୋଇଯାଇଛି ।

ବର୍ତ୍ତମାନ ବିଲୁପ୍ତ ଏହି ସ୍ତୂପଦ୍ୱୟ ବୌଦ୍ଧସମ୍ରାଟ୍ ପ୍ରିୟଦର୍ଶୀ ଅଶୋକଙ୍କ ରାଜତ୍ୱ ପରେ ବହୁକାଳ ପର୍ଯ୍ୟନ୍ତ ବିଦ୍ୟମାନ ଥିବାର

ନିମ୍ନଲିଖିତ ଆଲୋଚନାରୁ ପ୍ରତିପାଦିତ ହେବ । ତୋଷଳୀ ଅଶୋକଙ୍କ ଦ୍ୱାରା ପ୍ରବର୍ତ୍ତିତ ହୀନଯାନ ମତାବଲମ୍ବୀ ବୌଦ୍ଧମାନଙ୍କର ଏକ ପ୍ରଧାନ କେନ୍ଦ୍ର ରୂପେ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ବିଖ୍ୟାତ ଥିବା ଆନ୍ଧ୍ର ରାଜ୍ୟର କୃଷ୍ଣା ନଦୀ ଉତ୍ତରବର୍ତ୍ତୀ ନାଗାର୍ଜ୍ଜୁନକୋଣ୍ଡା ପାହାଡ଼ର ଏକ ଶିଳାଲେଖରୁ ଜଣାଯାଏ । ଏ ସ୍ଥାନରୁ ପ୍ରାପ୍ତ ବହୁ ଲେଖ ପରି ଏହା ମଧ୍ୟ 'ପ୍ରାକୃତ' ଭାଷାରେ ଲିଖିତ ହୋଇଥିଲା । ଏହି ଲେଖଟି 'ମାଧରପୁତ' ନାମରେ ପରିଚିତ ଆନ୍ଧ୍ର ରାଜ୍ୟର ଇକ୍ଷ୍ୱାକୁ ବଂଶୀୟ 'ଶ୍ରୀବୀର ପୁରିସଦତ୍ତ'ଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ଶୀତ ଚତୁର୍ମାସ୍ୟାର ଷଷ୍ଠପକ୍ଷ ତ୍ରୟୋଦଶ ଦିବସରେ ଲିଖିତ ହୋଇଥିଲା । ଏଥିରୁ ଜଣାଯାଏ ଯେ, ହୀନଯାନାବଲମ୍ବୀ ମହାସଂଘିକମାନେ କାଶ୍ମୀର, ଗାନ୍ଧାର, ଚୀନ୍, ଲାଟ, ତୋଷଳୀ ଅପରାନ୍ତ, ବଙ୍ଗ, ବନବାସୀ, ଯବନ, ଦାମିଳ, ପାଲୁର ଓ ତାମ୍ରପର୍ଣ୍ଣୀ ଦ୍ୱୀପରେ ନିଜ ଧର୍ମପ୍ରଚାର ପାଇଁ କେନ୍ଦ୍ରମାନ ସ୍ଥାପନ କରିଥିଲେ । ଏହି ଲେଖଟି ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଲିଖିତ ହୋଇଥିଲା । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଉକ୍ତ ସମୟ ପର୍ଯ୍ୟନ୍ତ ତୋଷଳୀ ଓ ଋଷିକୁଲ୍ୟା ନଦୀ ମୁହାଣରେ ଥିବା 'ପାଲୁର' ହୀନଯାନ ବୌଦ୍ଧଧର୍ମର ପ୍ରଧାନ କେନ୍ଦ୍ର ଥିଲା । ଉକ୍ତ ଲେଖରୁ ଆଉମଧ୍ୟ ଜଣାଯାଏ ଯେ, ଉପାସିକା ବୋଧିଶ୍ରୀ ମହାସଂଘିକ ଶ୍ରମଣ ତଥା ସମଗ୍ର ଜଗତର ମଙ୍ଗଳ ପାଇଁ ନାନା ସ୍ଥାନରେ କୀର୍ତ୍ତି ନିର୍ମାଣ କରିଥିଲେ । ସେଥିମଧ୍ୟରୁ ଉତ୍କଳର ପୁଷ୍ପଗିରି ଠାରେ ନିର୍ମିତ ପ୍ରସ୍ତର ମଣ୍ଡପ ଏକତମ । (୫)

## କପିଳେଶ୍ୱରରୁ ଆବିଷ୍କୃତ ଲୁମ୍ବିନୀ ଲେଖର ପ୍ରତିଲିପି —

ହିମାଳୟ ପର୍ବତର ପାଦଦେଶରେ କପିଳବାସ୍ତୁ ନାମକ ନଗର-ରାଜ୍ୟର 'ଲୁମ୍ବିନୀ' ନାମକ ଗ୍ରାମରେ ମହାପୁରୁଷ ଗୌତମ ବୁଦ୍ଧ ଜନ୍ମଗ୍ରହଣ କରିଥିଲେ । ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଅଶୋକ ନିଜ ରାଜତ୍ୱର ବିଂଶତିତମ ବର୍ଷରେ ଖ୍ରୀ: ପୂ: ୨୫୦ ଅବ୍ଦରେ ଲୁମ୍ବିନୀ

(୫) E I Vol. XX, No. 1, p. 23, by Subrahmanya Ayer.

ଗ୍ରାମକୁ ମହାତୀର୍ଥ ରୂପେ ମନେକରି ସେହି ପୁଣ୍ୟପୀଠ ପରିଦର୍ଶନ କରିବା ପାଇଁ ଯାତ୍ରା କରିଥିଲେ । ଏହି ଦର୍ଶନର ସ୍ମାରକ ସ୍ୱରୂପ ସେ ସେଠାରେ ଏକ ଶିଳାସ୍ତମ୍ଭ ପ୍ରୋଥିତ କରି ସେଥିରେ ନିମ୍ନୋକ୍ତ ଘୋଷଣା ଲିପିବଦ୍ଧ କରିଥିଲେ । ସେହି ଲେଖରେ ମୂଳ ଓ ସଂସ୍କୃତାନୁବାଦ ନିମ୍ନରେ ପ୍ରଦାନ କରାଗଲା —

## ଲୁମ୍ବିନୀ ସ୍ତମ୍ଭଲେଖ ମୂଳ)

(୧) ଦେବାନପିୟେନ ପିୟଦସିନ ଲାଜନ ବୀସତିବ୍ସାଭିସିତେନ

(୨) ଅତନ ଆଗାଚ ମହୀୟିତେ ହିଦ ବୁଧେ ଜାତ ଚ ସାକ୍ୟମୁନୀତି

(୩) ସିଲା ବିଗଡଭୀ ଚ କାଳାପିତ ସିଲାଥଭେ ଚ ଉସପାପିତେ

(୪) ହିଦ ଭଗବଂ ଜାତେତି ଲୁମିନି ଗାମେ ଉବଲିକେ କଟେ

(୫) ଅଠଭାଗିୟେ ଚ ।

## — ସଂସ୍କୃତାନୁବାଦ —

ଦେବାନାଂପ୍ରିୟେଣ ପ୍ରିୟଦର୍ଶିନା ରାଜ୍ଞା ବିଂଶତିବର୍ଷାଭିଷିକ୍ତେନା-ତ୍ମନାଗତ୍ୟ ମହୀୟିତମ୍ ଇହ ବୁଦ୍ଧୋ ଜାତଃ ଶାକ୍ୟମୁନିରିତି ଶିଳାବିକଟଭିତ୍ତି ଚ କାରିତଃ । ଶିଳାସ୍ତମ୍ଭ ଶ୍ଚୋତ୍ଥାପିତୋଃଽହ ଭଗବାନ୍ ଜାତ ଇତି ଲୁମ୍ବିନୀ ଗ୍ରାମେ । ଉଦ୍‌ବଳିକଃ କୃତୋଃଽଷ୍ଟଭାଗୀ ଚ ।

ଏହି ଲେଖ ଦ୍ୱାରା ଅଶୋକ ପ୍ରଚାର କରିଥିଲେ ଯେ, "ଦେବପ୍ରିୟ ପ୍ରିୟଦର୍ଶୀ ରାଜା ରାଜ୍ୟାଭିଷେକର ବିଂଶତି ବର୍ଷ ପରେ ଲୁମ୍ବିନୀ ଗ୍ରାମକୁ ସ୍ୱୟଂ ଆଗମନ ପୂର୍ବକ ଏହି ସ୍ଥାନ ଶାକ୍ୟମୁନି ବୁଦ୍ଧଙ୍କର ଜନ୍ମସ୍ଥାନ ଥିବାରୁ ଏହା ପ୍ରତି ଭକ୍ତି ପ୍ରଦର୍ଶନ କରିଥିଲେ । ସେ ନିଜ ଆଗମନର ସ୍ମାରକ ସ୍ୱରୂପ ଏଠାରେ ଶିଳାମୟ ବିକଟଭିତ୍ତି ବା ମଣ୍ଡପ ପ୍ରତିଷ୍ଠା କରି ସେଠାରେ ଏକ ଶିଳାସ୍ତମ୍ଭ ପ୍ରତିଷ୍ଠା କରିଥିଲେ । ଅଧିକନ୍ତୁ ଭଗବାନ ବୁଦ୍ଧ ଏଠାରେ ଜନ୍ମପରିଗ୍ରହ କରିଥିବାରୁ ସେ ଲୁମ୍ବିନୀ ଗ୍ରାମକୁ ବଳିରୁ ମୁକ୍ତ କଲେ ଏବଂ ଏ ଗ୍ରାମକୁ ଅଷ୍ଟଭାଗୀ ଅର୍ଥାତ୍ ଉତ୍ପନ୍ନ ଶସ୍ୟର ଅଷ୍ଟମାଂଶ ଏ ଗ୍ରାମର ରାଜସ୍ୱ ରୂପେ ଦେୟ ବୋଲି ଘୋଷଣା କଲେ ।

ବଳି ଶବ୍ଦର ଅର୍ଥ ଧର୍ମସମ୍ବନ୍ଧୀୟ କର ବୋଲି ଅର୍ଥଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି । ଋକ୍‌ବେଦରେ ମଧ୍ୟ ବଳି ରାଜସ୍ୱ ଓ ଦେବପୂଜା ସାମଗ୍ରୀ ଅର୍ଥରେ ବ୍ୟବହୃତ ହୋଇଅଛି । ଅଶୋକ ବୌଦ୍ଧମତର ପ୍ରଧାନ ପ୍ରବର୍ତ୍ତକ ଥିବାରୁ ଲୁମ୍ବିନୀ ଗ୍ରାମବାସୀଙ୍କୁ ବୈଦିକ ମତ ସମର୍ଥିତ ଧର୍ମ ସମ୍ବନ୍ଧୀୟ କରଦାନରୁ ମୁକ୍ତ କରିଥିଲେ ।

ଭାରତ 'ଅର୍ଥଶାସ୍ତ୍ର' ପ୍ରଭୃତି ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ କ୍ଷେତ୍ରୋତ୍ପାଦିତ ଶସ୍ୟର ରାଜଦେୟ ଅଂଶ ରୂପେ ବ୍ୟବହୃତ ହୋଇଅଛି । ଭିନ୍ନ ଭିନ୍ନ ଗ୍ରନ୍ଥରେ ଏହାର ପରିମାଣ ବିଭିନ୍ନ ରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ଯଥା — ମହାଭାରତରେ ୧/୬, ଆପସ୍ତମ୍ବରେ ୧/୬, ଚାଣକ୍ୟଙ୍କ ମତରେ ୧/୪, ବଶିଷ୍ଠ ସ୍ମୃତିରେ ୧/୬ ଇତ୍ୟାଦି । ମେଗାସ୍ଥିନିସ୍‌ଙ୍କ ସମୟରେ ଭାରତୀୟ-ମାନେ ଉତ୍ପନ୍ନ ଶସ୍ୟର ଏକଚତୁର୍ଥାଂଶ ରାଜସ୍ୱ ସ୍ୱରୂପ ପ୍ରଦାନ କରୁଥିଲେ । ଅଶୋକ ଲୁମ୍ବିନୀ ଗ୍ରାମକୁ ଅଷ୍ଟଭାଗୀ କରିଥିଲେ; ଅର୍ଥାତ୍ ଉତ୍ପନ୍ନ ଶସ୍ୟର ଅଷ୍ଟମାଂଶ ରାଜସ୍ୱ ସ୍ୱରୂପ ଦେବାକୁ ଘୋଷଣା କରିଥିଲେ ।

୧୯୨୮ ମସିହାରେ ଭୁବନେଶ୍ୱର ନିକଟବର୍ତ୍ତୀ କପିଳେଶ୍ୱର ଗ୍ରାମରୁ ପୁରୀବାସୀ ଶ୍ରୀ ଖଟେରନ ରଥଙ୍କ ଦ୍ୱାରା ଉକ୍ତ ଲୁମ୍ବିନୀ ସ୍ତମ୍ଭଲେଖର ପ୍ରତିଲିପି ଥିବା ଏକ ପ୍ରସ୍ତର ଫଳକ ଆବିଷ୍କୃତ ହେବାରୁ ପ୍ରତ୍ନତତ୍ତ୍ୱବିତ୍-ମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା । କିନ୍ତୁ ଅଶୋକ ତାଙ୍କ ସାମ୍ରାଜ୍ୟର ନାନା ସ୍ଥାନରେ 'ଶିଳାସ୍ତମ୍ଭ' ଓ 'ଶିଳାଫଳକ'ରେ ଧର୍ମଲିପି ଖୋଦନ କରିଥିବା ତାଙ୍କର 'ସପ୍ତମ ଶିଳାଲେଖ'ରୁ ଜଣାଯାଏ । ଯଥା —

"ଇୟଂ ଧମ୍ମଂଲିବି ଅତ ଅଥି ସିଲାଥଂଭାନି ବା ସିଲାଫଲକାନି ବା ତତ କଟବିୟା ଯେନ ଚିର ଥିତିକେ ସିୟା"

ତେଣୁ ସେ ତୋଷଳୀ ଉପକଣ୍ଠରେ ଏହି ଶିଳା ଫଳକଟି ସ୍ଥାପନ କରି-ଥିବା ସର୍ବଥା ସମ୍ଭବପର । ଏହି ଲେଖ ଥିବା ଶିଳାଫଳକଟିର ଲମ୍ବ ୧ ଫୁଟ ୭ ଇଞ୍ଚ, ଉଚ୍ଚତା ୧ ଫୁଟ ଏବଂ ମୋଟା ୭ ଇଞ୍ଚ । ଏହା ପ୍ରଥମ

ଅବସ୍ଥାରେ ଗୋଟିଏ ପ୍ରସ୍ତର ସ୍ତମ୍ଭ ଦେହରେ ଖଚିତ ହୋଇଥିଲା । ଛଅଧାଡ଼ିରେ ଏହି ଲେଖଟି ସମ୍ପୂର୍ଣ୍ଣ ହୋଇଅଛି । ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଷଷ୍ଠ ଧାଡ଼ିରେ ୧୫ଟି ଅକ୍ଷର ଓ ଚତୁର୍ଥ ଓ ପଞ୍ଚମ ଧାଡ଼ିରେ ୧୭ଟି ଅକ୍ଷର ରହିଛି । ଏହା ଲୁମ୍ବିନୀ ଲେଖର ପ୍ରତିଲିପି ହେଲେମଧ୍ୟ ଏଥିରେ ପାଠଭେଦ ଦେଖାଯାଏ । ତେଣୁ ଏହାର ପାଠ ନିମ୍ନରେ ଉଦ୍ଧାର କରାଗଲା ।

## କପିଳେଶ୍ୱର ଶିଳାଲେଖ

ପ୍ରଥମ ଧାଡ଼ି — ଦେବାଣଂପିୟେନ ପିୟଦଷିଣ ଲାଜିନ ବି

ଦ୍ୱିତୀୟ ,, — ସା ଭିସିତେନ ଆଗାଚ ମହିତ ବୁଧଜାତ

ତୃତୀୟ ,, — ସକ୍ୟମୁନିତି ସିଲାବିଗଡଭି ଚ କାଳାପି

ଚତୁର୍ଥ ,, — ତା ସିଲାଥବ ଚ ଉସପାପିତ ହିଦ ଭଗବ

ପଞ୍ଚମ ,, — ଜାତେତି ଲୁମିନୀ ଗାମେ ଉବଲିକେ କଟେ ଛିଳ ।

ଷଷ୍ଠ ,, — ବୁଧେ ୨୦୦.୫୦ ଆଧ ଭାଟେୟେଚ ଚୂଂଦ୍ରୟ (୭)

ଏହା ଲୁମ୍ବିନୀ ଲେଖର ପ୍ରତିଲିପି ହେଲେମଧ୍ୟ ଏହାର କେତେକ ବୈଶିଷ୍ଟ୍ୟ ରହିଛି । ପ୍ରଥମତଃ ଏଥିରେ 'ଅଠଭ' ସଂ ଅଷ୍ଟମ) ପଦ ବ୍ୟବହୃତ ହୋଇନାହିଁ । କାରଣ ଉକ୍ତ ପଦ କେବଳ ଲୁମ୍ବିନୀ ଗ୍ରାମ ପ୍ରତି ପ୍ରଯୁଜ୍ୟ । କପିଳେଶ୍ୱର ଲେଖରେ ଏହାର କୌଣସି ଆବଶ୍ୟକତା ନାହିଁ । ଦ୍ୱିତୀୟତଃ ଏହା ଏକ ପ୍ରତିଲିପି ବା ନକଲ ହୋଇଥିବାରୁ ନକଲକାରୀ ବା ଲିପିକାର ନିଜ ନାମ ଶେଷରେ ଲେଖିଛନ୍ତି । ଏଥିରେ ବ୍ୟବହୃତ ୨୫୦କୁ ବୁଦ୍ଧଙ୍କ ପରିନିର୍ବାଣାବ୍ଦ ରୂପେ ଗ୍ରହଣ କଲେ ଏହା ୨୯୭ ଖ୍ରୀଷ୍ଟପୂର୍ବ ହେଉଅଛି । କିନ୍ତୁ ଏହି କେତେକ ଅକ୍ଷରର ପାଠ ଅଭ୍ରାନ୍ତ ନୁହେଁ । ଏଥିରେ ପ୍ରାନ୍ତୀୟ ଭାଷାର ପ୍ରଭାବ ପରିଲକ୍ଷିତ ହୁଏ ।

---

(୭) The Lumbini pilgrimage record in two inscriptions, I H, Q. Vol. V, 1929 pp.

ଏହି ଲେଖରେ ଅଶୋକଙ୍କ ସମୟର ବ୍ରାହ୍ମୀ ବର୍ଣ୍ଣମାଳା ବ୍ୟବହୃତ ହୋଇଅଛି । କିନ୍ତୁ ଅଶୋକଙ୍କ ଲେଖଗୁଡ଼ିକର ଅକ୍ଷର ଗୁଡ଼ିକ ସମାନ ସୁନ୍ଦର ଓ ଘନସନ୍ନିବଷ୍ଟ । କିନ୍ତୁ ଏହାର ଅକ୍ଷର ଗୁଡ଼ିକ ଅପେକ୍ଷାକୃତ ନିକୃଷ୍ଟ ହେଲେମଧ୍ୟ ଧଉଳୀରେ ଥିବା କଳିଙ୍ଗାନୁଶାସନ ଦୟର ଅକ୍ଷର ଗୁଡ଼ିକ ସହିତ ବିଶେଷ ସାମଞ୍ଜସ୍ୟ ରହିଛି । ଚନ୍ଦ୍ରମ୍ୟ ନାମକ ଜଣେ ଲିପିକାରଙ୍କ ଦ୍ୱାରା ଏହା ଉତ୍କୀର୍ଣ୍ଣ ହୋଇଥିଲା । ଲେଖର ଶେଷରେ ଲିପିକାରଙ୍କ ଦସ୍ତଖତ 'ଖରୋଷ୍ଟ୍ରୀ' ଅକ୍ଷରରେ ଉତ୍କୀର୍ଣ୍ଣ ହୋଇଅଛି ।

ମହୀଶୂରରେ ରାଜ୍ୟରେ ଥିବା ଏକ ଅଶୋକ ଲେଖରେ ଲିପିକାରଙ୍କ ଦସ୍ତଖତ 'ଚପଡ଼' ଖରୋଷ୍ଟ୍ରୀ ଅକ୍ଷରରେ ଖୋଦିତ ହୋଇଥିବା ଦେଖାଯାଏ । ସେହିପରି ସହସ୍ରାମ ଲେଖରେ ଲିପିକାରଙ୍କ ଦସ୍ତଖତ ଦେଖାଯାଏ । ତେଣୁ ଏହାର ମୌଳିକତ୍ୱ ସମ୍ବନ୍ଧରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ତୋଷଳୀର ସୁଶାସନ ନିମିତ୍ତ ଅଶୋକଙ୍କ ତୀକ୍ଷ୍ଣ ଦୃଷ୍ଟି ଥିବାର ଦୁଇଟି କଳିଙ୍ଗାନୁଶାସନରୁ ସ୍ପଷ୍ଟ ଜଣାଯାଏ । ଏହାର ଶାସନଭାର ଜଣେ ରାଜକୁମାରଙ୍କ ହସ୍ତରେ ନ୍ୟସ୍ତ ଥିଲା । ସାମ୍ରାଜ୍ୟର ଅନ୍ୟ ତିନୋଟି ପ୍ରାଦେଶିକ ରାଜଧାନୀ ତକ୍ଷଶୀଳା, ଉଜ୍ଜୟିନୀ ଓ ସୁବର୍ଣ୍ଣଗିରି ଅପେକ୍ଷା ଅଶୋକ ନୂତନ ବିଜିତ କଳିଙ୍ଗର ରାଜଧାନୀ ତୋଷଳୀର ଲୋକମାନଙ୍କ ସୁଖଶାନ୍ତି ପାଇଁ ଅଧିକ ବ୍ୟାକୁଳ ଥିଲେ । ତେଣୁ ଅଶୋକଙ୍କ ଆଦେଶରେ କୁମାର ଓ ମହାମାତ୍ରମାନେ ଲୁମ୍ବିନୀ ଲେଖର ଏହି ପ୍ରତିଲିପି ଖ୍ରୀ:ପୂ: ୨୫୦ ଅବ୍ଦ ପରେ ଭଗବାନ ଶାକ୍ୟମୁନି ବୁଦ୍ଧଙ୍କ ଜନ୍ମସ୍ଥାନ ଲୁମ୍ବିନୀର ଗୌରବ ଓ ମାହାତ୍ମ୍ୟ ପ୍ରଖ୍ୟାପନ ଏବଂ ଦେବାନାଂପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ବୁଦ୍ଧ ଭକ୍ତିର ପରିଚୟ ପ୍ରଦାନ ପାଇଁ କୌଣସି ଏକ ସ୍ତମ୍ଭ ଦେହରେ ଉକ୍ତ ଫଳକଟି ଲଗାଇଥିଲେ ।

କପିଳେଶ୍ୱର ଫଳକ ପରି ଅଶୋକଙ୍କ 'ଭାବ୍ରୁ ଲେଖ' ମଧ୍ୟ ଅଶୋକ ଅନୁଶାସନ ଖୋଦିତ ହୋଇଥିବା ବିରାଟ ଶୈଳଖଣ୍ଡ ନିକଟରେ ସ୍ୱତନ୍ତ୍ର ଫଳକରେ ଖୋଦିତ ହୋଇଥିଲା । ପରେ ଏହା କଲିକତା ମିଉଜିୟମକୁ ସ୍ଥାନାନ୍ତରିତ ହୋଇଥିଲା ।

"The Bhābru Edict remained before its removal to the Indian Museum, Calcutta, engraved on a small block of stone, which stood near the block bearing the Minor Rock Edicts of Bairāt." (Baruā-Asoka, Part—II, p 5.)

ତେଣୁ ଏହା ଯେ ଏକ ରାଜକୀୟ ଘୋଷଣା, ଏଥିରେ କୌଣସି ସନ୍ଦେହ ନାହିଁ । ବୌଦ୍ଧଧର୍ମର ଅବସାନ କାଳରେ ସ୍ତମ୍ଭଟି ଭାଙ୍ଗିଯିବାରୁ ଉକ୍ତ ଫଳକଟି କୌଣସି ପ୍ରକାରେ ଧଉଳୀର ଅଦୂରବର୍ତ୍ତୀ କପିଳେଶ୍ୱର ଗ୍ରାମକୁ ସ୍ଥାନାନ୍ତରିତ ହୋଇଥିବ ।

ଏହି ଲେଖକୁ ଭିତ୍ତି କରି କପିଳେଶ୍ୱର ଓ କପିଳବାସ୍ତୁର ଅଭିନ୍ନତ୍ୱ ପ୍ରମାଣ କରିବା ଓ ତଦନୁସାରୀ କପିଳେଶ୍ୱର ଶାକ୍ୟମୁନି ବୁଦ୍ଧଙ୍କ ଜନ୍ମସ୍ଥାନ ବୋଲି ନିର୍ଣ୍ଣୟ କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । 'କପିଳେଶ୍ୱର' ଓ 'କପିଳପ୍ରସାଦ' ଗ୍ରାମଦ୍ୱୟ ସୂର୍ଯ୍ୟବଂଶୀୟ ପ୍ରବଳ ପରାକ୍ରମୀ ଦିଗ୍‌ବିଜୟୀ କପିଳେଶ୍ୱର ଦେବଙ୍କ ରାଜତ୍ୱ କାଳରେ (୧୪୩୫—୧୪୬୭ ଖ୍ରୀଷ୍ଟାବ୍ଦ) ସ୍ଥାପିତ ହୋଇଥିଲା । ପୁଣି ନିକଟବର୍ତ୍ତୀ ଲେମ୍ବାଇ ମୌଜାକୁ ପ୍ରାଚୀନ ଲୁମ୍ବିନୀ ଗ୍ରାମ ସହିତ ଚିହ୍ନିତ କରିବା ପାଇଁ କୌଣସି ଐତିହାସିକ ପ୍ରମାଣ ମିଳୁନାହିଁ । ପରନ୍ତୁ ହିମାଳୟର ପାଦଦେଶରେ ବର୍ତ୍ତମାନ 'କପିଳବାସ୍ତୁ' ରାଜ୍ୟରେ ଲୁମ୍ବିନୀ ଗ୍ରାମ ଅବସ୍ଥିତି ସମ୍ବନ୍ଧରେ ପ୍ରାଚୀନ ବୌଦ୍ଧସାହିତ୍ୟ ତଥା ଅନ୍ୟ ସୂତ୍ରରୁ ଭୂରି ଭୂରି ପ୍ରମାଣ ମିଳେ । ଅଶୋକଙ୍କ ଅନ୍ୟ ଏକ ଲେଖରୁ ମଧ୍ୟ ଜଣାଯାଏ ଯେ, ସେ ପରେ ଲୁମ୍ବିନୀ ଗ୍ରାମବାସୀଙ୍କୁ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିଥିଲେ । ତେଣୁ ଏହି ଲେଖର ଆବିଷ୍କାର ଦ୍ୱାରା ଏତିକି ପ୍ରତିପାଦିତ ହୁଏ ଯେ, ସମ୍ରାଟ୍ ଅଶୋକଙ୍କ ରାଜତ୍ୱର ଉତ୍ତରାର୍ଦ୍ଧରେ ତୋଷଳୀ ନଗରରେ ବା ଏହାର ଉପକଣ୍ଠର କୌଣସି ଏକ କେନ୍ଦ୍ରସ୍ଥଳରେ ଏକ ସ୍ତମ୍ଭ ପ୍ରୋଥିତ ହୋଇ ଲୁମ୍ବିନୀ ଲେଖର ଉକ୍ତ ପ୍ରତିଲିପି ଉତ୍କୀର୍ଣ୍ଣ ହୋଇଥିଲା ।

## ଭୁବନେଶ୍ୱରରେ ଅଶୋକସ୍ତମ୍ଭ-ଭାସ୍କରେଶ୍ୱର ଶିବଲିଙ୍ଗ—

ଭୁବନେଶ୍ୱରର ପୂର୍ବ ଦିଗରେ ଗନ୍ଧବତୀ (ଗଙ୍ଗୁଆ) ନଦୀର ଅଳ୍ପ ପଶ୍ଚିମକୁ ଅବସ୍ଥିତ ଭାସ୍କରେଶ୍ୱର ନାମକ ପ୍ରସିଦ୍ଧ ଶିବମନ୍ଦିରରେ ଏକ ବୃହଦାକାର ଲିଙ୍ଗ ପୂଜିତ ହେଉଥିବାର ଦେଖାଯାଏ । ଭୂମି ପତ୍ତନ ଠାରୁ ଏହା ୯ ଫୁଟ ଉଚ୍ଚ ଓ ନିମ୍ନଭାଗରେ ଏହାର ପରିଧି ୧୨ ଫୁଟ ୧ ଇଞ୍ଚ ଓ ବ୍ୟାସ ପ୍ରାୟ ୩ ଫୁଟ ୧୦ ଇଞ୍ଚ । ସାଧାରଣ ଲିଙ୍ଗଙ୍କ ପରି ଏହାର ୨୦ ଫୁଟ ପରିଧି ବିଶିଷ୍ଟ ଶକ୍ତି ଖଣ୍ଡିଏ ପଥରରେ ତିଆରି ନ ହୋଇ ଗୃହଖଣ୍ଡ ପଥର ଯୋଡ଼ାହୋଇ ତିଆରି ହୋଇଅଛି । ଲିଙ୍ଗର ଉଚ୍ଚତା ତୁଳନାରେ ଶକ୍ତିର ଉଚ୍ଚତା, ପ୍ରସ୍ଥ ଓ ଆୟତନର ମାପ ଆଦୌ ଅନୁପାତିକ ନୁହେଁ । ଏହି ସମସ୍ତ ଲକ୍ଷ୍ୟକରି ପ୍ରଥମେ ଐତିହାସିକ ରାଜା ରାଜେନ୍ଦ୍ରଲାଲ ମିତ୍ର ଏହା ଏକ ଅଶୋକ ସ୍ତମ୍ଭର ଅଂଶବିଶେଷ ବୋଲି ମତ ପ୍ରକାଶ କରିଥିଲେ । (୭) ୧୯୧୨ରେ ଐତିହାସିକ ଶ୍ରୀ ମନମୋହନ ଗଙ୍ଗୁଲି କୌଣସି କାରଣ ପ୍ରଦର୍ଶନ ନ କରି ମିତ୍ର ମହାଶୟଙ୍କ ମତକୁ ଅଗ୍ରାହ୍ୟ କରିଥିଲେ । (୮) ପରେ ଶ୍ରୀ ନିର୍ମଳକୁମାର ବସୁ ଏହି ଲିଙ୍ଗଟି ଅଶୋକ ରାଜତ୍ୱକାଳୀନ ଅନ୍ୟ ସ୍ତମ୍ଭଗୁଡ଼ିକ ପରି ମସୃଣ ଓ ସ୍ୱଚ୍ଛ ନ ଥିବାରୁ ଏହାକୁ ଅଶୋକସ୍ତମ୍ଭର ଅଂଶବିଶେଷ ରୂପେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । (୯)

**ବୌଦ୍ଧ ରେଲିଙ୍ଗ** — ଏ ସମ୍ପର୍କରେ ଏପରି ବାଦାନୁବାଦ ଚାଲିଥିବା ସମୟରେ ଡକ୍ଟର ଶ୍ରୀ ରାଧାକୁମୁଦ ମୁଖାର୍ଜୀ ୧୯୨୭ ମସିହାରେ ଭାସ୍କରେଶ୍ୱର ମନ୍ଦିରର ଉତ୍ତରଆଡ଼କୁ ଅଳ୍ପ କେତେଗଜ ଦୂରରେ ମାଟି ଖୋଳି ବୌଦ୍ଧସ୍ତୂପ ଚତୁର୍ଦ୍ଦିଗରେ ଥିବା ରେଲିଙ୍ଗ ବାଡ଼ର

---

(୭) Antiquities of Orissa, Vol. II, p. 89

(୮) Orissa and her Remains, p. 324.

(୯) J. B. O. R. S., Vol. XV.

କୋଣକ ସ୍ତମ୍ଭର ଏକାଂଶ ଆବିଷ୍କାର କରିଥିଲେ । ଏହା ଫଳରେ ନିକଟରେ ଏକ ବୌଦ୍ଧସ୍ତୂପର ଅବସ୍ଥିତି ସମ୍ବନ୍ଧରେ ଅନୁମାନ କରାଗଲା । ମୁଖାର୍ଜୀ ମହାଶୟ ଖୋଳିଥିବା ସ୍ଥାନର ପ୍ରାୟ ୬୦ ଗଜ ଦୂରରେ ଅନ୍ୟ ଏକ ସ୍ଥାନ ୧୯୩୮ ରେ ଖୋଳି ଶ୍ରୀ ନିର୍ମଳ କୁମାର ବୋଷ ଓ ଶ୍ରୀ ଧୀରେନ୍ଦ୍ରନାଥ ବସାକ ପୂର୍ବୋକ୍ତ କୋଣକ ସ୍ତମ୍ଭର ଅବଶିଷ୍ଟାଂଶ ଆବିଷ୍କାର କରିଥିଲେ । ଉକ୍ତ ସ୍ଥାନରୁ ଶ୍ରୀ ବସାକ ମଧ୍ୟ ରେଲିଙ୍ଗ ସ୍ତମ୍ଭର ଅନ୍ୟ ଏକ ଅଂଶ ପାଇଥିଲେ । ଏଗୁଡ଼ିକର ଦୁଇ ପାଖରେ ପଥର ପଟା ଖଞ୍ଜିବା ପାଇଁ କାକୁଡ଼ି ମଞ୍ଜି ପରି ଦୁଇ ମୁହଁ ଗୋଜିଆ ଓ ମଝି ଭାଗ ଓସାରିଆ ଖୋପ (lenticular sockets) ଖୋଳାଯାଇଥିଲା । ଏହାର ଅନ୍ୟ ଦୁଇପାଖ ପୃଜାନ୍ତରର ଦୁଇଟି ପୁରୁଷ ଚିତ୍ର ଦ୍ୱାରା ମଣ୍ଡିତ । ଏହି ତିନୋଟି ସ୍ତମ୍ଭାଂଶ ବର୍ତ୍ତମାନ କଲିକତାସ୍ଥ ଆଶୁତୋଷ ସଂଗ୍ରହାଳୟ (museum)ରେ ସଂରକ୍ଷିତ ।

ଭୁବନେଶ୍ୱର ଅଞ୍ଚଳରେ ଥିବା ପ୍ରାକୃତାତ୍ତ୍ୱିକ ଅବଶେଷ ସମୂହ ସମ୍ବନ୍ଧରେ ଧାରାବାହିକ ସନ୍ଧାନ କରିବା ସମୟରେ ଡକ୍ଟର ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ୧୯୪୭—୪୮ ମସିହାରେ ଉକ୍ତ ଭାସ୍କରେଶ୍ୱର ମନ୍ଦିରର ଉତ୍ତର ଦ୍ୱାର ଠାରୁ ୩୭୫ ଫୁଟ ଦୂରରେ ଗୋଟିଏ ସ୍ଥାନ ଖୋଳି ୨ ୩/୪ ଇଞ୍ଚ ଉଚ୍ଚ, ୧୭୨ ଇଞ୍ଚ ଲମ୍ବ ଓ ୯୨ ଇଞ୍ଚ ଓସାର ବିଶିଷ୍ଟ ଖଣ୍ଡିଏ ସ୍ତମ୍ଭାଂଶ ଆବିଷ୍କାର କରିଥିଲେ । (୧୦) ଏହାର ଓସାରିଆ ପାଖରେ ଉପରଆଡ଼କୁ ୧୨ ୩/୪ ଇଞ୍ଚ ଲମ୍ବ ଓ ମଝିରେ ୩ ୩/୪ ଇଞ୍ଚ ଓସାର ଗୋଟିଏ ପୂରା କାକୁଡ଼ିମଞ୍ଜିଆ ଖୋପ ରହିଛି । ତଳଆଡ଼କୁ ଅନ୍ୟ ଖୋପର ଅର୍ଦ୍ଧାଂଶ (୮ ୧/୨ ଇଞ୍ଚ × ୩ ୩/୪ ଇଞ୍ଚ) ରହିଛି । (୧୧) ଓସାରିଆ ପାଖରେ ଖୋପ ଦୁଇଟିର ଦୁଇପାଖରେ ଦୁଇଟି ନାଗବିଗ୍ରହ ଖୋଦିତ ହୋଇଛନ୍ତି । ଏହାର ଉପରକୁ ଥିବା ଗୋଲକାର ଗୋଜିଆ ଅଂଶ

---

(୧୦) J. A. S B., Vol. XVII,

(୧୧) ପ୍ରଦତ୍ତ ମାପଗୁଡ଼ିକ ସଂଗ୍ରହାଳୟର କାରୁଶିଳ୍ପୀ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ସାହାଯ୍ୟରେ ଗୃହୀତ ।

ଉଷ୍ଣୀଷ ବା **Coping Stone**କୁ ଖାପିବା ପାଇଁ କରାଯାଇଥିଲା । ନାଗମୂର୍ତ୍ତି ହସ୍ତ ବରହୁତ ଓ ସାଞ୍ଚୀ ସ୍ତୂପର ରେଲଙ୍ଗ ଖମ୍ବରେ ଖୋଦିତ ନାଗମାନଙ୍କ ପରି ସୁସ୍ଥ ସବଳ ଓ ସୌଷ୍ଠବାନ୍ୱିତ । ଏହି ପ୍ରସ୍ତରଟି ବର୍ତ୍ତମାନ ଭୁବନେଶ୍ୱରସ୍ଥ ରାଜ୍ୟ ସଂଗ୍ରହାଳୟର ପ୍ରତ୍ନତତ୍ତ୍ୱ ଗ୍ୟାଲେରୀରେ ପ୍ରଦର୍ଶିତ ହେଉଅଛି ।

ବରହୁତ ରେଲଙ୍ଗ ବାଡ଼ର ପୁରୁଷ ବିଗ୍ରହ ଗୁଡ଼ିକ ପରି ଭାସ୍କରେଶ୍ୱର ରେଲଙ୍ଗ ବାଡ଼ର ପୁରୁଷ ବିଗ୍ରହ ମୁଣ୍ଡରେ ପଗଡ଼ି ବ୍ୟବହାର କରିଛନ୍ତି । ଏମାନେ ଉଦୟଗିରିର ରାଣୀଗୁମ୍ଫାରେ ଖୋଦିତ ବୃହତ୍ ମାଡ଼ଥିବା ଓ ଗ୍ରେଟ ଲୁଗା ପିନ୍ଧିଥିବା ପୁରୁଷମାନଙ୍କ ପରି ଦେଖାଯାଆନ୍ତି । ପୁରୁଷଙ୍କ ଯୋଡ଼ହସ୍ତ ଛାତି ଉପରେ ରହି ନ ଯାଇ ନମସ୍କାର କଲାପରି ଆଗକୁ ଲମ୍ବିଛି । ଏଗୁଡ଼ିକର ସମୟ ସମ୍ବନ୍ଧରେ ମତଦ୍ୱୈଧ ହେଲେ-ମଧ୍ୟ ଭାସ୍କରେଶ୍ୱର ମନ୍ଦିର ନିକଟରେ ଭୂଗର୍ଭରୁ ଏଗୁଡ଼ିକର ଆବିଷ୍କାର ଫଳରେ ଏହି ସ୍ଥାନରେ ବା ଏହାର ନିକଟବର୍ତ୍ତୀ କୌଣସି ସ୍ଥାନରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ପୂର୍ବରୁ ଗୋଟିଏ ବୌଦ୍ଧସ୍ତୂପର ଅବସ୍ଥିତି ନିଃସନ୍ଦେହରେ ପ୍ରମାଣିତ ହୁଏ ।

**ଅଶୋକ ଯୁଗର ସିଂହ**— ଉକ୍ତ ପ୍ରାତ୍ନତାତ୍ତ୍ୱିକ ଅନୁସନ୍ଧାନ ସମୟରେ ଡକ୍ଟର ପାଣିଗ୍ରାହୀ ଭାସ୍କରେଶ୍ୱର ମନ୍ଦିର ଉତ୍ତରକୁ ପ୍ରାୟ ୪୦ ଫୁଟ ଦୂରରେ ମାଟି ଖୋଳ ଗୋଟିଏ ପ୍ରକାଣ୍ଡ ପଥର ରଖାଯାଇ ପୋତା ହୋଇଥିବା ଏକ ସିଂହମୂର୍ତ୍ତିର ସମ୍ମୁଖ ଭାଗ ଆବିଷ୍କାର କରିବାରୁ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା । ଏହାର ପିଠି କଟାଯାଇଥିଲେ ମଧ୍ୟ ୩ ଫୁଟ ୭ ଇଞ୍ଚ ଉଚ୍ଚ ଏବଂ ସବୁଠାରୁ ମୋଟା ଅଂଶରେ ୮ ଫୁଟ ୭ ଇଞ୍ଚ ପରିଧି ବିଶିଷ୍ଟ ସମ୍ମୁଖ ଭାଗଟି ରହିଯାଇଛି । ଏହାକୁ ମଧ୍ୟ ଦୁଇଫାଳ କରି ଚିରିଦେବା ପାଇଁ ଉଦ୍ୟମ ହୋଇଥିବାର ଏହାର ପିଠି ଓ ଛାତି ଦେହରେ ଥିବା ଖୋଳ ଛେଦ ଦାଗରୁ ଜଣା-ଯାଉଛି । ଏହାର ସର୍ବାଙ୍ଗରେ ସଜ ଦାଗ ବସିଥିବାରୁ ଏହାର ସୌନ୍ଦର୍ଯ୍ୟ ଓ ମସୃଣତା ନଷ୍ଟ ହୋଇଯାଇଛି । ଏହାର କେଶ କୁଞ୍ଚିତ ଓ

ଏହାର ମୁଖ ସହିତ ଅଶୋକ ଯୁଗର ସିଂହ ମୁଖର ସାମଞ୍ଜସ୍ୟ ରହିଛି ଏବଂ ପେଟ ତଳେ ପ୍ରାଚୀନ ବ୍ରାହ୍ମୀ ଅକ୍ଷରରେ ଏକ ଲେଖ ଖୋଳା-ଯାଇଛି । ଏହାକୁ 'ଶ୍ରୀ ସିଂହବନ୍ଧ' ରୂପେ ଡକ୍ଟର ପାଣିଗ୍ରାହୀ ପାଠ କରନ୍ତି । ଏହି ଅକ୍ଷର ଗୁଡ଼ିକ ପଞ୍ଚମ ଶତାବ୍ଦୀର ପୂର୍ବବର୍ତ୍ତୀ ହୋଇ-ଥିବାରୁ ସେହି ସମୟରେ ଏହି ବିଶାଳ ସିଂହଟିକୁ ନଷ୍ଟ କରିବା ପାଇଁ ନିଷ୍ଠୁର ଉଦ୍ୟମ କରାଯାଇଥିବାର ନିଃସନ୍ଦେହରେ ପ୍ରମାଣିତ ହୁଏ । ଏହି ସିଂହଟି ଯେ ଭୁବନେଶ୍ୱର ଶିବଲିଙ୍ଗ ରୂପେ ପୂଜିତ ଅଶୋକ ସ୍ତମ୍ଭର ଅଗ୍ରଭାଗରେ ସଂରକ୍ଷିତ ଥିଲା; ଏହା ନିର୍ବିବାଦରେ ସ୍ୱୀକାର କରା-ଯାଇ ପାରେ । (୧)

## ଅଶୋକ ସ୍ତମ୍ଭର ଶୀର୍ଷ ମୁକୁଟ (BELL CAPITAL)—

ଭୁବନେଶ୍ୱର ମନ୍ଦିର ଠାରୁ ପ୍ରାୟ ଏକମାଇଲ ପଶ୍ଚିମକୁ ଥିବା ରାମେଶ୍ୱର ମନ୍ଦିର ନିକଟବର୍ତ୍ତୀ ଅଶୋକ କୁଣ୍ଡର ଉତ୍ତର ପାଖ ହୁଡ଼ାରେ ବହୁକାଳ ହେଲା ଏକ ଶୀର୍ଷ ମୁକୁଟ (Bell Capital) ଅଯତ୍ନ ଭାବରେ ପଡ଼ିରହିଥିଲା । ୧୯୬୦ ମସିହାରେ ଏହାକୁ ଏଠାରୁ ନିଆଯାଇ ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପ୍ରବେଶ ଫାଟକ ନିକଟରେ ରଖାଯାଇଛି । ଏହାର ଉଚ୍ଚତା ୩୨ ଇଞ୍ଚ ଏବଂ ଏହାର ମୋଟା ଅଂଶର ପରିଧି ୧୯ 'ଫୁଟ ୫ ଇଞ୍ଚ । ଏହାର ତଳପଟ ଗୋଲାକାର ଗର୍ତ୍ତ ଥିବାରୁ ଏକ ଗୋଲାକାର ସ୍ତମ୍ଭର ଅଗ୍ରଭାଗରେ ଏହା ସ୍ଥାପିତ ହୋଇଥିବାର ଜଣାଯାଏ । ଏହାର ଉପରିଭାଗ ସମତଳ ଓ ଗୋଲ । ଏହି ବୃତ୍ତାକାର କ୍ଷେତ୍ରର ଉପରେ ବସାଯାଇଥିବା ପଶୁ ମୂର୍ତ୍ତିଟିକୁ ଜବତ କରି ରଖିବା ପାଇଁ ଏହାର ଦୁଇପାଖର ଧାରକୁ ଟିକିଏ ଉଚ୍ଚ କରାଯାଇଥିଲା । ତାହାର କେତେକାଂଶ ଏବେ ଦେଖା-ଯାଏ । ଏହାର କରମଙ୍ଗିଆ ଅଂଶକୁ ଦେଖିଲେ ଏହା ଅଶୋକ ଯୁଗର ଏକ ସ୍ତମ୍ଭ ଉପରେ ରକ୍ଷିତ ହୋଇଥିବାର ସ୍ପଷ୍ଟ ଜଣାଯାଏ ।

(୧) J. A. S, Bengal, Vol. XVII

ବେତିଆର ଚମ୍ପାରନ ଜିଲ୍ଲାର ଲଉରିଆ ନନ୍ଦନଗଡ଼ ଗ୍ରାମରେ ପାଟଳୀପୁତ୍ର-ନେପାଳ ସଡ଼କ ପାର୍ଶ୍ୱରେ ଅଦ୍ୟାପି ଦଣ୍ଡାୟମାନ ଅଶୋକ ସ୍ତମ୍ଭର ଶୀର୍ଷମୁକୁଟ ଦେହରେ ଅବିକଳ ଏପରି କାରୁମଣ୍ଡିଆ କାମ ଦେଖାଯାଏ । ମୁକୁଟର ତଳଅଡ଼କୁ ଥିବା ବୃତ୍ତାକାର ବେଢ଼ ବା ବେଢ଼ ଦେହରେ ବାମରୁ ଦକ୍ଷିଣକୁ ଯଥାକ୍ରମେ— ଏକ ହଂସୀ, ବିକଚ ପଦ୍ମ, ଦ୍ୱିପକ୍ଷଯୁକ୍ତ ହସ୍ତୀ, ସନାଳ ପଦ୍ମ କଳିକା, ଦ୍ୱିପକ୍ଷଯୁକ୍ତ ବ୍ୟାଘ୍ର, ଏକ ପଂକ୍ତିରେ ସନାଳ ପଦ୍ମକଳିକା ଏବଂ ଏକ ଧାବମାନ ସପକ୍ଷ ଅଶ୍ୱ ଖୋଦିତ ହୋଇଛନ୍ତି । ସାଧାରଣତଃ ଅଶୋକ ଯୁଗର ଶୀର୍ଷମୁକୁଟ ଗୁଡ଼ିକରେ ହଂସୀ ଓ ବିକଚ ପଦ୍ମ ଦେଖାଯାଏ । ଅନ୍ୟଗୁଡ଼ିକ ଏଠାରେ ନୂତନ ଭାବରେ ପ୍ରକଟିତ । ଏହି ଚିତ୍ରକର୍ମିକ ଶୀର୍ଷମୁକୁଟ ଓ ଅଷ୍ଟ-କୋଣୋଦ୍ୟତ ଉପୃଷ୍ଠର ସିଂହ ମଣ୍ଡିତ ହୋଇ ଭାସ୍କରେଶ୍ୱର ସ୍ତମ୍ଭ ଅଶୋକ ଯୁଗର ଅସାଧାରଣ ସ୍ଥାପତ୍ୟ ଓ କମନୀୟ ଭାସ୍କର୍ଯ୍ୟର ମୂକସାକ୍ଷୀ ସ୍ୱରୂପ ବହୁକାଳ ସଗୌରବରେ ଦଣ୍ଡାୟମାନ ଥିଲା ।

ଭାସ୍କରେଶ୍ୱର ଶିବଲିଙ୍ଗର ସ୍ଥାପନ ସମ୍ବନ୍ଧରେ ଅଧିକ ତଥ୍ୟ ସଂଗ୍ରହ କରିବା ପାଇଁ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗର ପୂର୍ବ ମଣ୍ଡଳର (Eastern circle) ଅଧୀକ୍ଷ ଶ୍ରୀମତୀ ଦେବଳା ମିତ୍ର ଲିଙ୍ଗର ତଳ ଅଂଶ ଖୋଳାଇଥିଲେ । ଏହି ଖୋଳିବା ଫଳରେ ଜଣାଯାଏ ଯେ, ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଠାରୁ ଅଧିକ ଉଚ୍ଚ ଏହି ସ୍ଥାନରେ ପୂର୍ବେ ଗୋଟିଏ ମାଙ୍କଡ଼ାପଥର ମୁଣ୍ଡିଆ ଥିଲା । ସେହି ମୁଣ୍ଡିଆକୁ ହାଣି ଗୋଟିଏ ଆୟତାକାର ଚଉତରା କରାଯାଇଥିଲା । ଏହି ଚଉତରାର କେନ୍ଦ୍ରସ୍ଥାନରେ ୭ ଫୁଟ ବ୍ୟାସ ବିଶିଷ୍ଟ ଗୋଟିଏ ଗର୍ତ୍ତ ଖୋଳାଗଲା । ଉପରେ ଅର୍ଘ୍ୟପଟ୍ଟ ବା ଶକ୍ତି ସ୍ଥାପନ ପାଇଁ ଏହି ଗର୍ତ୍ତକୁ ଅର୍ଘ୍ୟପଟ୍ଟ ଆକାରରେ ଖୋଳାଯାଇଥିଲା । ଏହି ଗର୍ତ୍ତ ମଧ୍ୟରେ ଶିବଲିଙ୍ଗ ସ୍ଥାପନା କରାଯାଇଥିଲା । ବଦାପଥରରେ ତିଆରି ଏହି ଅର୍ଘ୍ୟପଟ୍ଟର ଉଚ୍ଚତା ଏକଫୁଟରୁ ଅଧିକ ଏବଂ ଏହା ବୃଶଖଣ୍ଡ ପଥରରେ ତିଆରି । ଏହି ଲିଙ୍ଗର ତଳଅଂଶର ପରିଧି ପ୍ରାୟ ୧୨ ଫୁଟ ୮ ଇଞ୍ଚ ଏବଂ ତଳ ଅଂଶ ଅପେକ୍ଷାକୃତ ଅଧିକ ଚିକ୍କଣ । ଏହି ସ୍ତମ୍ଭର ଉପରିଭାଗ ଭଗ୍ନ ଏବଂ

ଏହା ନିକଟ ବା ଦୂରବର୍ତ୍ତୀ କୌଣସି ସ୍ଥାନରୁ ଅଣାଯାଇ ଏହି ଗର୍ତ୍ତରେ ପ୍ରୋଥିତ ହୋଇଥିଲା ।''(୧୩)

ଏହି ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ ଏଠାରେ ପ୍ରଥମରୁ ଥିବା ମାକଡ଼ା ପଥର ମୂର୍ତ୍ତି ଆ ଉପରେ ଅଂଶାଳ ସ୍ତୂପରେ ସ୍ତୂପ ନିର୍ମିତ ହୋଇଥିଲା । ଏହି ସ୍ତୂପକୁ ଭାଙ୍ଗି ଏକ ଗଭୀରଗର୍ତ୍ତ କରାଗଲା । ଏଥିରେ ଗୌରୀପଟ୍ଟାକୃତ ଗର୍ତ୍ତ କରି ଗର୍ତ୍ତ ମଧ୍ୟରେ ସ୍ତମ୍ଭଟିକୁ ନିକଟବର୍ତ୍ତୀ ସ୍ଥାନରୁ ଆଣି ପୋତାଗଲା । ପୋତା ହୋଇଥିବା ଅଂଶଟିରେ ଅଶୋକ ଯୁଗର ଅନ୍ୟ ସ୍ତମ୍ଭ ଗୁଡ଼ିକ ପରି ମସୃଣତା ଅକ୍ଷୁର୍ଣ୍ଣ ରହିଛି । ଶ୍ରୀମତୀ ମିତ୍ର ଏହାର କାରଣ ନିର୍ଣ୍ଣୟ କରି ପାରିନାହାନ୍ତି । ଏହା ସ୍ପଷ୍ଟ ଯେ ସ୍ତମ୍ଭର ଉପର ଅଂଶଟି ଦେଖାଯାଉଛି । ତେଣୁ ମାଟି ଭିତରେ ଥିବା ଅଂଶର ପରିଧି ୧୨'-୯'' ଥିଲେ ମଧ୍ୟ ଉପର ଅଂଶର ପରିଧି ପ୍ରାୟ ୧୨'-୧'' ରହିଛି । ଏପରି ଘଟିବା ଯୋଗୁ ଏହାର ଉପରେ ଥିବା ଚକକ୍ଷଣ ପ୍ରକୃତି ଏବଂ ସ୍ତମ୍ଭରେ ଉତ୍କୀର୍ଣ୍ଣ ଅଶୋକ ଯୁଗର ବ୍ରାହ୍ମୀଲେଖ ମଧ୍ୟ ଲୋପ ପାଇଥିବା ସର୍ବଥା ସମ୍ଭବପର । ଶ୍ରୀମତୀ ମିତ୍ରଙ୍କ ଦ୍ୱାରା ଏହି ଖୋଦନ ଫଳରେ ଏହା ଯେ ପ୍ରଥମେ ଏକ ଅଶୋକସ୍ତମ୍ଭ ଥିଲା ଏହା ନିଃସନ୍ଦେହରେ ପ୍ରମାଣିତ ହେଉଅଛି ।

ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍ଦୀରୁ ପ୍ରବଳ ବୌଦ୍ଧ ବିଦ୍ୱେଷୀ ପାଶୁପତ ମତାବଲମ୍ବୀ ଶୈବମାନଙ୍କର ପ୍ରାଧାନ୍ୟ ପ୍ରତିଷ୍ଠିତ ହେବାରୁ ଅଶୋକ ଯୁଗର ସ୍ତୂପ ସ୍ଥାନରେ ବର୍ତ୍ତମାନ ଅନନ୍ୟସାଧାରଣ ଭାସ୍କରେଶ୍ୱର ମନ୍ଦିର ଉତ୍ତୋଳିତ ହେଲା । ନିକଟବର୍ତ୍ତୀ ସ୍ଥାନରୁ ଅଶୋକ ସ୍ତମ୍ଭର ବୃହଦଂଶକୁ ଆଣି ଏହି ମନ୍ଦିର ମଧ୍ୟରେ ଲିଙ୍ଗ ରୂପେ ପ୍ରୋଥିତ କରାଗଲା । ଏହା ଉପରେ ସ୍ଥାପିତ ବଳଦୃପ୍ତ ବିକ୍ରମଶାଳୀ ସିଂହକୁ ଭାଙ୍ଗି ଓ ଖଣ୍ଡିଆ

(୧ ) A Note on the Bhāskaresvara Linga by Debala Mitra, J. A. S. ( New series ) Vol I, No. I, 1959, pp. 1–2.

ଖାବଗ୍ର ଳର ମାଟି ଭିତରେ ପୋତି ଦିଆଗଲା । ସ୍ତମ୍ଭ ଉପରେ ଥିବା କମଗାପୁ ଶୀର୍ଷ ମୂର୍ତ୍ତିଟିକୁ ବୋହି ନେଇ ପାଶୁପତ ମାନଙ୍କ ପ୍ରଧାନ ଓ ପ୍ରାଚୀନ କେନ୍ଦ୍ରରେ ଥିବା ଅଶୋକ ଙ୍କର ଢୁଡ଼ା ଉପରେ ପକାଇ ଦିଆଗଲା ସ୍ତୂପ ଗୃହପଟେ ଥିବା ରେଲିଙ୍ଗ ବାଡ଼ ନଷ୍ଟଭ୍ରଷ୍ଟ ହୋଇଗଲା । ଏହାର କେତେକାଂଶ ମାତ୍ର ଚେଞ୍ଜଲ ତିଆରି ପରେ ଗୃହପଟକୁ ଖୋଳାଯାଇଥିବା ମାଟି ଭିତରେ ରହି ଯାଇଥିଲା । ଏଥିରେ ଥିବା ବିରାଟ ଯକ୍ଷମୂର୍ତ୍ତିଗୁଡ଼ିକ ଅବହେଳିତ ଭାବରେ ପଡ଼ି ରହିଥିବାରୁ ପରବର୍ତ୍ତୀ କାଳରେ ନାନା-ସ୍ଥାନର ଲୋକେ ଏଗୁଡ଼ିକ ନିଜ ନିଜ ଗାଁକୁ ବୋହି ନେଲେ । ଏହି ଯକ୍ଷ ମୂର୍ତ୍ତି ମଧ୍ୟରୁ ଗୋଟିଏ ନିକଟବର୍ତ୍ତୀ ବଡ଼ଗଡ଼ ଗ୍ରାମରେ ଆଦ୍ୟାପି ପୂଜିତ ହେଉଅଛି । ଏହିପରି ଭାବରେ ଚୋଡଳୀ ଉପକଣ୍ଠରେ ଥିବା ଅଶୋକ ଯୁଗର ଏକ ସ୍ତୂପ ଓ ସ୍ତମ୍ଭ ଲୋପ ପାଇଗଲା ।

ଉତ୍ତର ଭାରତର ବ୍ରାହ୍ମଣ୍ୟ ଧର୍ମର ପ୍ରଧାନ କେନ୍ଦ୍ର ବାରାଣସୀରେ ଏପରି ଧ୍ୱଂସଲୀଳା ଘଟିଥିବାର ଦେଖାଯାଏ । ମହାପୁରୁଷ ଗୌତମ ବୁଦ୍ଧ ବାରାଣସୀ ଠାରୁ ୩ ମାଇଲ ଦୂରବର୍ତ୍ତୀ ଋଷିପତନ ବା ସାରନାଥ ଠାରେ ପ୍ରଥମେ 'ଧର୍ମଚକ୍ର' ପ୍ରବର୍ତ୍ତନ କରିଥିଲେ ବା ସ୍ୱ ଧର୍ମମତ ପ୍ରଚାର କରିଥିଲେ । ଏହାର ସ୍ମାରକ ସ୍ୱରୂପ ଅଶୋକ ଏଠାରେ 'ଧର୍ମ ରାଜିକା' ନିର୍ମାଣ କରିଥିଲେ । ସେଠାରେ ମଧ୍ୟ ଅଶୋକଙ୍କ ଅନୁଶାସନ ଏକ ସ୍ତମ୍ଭଗାତ୍ରରେ ଖୋଦିତ ହୋଇଥିଲା । କିନ୍ତୁ ଉକ୍ତ ସ୍ତମ୍ଭର ଭଗ୍ନାଂଶ ଅଦ୍ୟାପି ସେଠାରେ ବିଦ୍ୟମାନ । "The stump of this pillar still stands immediately to the north of the Dharmarājika built by Aśoka" (Asoka—Baruā Part-II, p 7.) କାଶୀ ପରି ଉତ୍କଳର ପ୍ରସିଦ୍ଧ ଶୈବ କ୍ଷେତ୍ର ଗୁପ୍ତକାଶୀରେ ମଧ୍ୟ ଅଶୋକ ସ୍ତମ୍ଭର ଏପରି ଦୁର୍ଦ୍ଦଶା ଘଟିଥିବା, ବୌଦ୍ଧ ଧର୍ମ ପ୍ରତିଦ୍ୱନ୍ଦ୍ୱିତା ଯୁଗରେ ସର୍ବଥା ଅସମ୍ଭବରେ ।

## ଭାସ୍କରେଶ୍ୱର ମନ୍ଦିର ନିକଟବର୍ତ୍ତୀ ପଞ୍ଚପାଣ୍ଡବ ଗୁମ୍ଫା—

ପୂର୍ବରୁ ଆଲୋଚିତ ଭାସ୍କରେଶ୍ୱର ଶିବଲିଙ୍ଗର ପ୍ରାୟ ଦୁଇ ଫର୍ଲଙ୍ଗ ପଶ୍ଚିମକୁ ଥିବା ଦୁଇଟି ଉଚ୍ଚ ମାଙ୍କଡ଼ା ପଥର ଟାଙ୍ଗିରେ

ପ୍ରାଚୀନ ଯୁଗରେ ଖୋଦିତ ଅନେକ ଗୁଡ଼ିଏ ଗୁମ୍ଫା ଦେଖାଯାଏ । ସେଥି-ମଧ୍ୟରୁ ଅଧିକାଂଶ ଲୋପ ପାଇଗଲାଣି । ଆଜି କେତେକ ପାଖ ଟାଙ୍ଗୀରୁ ପଥର କାଟିବାରୁ କ୍ରମଶଃ ଭଙ୍ଗି ନଷ୍ଟ ହୋଇଯାଉଛି । କେବଳ 'ପଞ୍ଚ-ପାଣ୍ଡବ ଗୁମ୍ଫା' ନାମରେ ବିଖ୍ୟାତ ଗୁମ୍ଫାଗୁଡ଼ିକ ଓ ତାହାର 'ପଶ୍ଚିମକୁ ଦୁଇଧାଡ଼ି ଗୁମ୍ଫା ଏପର୍ଯ୍ୟନ୍ତ ପ୍ରାୟ ଅକ୍ଷୁର୍ଣ୍ଣ ରହିଛି । ପ୍ରଥମେ ୧୯୩୫ ମସିହାରେ ଏହି ଲେଖକ ବହୁ କଷ୍ଟ ସହ୍ୟକରି ଏଗୁଡ଼ିକ ଆବିଷ୍କାର କରିଥିଲେ ଏବଂ ଏ ସମ୍ପର୍କରେ ଏକ ଇଂରେଜୀ ପ୍ରବନ୍ଧ ଅଧୁନାଲୁପ୍ତ 'ବୈତରଣୀ' ପତ୍ରିକାରେ ପ୍ରକାଶ କରିଥିଲେ । (୧୪)

ଦକ୍ଷିଣାଭିମୁଖ 'ପଞ୍ଚପାଣ୍ଡବ ଗୁମ୍ଫା' ପ୍ରକୃତରେ ତିନୋଟି ଗୁମ୍ଫାକୁ ନେଇ ଗଠିତ । ପୂର୍ବ ପଟରେ ଥିବା ପ୍ରଥମ ଗୁମ୍ଫାଟି (୧୭'୯'' × ୭'୭'' × ୫'୯'') ମଝିରେ ଥିବା ସବୁଠାରୁ ବଡ଼ ଗୁମ୍ଫାରେ (୨୦' × ୧୩' × ୯'' × ୫'୮'') ତିନୋଟି ପ୍ରବେଶ ଦ୍ୱାର ଥିବାରୁ ଏହା ତିନୋଟି ଗୁମ୍ଫା ରୂପେ ଗଣାଯାଏ । ଏହି ଗୁମ୍ଫାଟି ବାହ୍ୟ ପରବର୍ତ୍ତୀରେ ଶିବଙ୍କ ଡମ୍ବରୁ ଆକୃତିର ଦୁଇଟି ଖମ୍ବ ଦ୍ୱାରା ତିନୋଟି କୋଠରୀରେ ବିଭକ୍ତ ହୋଇଅଛି । ଖମ୍ବ ଦୁଇଟି ପ୍ରାଚୀନ ଯୁଗର କାଠ ତିଆରି ଖମ୍ବର ଅନୁ-କରଣରେ ନିର୍ମିତ ହୋଇଥିବାର ଜଣାଯାଏ । ଏହି ଗୁମ୍ଫାରେ ଏକ ପୀଠ ଉପରେ ଷଷ୍ଠ ଶତାବ୍ଦୀରେ ନିର୍ମିତ ପାଶୁପତାଚାର୍ଯ୍ୟ ନକୁଲୀଶଙ୍କ ବିଗ୍ରହ ପୂଜିତ ହେଉଥିବାର ଦେଖାଯାଏ । ପଶ୍ଚିମକୁ ଥିବା ଗୁମ୍ଫା (୧୭'' × ୭'' × ୫'୮'') ଏହି ପାଞ୍ଚଟି ଗୁମ୍ଫା ଆଗକୁ ୯ ଫୁଟ ଲମ୍ବ ଓ ୧୧ ଫୁଟ ଓସାର ଗୋଟିଏ ବାରଣ୍ଡା ଥିଲା । କିନ୍ତୁ ଏହା ଉପରେ ଥିବା ଛାତଟି କାଳକ୍ରମେ ଭାଙ୍ଗି ଲୋପ ପାଇଗଲାଣି । ବାରଣ୍ଡାରେ ଥିବା ଗୋଲକାର ଛଅଟି ମାଙ୍କଡ଼ା ପଥର ଖମ୍ବର ତଳ ଅଂଶ ମାତ୍ର ରହିଛି । ଏହା ସମ୍ମୁଖରେ ପଥର

---

(୧୪) 'Some interesting old remains of Bhubaneswar' by Sri K.N. Mahapatra, ୨୨।୧୨-୩୫ ତାରିଖରେ ଲିଖିତ published in 'The Vaitarani' Vol. X, Nos. III & IV, 1936, pp. 52-59.

କଟାଯାଇ ଏକ ଚତୁରଗ ଭରାଯାଇଛି । ପୂର୍ବକୋଣରେ ଉପରକୁ ଯିବାପାଇଁ ଧାଡ଼ିଏ ପାହାଚ ଅଛି ।

ଏହାର ପଶ୍ଚିମକୁ ଅଳ୍ପ ଦୂରରେ ଏହି ଗୁମ୍ଫାଗୁଡ଼ିକ ଅନୁରୂପ ବଢ଼େଇଟି ଗୁମ୍ଫା ଦେଖାଯାଏ । ପ୍ରଥମ ଗୁମ୍ଫାଟି ୨୭ ଫୁଟ ଲମ୍ବ, ୧୭ ଫୁଟ ଓସାର ଓ ୪'୭'' ଉଚ୍ଚ । କିନ୍ତୁ ମଝିରେ ଦୁଇ କାନ୍ଥରେ ବାଟ ଥିବାରୁ ଏହା ତିନୋଟି ଗୁମ୍ଫା ଭାବରେ ସ୍ୱୀକାର ହୁଏ । ପଶ୍ଚିମକୁ ଥିବା ଗୁମ୍ଫାଟି ମାଟିରେ ପୋତି ହୋଇଯାଇଛି । ଏହା ସାମନାରେ ପଥର କଟାଯାଇ ଏକ ଅର୍ଦ୍ଧବୃତ୍ତାକାର ଚତୁରଗ କରାଯାଇଛି ।

ଏହାର ଅଳ୍ପ ପଶ୍ଚିମକୁ ୨୦ ଫୁଟ ଲମ୍ବ, ୧୩'୯'' ଓସାର ଓ ୭' ଉଚ୍ଚ ଗୋଟିଏ ବଡ଼ ଗୁମ୍ଫା ଅଛି । ଏହାର ମଝି କାନ୍ଥରେ ବାଟ ଥିବାରୁ ଏହାକୁ ଦୁଇଟି ଗୁମ୍ଫା ବୋଲି ଧରାଯାଏ । ଏହି ଗୁମ୍ଫାର ଅଳ୍ପ ଦୂରରେ ମୁଣ୍ଡିଆଟି ନୂଆ ରାସ୍ତା ଭିତରେ କଟାଯାଇଛି । ଉତ୍ତର ଓ ଦକ୍ଷିଣରେ ଥିବା ଦୁଇ ମୁଣ୍ଡିଆ ମଧ୍ୟରେ ଥିବା ଗାଳ ଜାଗାରୁ ବର୍ଷାଜଳ ଖଲାସ କରିବା ପାଇଁ ଏହା ଏକ ନାଳର କାର୍ଯ୍ୟ କରୁଥିଲା । ଦକ୍ଷିଣ ତରଫ ମୁଣ୍ଡିଆର ଉତ୍ତର ତରଫରେ ୫ନୋଟି ସ୍ଥାନରେ ଗୁମ୍ଫା ଦେଖାଯାଏ । ପଞ୍ଚପାଣ୍ଡବ ଗୁମ୍ଫା ସାମନାରେ ଅଳ୍ପ ପଶ୍ଚିମକୁ ପ୍ରଥମେ ଦୁଇଟି ଗୁମ୍ଫା ରହିଛି । ତାହାର କେତେ ଗଜ ପଶ୍ଚିମକୁ ଆଉ ତିନୋଟି ଓ ତାର ପଶ୍ଚିମକୁ ଅଳ୍ପ ଦୂରରେ ନଅଟି ବଡ଼ ଗୁମ୍ଫା ଥିବାର ଦେଖାଯାଏ କିନ୍ତୁ ସେଗୁଡ଼ିକ ପୋତି ହୋଇ ପଡ଼ିଲାଣି ।

ଉତ୍ତର ତରଫ ମୁଣ୍ଡିଆରେ ଗୋଟିଏ ସଡ଼କ ଭାସ୍କରେଶ୍ୱର ଲିଙ୍ଗ ପର୍ଯ୍ୟନ୍ତ ଯାଇଥିଲା । ଏହି ବାଟରେ ପଞ୍ଚପାଣ୍ଡବ ଗୁମ୍ଫାର ନିକଟ ପୂର୍ବକୁ ଓ ନାଳର ପଶ୍ଚିମକୁ ଦୁଇଟି ପ୍ରାଚୀନ ବାପୀର ଅବଶେଷ ଦେଖାଯାଏ । ଭାସ୍କରେଶ୍ୱର ଲିଙ୍ଗ ଥିବା ମୁଣ୍ଡିଆର ପୂର୍ବଭାଗରେ କେତେଗୁଡ଼ିଏ ଗୁମ୍ଫା ଥିଲା । କିନ୍ତୁ ପଥର କଟାହେବାରୁ ସେଗୁଡ଼ିକ ଲୋପ ପାଇ-ଯାଇଛି । ଗୁମ୍ଫା ଗୁଡ଼ିକର ଅବସ୍ଥିତି ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ, ଭାସ୍କରେଶ୍ୱର ନିକଟରେ ଥିବା ସ୍ତୂପ ଓ ସ୍ତମ୍ଭ ପୂଜାରେ ନିରତ ଶ୍ରମଣ-

ମାନଙ୍କ ନିବାସ ନିମିତ୍ତ ଏହି ଗୁମ୍ଫାଗୁଡ଼ିକ ଅତି ଯତ୍ନସହକାରେ ଖୋଦିତ ହୋଇଥିଲା ।

## ତୋଷଲୀର ଚତୁଷ୍ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଅନ୍ୟାନ୍ୟ ପ୍ରାଚୀନ ବୌଦ୍ଧକୀର୍ତ୍ତି

### କପିଳପ୍ରସାଦର ନାଗ-ନାଗୀ ମୂର୍ତ୍ତି :—

ଭୁବନେଶ୍ୱର ଦକ୍ଷିଣରେ ଗଙ୍ଗୁଆ ନଦୀର ଅଦୂରରେ ଅବସ୍ଥିତ ସୁନ୍ଦରପଦା ଗ୍ରାମରେ ସଂପୃକ୍ତ ଗୋଲାକାର ଏକ ଢିପକୁ ପରୀକ୍ଷା କରି ଡକ୍ଟର ପାଣିଗ୍ରାହୀ ଏହା ଏକ ପ୍ରାଚୀନ ବୌଦ୍ଧସ୍ତୂପର ଅବଶେଷ ବୋଲି ମତ ପ୍ରକାଶ କରିଥିଲେ । ତାଙ୍କର ଏହି ଅନୁମାନ କପିଳପ୍ରସାଦ ଗ୍ରାମର ଦକ୍ଷିଣ ସୀମାରେ ଏକ ନୂତନ ନିର୍ମିତ ଗୃହରେ ପୂଜା ପାଉଥିବା ନାଗମୂର୍ତ୍ତି ଓ ତାର ପାଖେ ଦୁଇଟି ନାଗୀ ମୂର୍ତ୍ତିର ଅବସ୍ଥିତି ଦ୍ୱାରା ପ୍ରମାଣିତ ହୁଏ । ପ୍ରଥମ ନାଗୀମୂର୍ତ୍ତି (୫'୨'') ଅଣ୍ଟାରେ ଦୁଇ ହାତ ଦେଇ ଠାଣି ଦେଖାଇ ଠିଆ ହୋଇଛି । ସେ ମୋଟା କାନଫୁଲ, ହାର, ବଳୟ ଓ ଗୋଡ଼ଖଡ଼ୁ ପିନ୍ଧିଛି । ତାହା କଟିରେ ସାଧା କମର ବନ୍ଧ ରହିଛି । ପିନ୍ଧିଥିବା ଧୋତିର ପଣତ ଦୁଇଟି ଦୁଇ ଗୋଡ଼ ମଝିରେ କୁଞ୍ଚ ପରି ତଳକୁ ଲମ୍ବିଛି । ଓଢଣିଟି ବେକ ଓ ସ୍ତନ ଉପରେ ପଡ଼ି ଅଣ୍ଟାର ଦୁଇପାଖେ ଜକା ହୋଇ ଦୁଇ ଆଡକୁ ଲମ୍ବିଛି । କେଶ ବିମୁକ୍ତ ଭାବରେ ସଜ୍ଜିତ ହୋଇଛି । ପଛରେ ଦୁଇପଟେ ସାପର ଦେହ ଓ ମୁଣ୍ଡ ଉପରେ ସାପର ପାଞ୍ଚଟି ଫଣା ରହିଛି । ମଝିରେ ଥିବା ନାଗମୂର୍ତ୍ତି (୫'୮''×୨'୬'')ର ମୁଖ ଗୋଲାକାର, ଗାଲ ଫୁଲିକା ଓ ପେଟ ତଳକୁ ଲମ୍ବିଛି । ସେ ବାମ ହାତକୁ ଅଣ୍ଟାରେ ରଖି ଗର୍ବରେ ସ୍ତନ ଫୁଲାଇ ଠିଆ ହୋଇଛି । ଡାହାଣ ହାତ ସ୍ତନ ଉପରେ ରହିଛି । ନାଗୀମୂର୍ତ୍ତି ପରି ତଳକୁ କୁଞ୍ଚ ଲମ୍ବିଥିବା ଧୋତି ପିନ୍ଧା ହୋଇଛି । ମୁଣ୍ଡ ଉପରେ ଗୋଟିଏ ଟୋପର ଅଛି । ଏହା ଉପରେ ପାଞ୍ଚଟି ସାପ ଫଣା । ପିନ୍ଧିଥିବା ଖଡ଼ୁ, କଙ୍କଣ ଓ ହାର ମୋଟା; କଙ୍କଣରେ ଯୋଡ଼ମୁଣ୍ଡ ତିନକୋଣିଆ

ଓ ଉଚ୍ଚ। ଉଭୟପଟ ଦୁଇପାଟକୁ ଲମ୍ବିଛି । ଅଣ୍ଟାରେ ଗୋଟିଏ ଗାମୁଛା ଗୁଡ଼ାଯାଇ ବାମ ପଟରେ ଗଣ୍ଠି ପଡ଼ି ଗାମୁଛାର ଦୁଇକାନ ତଳକୁ ଲମ୍ବିଛି ।

ବାମ ପାଖେ ଥିବା ନାଗୀମୂର୍ତ୍ତିର ତଳ ଅଂଶ ଭଙ୍ଗିଯାଇ (୪'୩'' × ୨'୭'') ଥିଲେ ମଧ୍ୟ ଏହା ପ୍ରଥମ ନାଗୀର ଅନୁରୂପ । କିନ୍ତୁ ତାହାର କୁଣ୍ଡ ନାହିଁ । ଅଣ୍ଟାରେ ଗୋଟିଏ ଲୁଗା ଗୁଡ଼ାଇ ଗଣ୍ଠିଟିକୁ ବାମ ପାଖରେ ରଖି ତାହାର ଦୁଇକାନ ବାମ ଜଂଘ ଉପରକୁ ଲମ୍ବିଛି ।

ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫା ଗୁଡ଼ିକରେ ଖୋଦିତ ପୁରୁଷ ଓ ନାରୀ ବିଗ୍ରହ ତୁଳନାରେ ଆଲୋଚ୍ୟ ନାଗ ଓ ନାଗୀ ମୂର୍ତ୍ତି ଗୁଡ଼ିକର ଖୋଦନ ଶୈଳୀ ଅନୁନ୍ନତ ଧରଣର ହୋଇଥିବାରୁ ଏଗୁଡ଼ିକ ପ୍ରାଚୀନତର । ଏହିପରି ଦୁଇଟି ନାଗମୂର୍ତ୍ତି ଉକ୍ତର ପାଣିଗ୍ରାହୀଙ୍କ ଦ୍ୱାରା ସୁନ୍ଦରପଦା ଓ ଭୁବନେଶ୍ୱରରୁ ସଂଗୃହୀତ ହୋଇ ପ୍ରାଦେଶିକ ସଂଗ୍ରହାଳୟରେ ସଂରକ୍ଷିତ ହୋଇଅଛି । ବରହୁତ, ସାଞ୍ଚୀ ଓ ଅମରାବତୀ ସ୍ତୂପରେ ଥିବା ନାଗମୂର୍ତ୍ତି ଉପରେ ତିନ, ପାଞ୍ଚ ବା ସାତଟି ଫଣା ଓ ନାଗୀମୂର୍ତ୍ତି ଉପରେ ଗୋଟିଏ ଫଣା ଟେକ ଥିବାର ଦେଖାଯାଏ । କିନ୍ତୁ ସେଗୁଡ଼ିକ ପଛ ପଟେ ସାପ ଦେହର ଚକା ଦେଖାଯାଏ ନାହିଁ । (୧୪) ଉପରେ ଫଣା ବାହାର କରି ପଛପଟେ ଚକା ମାରିଥିବା ନାଗ ବିଗ୍ରହ ମଥୁରାରୁ ମିଳିଛି ଏବଂ ସେଗୁଡ଼ିକର ଭାସ୍କର୍ଯ୍ୟ ଉନ୍ନତ ଧରଣର । କିନ୍ତୁ ସୁନ୍ଦରପଦାରୁ ମିଳିଥିବା ପେଚୁଆ, ମୋଟାସୋଟା ନାଗମୂର୍ତ୍ତି, ମୋଟ ମୋଟା ଅଳଙ୍କାର ଧୋତି, ଉତ୍ତରୀ ଓ ଗାମୁଛା ପିନ୍ଧିଥିବା ନାଗୀମୂର୍ତ୍ତିର ମୌର୍ଯ୍ୟ-ଯୁଗର ଯକ୍ଷମୂର୍ତ୍ତି ସହିତ ଆକୃତି, ବେଶଭୂଷା ଦୃଷ୍ଟିରୁ ବିଶେଷ ସାମଞ୍ଜସ୍ୟ ଲକ୍ଷିତ ହୁଏ । ତେଣୁ ଅଶୋକଙ୍କ ରାଜତ୍ୱ କାଳରେ ସୁନ୍ଦରପଦାରେ ନିର୍ମିତ ସ୍ତୂପର ବେଷ୍ଟନୀଗୁଡ଼ିକରେ ଏହି ନାଗ ଓ ନାଗୀ ମୂର୍ତ୍ତି ଖଞ୍ଜା ଯାଇଥିବାର ଆପାତତଃ ସ୍ଥିର କରାଯାଇପାରେ ।

---

(୧୪) Three Nāga images from Bhubaneswar by S.C. De, O.H.R J. Vol. III No. 1, 1954, pp. 1-5.

## ଖଣ୍ଡଗିରିର ଯକ୍ଷମୂର୍ତ୍ତି —

ଖଣ୍ଡଗିରି ନିକଟବର୍ତ୍ତୀ ଡୁମୁଡୁମା ଗ୍ରାମରୁ ୫'୭'' ଉଚ୍ଚତା ବିଶିଷ୍ଟ ପୃଥୁଳକାୟ ଲମ୍ବୋଦର ବିଶିଷ୍ଟ ଦୁଇଟି ଯକ୍ଷମୂର୍ତ୍ତି ଓଡ଼ିଶାର ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସଂଗ୍ରହ କରିଥିଲେ । ସେଗୁଡ଼ିକ ସହିତ ସାଞ୍ଚୀରେ ଥିବା ପୃଥିବୀ ବିଖ୍ୟାତ ବୌଦ୍ଧ ସ୍ତୂପର ପଶ୍ଚିମ ପ୍ରବେଶ ଦ୍ୱାରର ଉଭୟ-ପାର୍ଶ୍ୱସ୍ଥ ସ୍ତମ୍ଭ ଉପରେ ସ୍ଥାପିତ ଯକ୍ଷମୂର୍ତ୍ତି ଗୁଡ଼ିକର ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସେଗୁଡ଼ିକ ପ୍ରଥମାବସ୍ଥାରେ ବୋଧହୁଏ ଖଣ୍ଡଗିରି ପାହାଡ଼ ନିକଟରେ ନିର୍ମିତ ଓ ଅଧୁନା ଲୁପ୍ତ ମୌର୍ଯ୍ୟ ଯୁଗର କୌଣସି ଏକ ସ୍ତୂପକୁ ମଣ୍ଡନ କରୁଥିବା ସ୍ଥିର କରାଯାଇ ପାରେ । ଏହି ପ୍ରାଚୀନ ଯକ୍ଷଦ୍ୱୟ ଅଧୁନା ଭୁବନେଶ୍ୱରସ୍ଥ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ।

## ପାଞ୍ଚଗା ଯକ୍ଷମୂର୍ତ୍ତି —

ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଓ ଏହି ଲେଖକ ୧୯୫୭ ମସିହାରେ ପ୍ରାକ୍ତତ୍ତ୍ୱିକ ଅନୁସନ୍ଧାନ କରିବା ସମୟରେ ଗଙ୍ଗୁଆ ନଦୀ ଓ ଭଙ୍ଗିଆ ଭଙ୍ଗିଆ ଯୋଡ଼ର ସଂଗମ ସ୍ଥଳରେ ଅବସ୍ଥିତ 'ପାଞ୍ଚଗାଁ'ର ଉପକଣ୍ଠରେ ୫'୭'' ଉଚ୍ଚତା ବିଶିଷ୍ଟ ଦଣ୍ଡାୟମାନ ଅନ୍ୟ ଏକ ଯକ୍ଷମୂର୍ତ୍ତି ଆବିଷ୍କାର କରିଥିଲେ । ଡୁମୁଡୁମାର ଯକ୍ଷଦ୍ୱୟ ସହିତ ଏହାର ବିଶେଷ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏହି ମୂର୍ତ୍ତିଟି ବର୍ତ୍ତମାନ ଗ୍ରାମ ଦେବତା 'ଗୋପାଳୁଣୀ' ନାମରେ ପୂଜିତ ହେଉଛନ୍ତି । ଏହାର ମସ୍ତକ ଉପରେ ଖୋଳା ଯାଇଥିବା ୧'୭''×୧'୭'' ଚୌପକୁ ଦେଖିଲେ ଏହା ଉପରେ ଏକ ଲମ୍ବ ପାଟ ପଥର ଖଞ୍ଜା ଯାଇଥିବା ସ୍ପଷ୍ଟ ଜଣାଯାଏ । ତେଣୁ ଏହାର ଅନୁରୂପ ଯକ୍ଷମୂର୍ତ୍ତି ଏପର୍ଯ୍ୟନ୍ତ ଅଜ୍ଞାତ ଅବସ୍ଥାରେ କୌଣସି ସ୍ଥାନରେ ଥିବାର ମନେହୁଏ । ଏହା ମଣ୍ଡନ କରୁଥିବା ସ୍ତୂପଟି ଏପର୍ଯ୍ୟନ୍ତ ଅନାବିଷ୍କୃତ । ପାଞ୍ଚଗାଁ ମୁଣ୍ଡିଆ ଦୂରକୁ ଗୋଟିଏ ବୌଦ୍ଧ ସ୍ତୂପ ପରି ଦେଖାଯାଉଥିଲେ ମଧ୍ୟ ଏହାର ଆୟତନ ଓ ଉଚ୍ଚତା

ସାଧାରଣ ସ୍ତୂପ ତୁଳନାରେ ଅତ୍ୟଧିକ । ଆଜି ମଧ୍ୟ ଏହି କୁଦଟି ପ୍ରାକୃତିକ, ମନୁଷ୍ୟକୃତ ନୁହେଁ । ପୂର୍ବେ କପିଳପ୍ରସାଦ ଗ୍ରାମ ଦକ୍ଷିଣ ମୁଣ୍ଡରୁ ଗୋଟିଏ ଉଚ୍ଚା ଓ ଓସାରିଆ ହୁଡ଼ା ପାଞ୍ଚଗାଁର ଉତ୍ତର ସୀମା ପର୍ଯ୍ୟନ୍ତ ଲମ୍ବିଥିଲା । ଏହାର ନାମ 'ଖାଇ ହୁଡ଼ା' । ଏହି ହୁଡ଼ାର ବାମ ମୁଣ୍ଡରେ ଅତି ପ୍ରାଚୀନ 'ନାଗନାଗୀ ମୂର୍ତ୍ତିଦ୍ୱୟ' ଓ ଦକ୍ଷିଣ ସୀମାରେ ଆଲୋଚ୍ୟ ଯକ୍ଷ, ମୂର୍ତ୍ତିର ଅବସ୍ଥିତି ଦେଖି ସ୍ୱତଃ ଧାରଣା ହୁଏ ଯେ, ଯକ୍ଷମୂର୍ତ୍ତିଟି ପ୍ରଥମେ ସୁନ୍ଦରପଦାରେ ଅବସ୍ଥିତ ଅଧୁନା ଲୁପ୍ତ ସ୍ତୂପର ରେଲିଙ୍ଗବାଡ଼କୁ ମଣ୍ଡନ କରୁଥିଲା । ପରବର୍ତ୍ତୀ କାଳରେ ଏହା ପାଞ୍ଚଗାଁକୁ ହୁଡ଼ା ନାମରେ ପରିଚିତ ରାଜପଥରେ ସ୍ଥାନାନ୍ତରିତ ହୋଇଥିବା ସମ୍ଭବପର ।

## ଅତ୍ରିଗଡ଼ ନିକଟରେ ପ୍ରାଚୀନ ବୌଦ୍ଧ ଶୈଳନିବାସ —

ମାଦଳାପାଞ୍ଜିରୁ ଜଣାଯାଏ ଯେ, ପରଙ୍ଗ ଦଣ୍ଡପାଟସ୍ଥ ଅତ୍ରିଗଡ଼ ପର୍ବତ ଓ ଧଉଳ ପର୍ବତର ଗୁମ୍ଫା ଗୁଡ଼ିକରେ ମଦନ ମହାଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ସିଦ୍ଧ ବୌଦ୍ଧମାନେ ବାସକରୁଥିଲେ । (୧୬) ଅତ୍ରିଗଡ଼ ପାହାଡ଼ରେ ଥିବା ଗୁମ୍ଫା ଗୁଡ଼ିକ ଦେଖିଲେ ଏହା ବୌଦ୍ଧ ଯୁଗର ଏକ ଶୈଳନିବାସ ପରି ଦିଶେ ।

ମାଦଳା ପାଞ୍ଜିରୁ ଆଜି ମଧ୍ୟ ଜଣାଯାଏ ଯେ, କାନ୍ତପଡ଼ା ଛତ୍ରେଶ୍ୱରୀ ପର୍ବତ ଉପରେ ପ୍ରତିଷ୍ଠିତ ବିଷ୍ଣୁ ସ୍ୱାମୀ ନଙ୍କଙ୍କ ପଶ୍ଚିମ ଦିଗସ୍ଥ ସାଆଁଳା ପର୍ବତ ଓ ଗାଆଁଗ ପର୍ବତ ଓ ଅନ୍ୟ ଏକ ପାର୍ଶ୍ୱରେ ଅବସ୍ଥିତ କଣ୍ଟିବଂଶେଶ୍ୱର ପର୍ବତ ଓ ଯମୁନା ଝାଡ଼ପଡ଼ା ପର୍ବତରେ ଥିବା କନ୍ଦର ଓ ଗୁମ୍ଫା ଗୁଡ଼ିକରେ ସର୍ବଜ୍ଞ ସିଦ୍ଧ ବୌଦ୍ଧମାନେ ମଦନ ମହା-ଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଅବସ୍ଥାନ କରୁଥିଲେ । (୧୭) ସ୍ୱର୍ଗତଃ ଆଚାର୍ଯ୍ୟ ଓ ଏହି ଲେଖକ ଅତି ଚମତ୍କାର କାରୁକାର୍ଯ୍ୟ ମଣ୍ଡିତ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ବିମାନ ଓ ଜଗମୋହନ ବିଶିଷ୍ଟ କଣ୍ଡିକଦେଶ୍ୱର ମନ୍ଦିରଟିକୁ

---

(୧୬) ମାଦଳା ପାଞ୍ଜି — ପୃ ୨୫

(୧୭) „ — ପୃ ୨୫

ତନ୍ନ ତନ୍ନ କରି ପରୀକ୍ଷା କରିଥିଲେ ମଧ୍ୟ ସମସ୍ତ ଅଭ୍ରବର୍ତ୍ତ ଗୁମ୍ଫା ଗୁଡ଼ିକର ସନ୍ଧାନ କରି ପାରି ନ ଥିଲେ । ମଗଧ (ବିହାର)ର ଏକ ପ୍ରାଚୀନତମ ବୌଦ୍ଧକେନ୍ଦ୍ର ରାଜଗୃହ ପରି ଏହା ଚତୁର୍ଦ୍ଦିଗରେ ବିଭିନ୍ନ ପର୍ବତ ଦ୍ୱାରା ବେଷ୍ଟିତ ହୋଇଥିବାରୁ ବିନ୍ଧ୍ୟେଶ୍ୱରୀ ପର୍ବତ ନିକଟରେ ଉପତ୍ୟକାରେ ପ୍ରାଚୀନ ବୌଦ୍ଧ ଯୁଗରେ ଏକ ଶୈଳ ବିହାର ନିର୍ମିତ ହୋଇଥିବା ଆପାତତଃ ସ୍ଥିର କରାଯାଇ ପାରେ ।

## ବରୁଣେଇ ଗୁମ୍ଫା —

ଖୁର୍ଦ୍ଧା ନିକଟବର୍ତ୍ତୀ ବରୁଣେଇ ପାହାଡ଼ର ଦକ୍ଷିଣ ପାର୍ଶ୍ୱରେ ଏକ ବିଶାଳ ନୈସର୍ଗିକ ଶିଳା ଗହ୍ୱରକୁ ଋଷିମୁନିଙ୍କ ବାସୋପଯୋଗୀ ଶୈଳ-ନିବାସରେ ପରିଣତ କରାଯାଇଥିବା ଜଣାଯାଏ । କିଟୋ ସାହେବ ୧୮୩୮ରେ ଏହାକୁ ପ୍ରଥମେ ଆବିଷ୍କାର କରିଥିଲେ । ଏହା 'ପାଣ୍ଡବ ଘର' ବା 'ପାଣ୍ଡବ ଗୁମ୍ଫା' ନାମରେ ଅଭିହିତ ହେଉଅଛି । (୧୮) ଧଉଳୀର ଅଶ୍ୱତ୍ଥାମା ପାହାଡ଼ ଦେହରେ ଅଶୋକଙ୍କ ରାଜତ୍ୱରେ ଖୋଦିତ ଗୁମ୍ଫା ଗୁଡ଼ିକ ମଧ୍ୟ 'ପଞ୍ଚ ପାଣ୍ଡବ ଗୁମ୍ଫା' ନାମରେ ନାମିତ । ଅଶୋକ ସ୍ତମ୍ଭ ଅଦୂରବର୍ତ୍ତୀ ପାଞ୍ଚଟି ଗୁମ୍ଫାକୁ ମଧ୍ୟ 'ପଞ୍ଚ ପାଣ୍ଡବ ଗୁମ୍ଫା' ବୋଲି ଲୋକେ କହୁଛନ୍ତି । ଏହି ନାମ ସାମଞ୍ଜସ୍ୟ ଯୋଗୁଁ ଏହାକୁ ପ୍ରାଚୀନ ବୌଦ୍ଧ ଯୁଗର ଏକ ପାନ୍ଥନିବାସ ରୂପେ ଗ୍ରହଣ କରାଯାଇ ପାରେ ।

ପ୍ରତ୍ନତତ୍ତ୍ୱବିତ୍ ବେଗଲାର ସାହେବ ୧୮୭୪ ଖ୍ରୀଷ୍ଟାବ୍ଦରେ ଏହାକୁ ପରିଦର୍ଶନ କରି ବରୁଣେଇ ପାହାଡ଼ର ସର୍ବନିମ୍ନାଂଶରେ ଓ ଏକ ହାତୀ ସଡ଼କ ନିକଟରେ ଥିବା ଉକ୍ତ ଗୁମ୍ଫାରେ ବହୁକାଳ ପର୍ଯ୍ୟନ୍ତ ସାଧୁସନ୍ଥ-ମାନେ ଅବସ୍ଥାନ କରୁଥିବାର ସ୍ଥିର କରିଥିଲେ । ଏଠାରେ ସେ ବିଭିନ୍ନ ଯୁଗର ବର୍ଣ୍ଣମାଳାରେ ଉତ୍କୀର୍ଣ୍ଣ ୧୦ଟି ସ୍ୱତନ୍ତ୍ର ଲେଖ ଦେଖିଥିଲେ । ସେଥିମଧ୍ୟରୁ ଅଧିକାଂଶ ୩।୪ ଟି ଅକ୍ଷର ବିଶିଷ୍ଟ ଓ ଅଳ୍ପ କେତେକ ଦୁଇ

(୧୮) J. A. S. Vol. VII, 1838.

ବା ଭନ ଧାଡ଼ିରେ ଖୋଦିତ । ଏ ସ୍ଥାନରେ ସାମୟିକ ଅବସ୍ଥାନ କରୁଥିବା ତୀର୍ଥଯାତ୍ରୀମାନଙ୍କ ଦ୍ୱାରା ଏଗୁଡ଼ିକ ଲିଖିତ ହୋଇ (Pilgrims' records) ବୋଲି ସେ ମତ ପ୍ରକାଶ କରିଥିଲେ । ଏହି ଗୁମ୍ଫାରେ ଧାଡ଼ି ଧାଡ଼ି ହୋଇ ଏକାବେଳେକେ ଅନେକ ଯାତ୍ରୀ ବା ସନ୍ନ୍ୟାସୀଙ୍କ ଶୟନ ପାଇଁ ପଥର ଖଟିଆ ସବୁ କଟାଯାଇଅଛି । ଏହି ଲେଖ ଗୁଡ଼ିକ ମଧ୍ୟରୁ ଭକୋଟିରେ ଗୁପ୍ତ ପରଯୁଗରେ ବର୍ଣ୍ଣମାଳା ବ୍ୟବହାର ଏହାର ପ୍ରାଚୀନତ୍ୱକୁ ସାବ୍ୟସ୍ତ କରେ । (୧୯)

## ନଗଜ ଶୈଳନିବାସ —

କୋଶଳୀର ଭୌଗଧର୍ମପ୍ଟ ଯୁଗରେ ଦକ୍ଷିଣରେ ବରୁଣେଇ ଓ ଉତ୍ତରରେ ନଗଜ ପାହାଡ଼ ପର୍ଯ୍ୟନ୍ତ ବହୁ ଶୈଳଗାତ୍ରରେ ଗୁମ୍ଫାମାନ ଖୋଦିତ ହୋଇଥିଲା । ନଗଜ ପାହାଡ଼ ମହାନଦୀ ଓ କୋଣ ଭୂମିର ମିଳିସ୍ଥଳରେ ଓ ମହାନଦୀର ପ୍ରଧାନ ଶାଖା କାଠଯୋଡ଼ିର ଉତ୍ପତ୍ତି ସ୍ଥଳର ଅଦୂରରେ ପ୍ରାଚୀନ କୋଶଳୀ-ପାଟଳୀପୁତ୍ର ରାଜପଥ ନିକଟରେ ଏକ ପ୍ରଧାନ କେନ୍ଦ୍ର ଥିଲା । ଏହା ମଧ୍ୟ ଜଳପଥ ଦ୍ୱାରା (କାଠଯୋଡ଼ି-ଗଙ୍ଗା)ର ଯୋଗ ଦେଇ ଉପରେ ଅବସ୍ଥିତ ଧଉଳୀ ପାହାଡ଼ ସହିତ ସଂଯୁକ୍ତ । ଏଠାରେ ପ୍ରାଚୀନ ବୌଦ୍ଧ ଯୁଗରେ ଅନେକ ଗୁଡ଼ିଏ ଗୁମ୍ଫା କଟାଯାଇ-ଥିଲା । ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗରେ ଏହି ଗୁମ୍ଫା ଗୁଡ଼ିକ ଉପରେ 'ସିଦ୍ଧେଶ୍ୱର' ନାମକ ଏକ ଶୈବ ମଠର ପତନ ହୋଇଥିଲା । ଏହାର ମାହାତ୍ମ୍ୟ 'କପିଳ ସଂହିତା'ରେ ବର୍ଣ୍ଣିତ ହୋଇଅଛି ।

## ଉତ୍କଳରେ ମହାଯାନ ବୌଦ୍ଧ ମତର ପ୍ରସାର —

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ମହାପୁରୁଷ ଗୌତମ ବୁଦ୍ଧଙ୍କ ପ୍ରଚାରିତ ଧର୍ମମତ ତାତ୍ତ୍ୱିକ ବିଶ୍ଳେଷଣର ପାର୍ଥକ୍ୟ ଯୋଗୁଁ 'ହୀନଯାନ' ଓ

(୧୯) Archaeological Survey of India, Vol. III, by Beglar, p. 99.

‘ମହାଯାନ’ ଏପରି ଦୁଇଟି ମୁଖ୍ୟ ଶାଖାରେ ବିଭକ୍ତ ହୋଇ ଯାଇଥିଲା । ମୁଖ୍ୟତଃ ପ୍ରାଚୀନ ପନ୍ଥୀମାନେ ହୀନଯାନୀ ଓ ନୂତନ ପନ୍ଥୀମାନେ ମହାଯାନୀ ନାମରେ ଅଭିହିତ ହେଲେ । ହୀନଯାନ ମତାବଲମ୍ବୀମାନେ ବୁଦ୍ଧଙ୍କୁ ଶୁଦ୍ଧୋଦନଙ୍କ ପୁତ୍ର ଓ ଏକ ପ୍ରଖ୍ୟାତ ଧର୍ମ ପ୍ରଚାରକ ରୂପେ ସ୍ୱୀକାର କରି ଭକ୍ତି ପ୍ରଦର୍ଶନ କରୁଥିଲେ । ସେମାନଙ୍କ ମତରେ ଏହା ଥିଲା ‘ଅର୍ହତଯାନ’ ବା ସଂସାର ତ୍ୟାଗୀ ବୌଦ୍ଧ ଭିକ୍ଷୁମାନଙ୍କର ସଦାଚରଣ ପାଇଁ ବିଭିନ୍ନ ବିଧି ବ୍ୟବସ୍ଥା । କିନ୍ତୁ ମହାଯାନ ମତାବଲମ୍ବୀମାନେ ବୁଦ୍ଧଙ୍କୁ ଅଖିଳ ବ୍ରହ୍ମାଣ୍ଡର ନିୟନ୍ତା, ସର୍ବଶକ୍ତିମାନ, ସର୍ବଜ୍ଞ ଓ ପରମ କାରୁଣିକ ରୂପେ ଗ୍ରହଣ କରି ତାଙ୍କର ମହାତ୍ମ୍ୟ ସର୍ବତ୍ର ଭକ୍ତିମୂଳକ ଭାବରେ ପ୍ରଚାର କରିବାକୁ ଲାଗିଲେ । ସେମାନେ ବୌଦ୍ଧ ଧର୍ମକୁ ଭିକ୍ଷୁସଂଘର ତାତ୍ତ୍ୱିକ ଆଲୋଚନା ମଧ୍ୟରେ ସୀମାବଦ୍ଧ ନ ରଖି ଏହାକୁ ଜନସାଧାରଣଙ୍କ ଚେତନାସ୍ତରକୁ ଆଣି ଏକ ସହଜ, ସରଳ ଓ ଲୋକପ୍ରିୟ ଧର୍ମରେ ପରିଣତ କରିଥିଲେ । ସେମାନଙ୍କ ମତରେ ଜଣେ ସାଧାରଣ ମାନବ ସତ୍‌ଜୀବନ ଯାପନ ଦ୍ୱାରା କ୍ରମଶଃ ଉଚ୍ଚରୁ ଉଚ୍ଚତର ସୋପାନରେ ଆରୋହଣ କରି ଶେଷରେ ବୁଦ୍ଧତ୍ୱ ଲାଭ କରି ପାରିବ । ଏହି ମତର ପ୍ରବଳ ପ୍ରଚାର ସର୍ବସାଧାରଣଙ୍କୁ ଉକ୍ତ ମତ ଗ୍ରହଣ କରିବା ପାଇଁ ଉଦ୍‌ବୁଦ୍ଧ କରିଥିଲା ।

ସ୍ୱୟଂ ବୁଦ୍ଧ ପ୍ରତିମା ପୂଜାର ଘୋର ବିରୋଧୀ ଥିଲେ । ତେଣୁ ତାଙ୍କର ମହାପରିନିର୍ବାଣ ପରେ ତାଙ୍କର ଶିଷ୍ୟମାନେ ମହାପୁରୁଷଙ୍କ ଦନ୍ତ, ନଖ, କେଶ, ଅସ୍ଥି ଓ ଚିତାଭସ୍ମ ପ୍ରଭୃତି ଭାରତରେ ବିଭିନ୍ନ ସ୍ଥାନରେ ସ୍ତୂପ ନିର୍ମାଣ ପୂର୍ବକ ସେଥିରେ ସଂରକ୍ଷିତ କରି ପୂଜା କରୁଥିଲେ ଏତଦ୍‌ବ୍ୟତୀତ ‘ବୋଧିଦ୍ରୁମ’ ସେମାନଙ୍କ ଦ୍ୱାରା ପବିତ୍ର ସଙ୍କେତ ରୂପେ ପୂଜିତ ହେଉଥିଲା । କିନ୍ତୁ ମହାଯାନୀ ବୌଦ୍ଧମାନେ ବୁଦ୍ଧ, ବୋଧିସତ୍ତ୍ୱ ପ୍ରଭୃତିଙ୍କର ଅତି କମନୀୟ ବିଶାଳ ମୂର୍ତ୍ତିମାନ ନିର୍ମାଣ କରି ସେମାନଙ୍କ ବହୁ ଆଡ଼ମ୍ବରରେ ପୂଜା ଆରାଧନା ପାଇଁ ମନ୍ଦିରମାନ ଭାରତର ସର୍ବତ୍ର ନିର୍ମାଣ କରିଥିଲେ ।

ବୁଦ୍ଧଦେବ ସ୍ୱଧର୍ମମତକୁ ସର୍ବଜନବୋଧ ପାଲିଭାଷା ବା ପଲ୍ଲୀବାସୀଙ୍କ ଭାଷାରେ ପ୍ରଚାର କରିଥିଲେ । ତାଙ୍କ ମହାପରିନିର୍ବାଣ ପରେ

ଏହି ଭାଷାରେ ଶତ ଶତ ଗ୍ରନ୍ଥ ଓ ଲେଖ ଲିଖିତ ହୋଇଥିଲା । କିନ୍ତୁ ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଖ୍ରୀ:ପୂ: ଦ୍ୱିତୀୟ ଓ ପ୍ରଥମ ଶତାବ୍ଦୀରେ ମଗଧର ଶୁଙ୍ଗ ଓ କାଣ୍ୱବଂଶୀୟ ସମ୍ରାଟ୍‌ମାନେ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠା ଓ ବୌଦ୍ଧମତର ଖଣ୍ଡନ ପାଇଁ ସଂସ୍କୃତ ଭାଷାରେ ବହୁଗ୍ରନ୍ଥ ରଚନା କରାଇଥିଲେ । ତେଣୁ ମହାଯାନୀ ବୌଦ୍ଧମାନେ ବୈଦିକ ଯୁଗରୁ ପ୍ରଚଳିତ ଦେବଭାଷା ସଂସ୍କୃତରେ ନିଜର ଧର୍ମମତ ପ୍ରତିପାଦନ ଓ ବ୍ରାହ୍ମଣ୍ୟ ଧର୍ମ ମତର ଖଣ୍ଡନ ପାଇଁ ବହୁ ଉଚ୍ଚକୋଟୀର ଗ୍ରନ୍ଥ ରଚନା କରିଥିଲେ । ପରିଣାମରେ ମହାପୁରୁଷ ବୁଦ୍ଧଙ୍କ ଦ୍ୱାରା ପରିତ୍ୟକ୍ତ ସଂସ୍କୃତ ଭାଷା ପୁନର୍ବାର ମହାଯାନୀ ମାନଙ୍କ ଦ୍ୱାରା ଧର୍ମ ପ୍ରଚାରର ମାଧ୍ୟମ ରୂପେ ଗୃହୀତ ହୋଇଥିଲା ।

ହୀନଯାନୀମାନେ ଧର୍ମରେ ପ୍ରଚଳିତ ବିଭିନ୍ନ ସମାଜ, ବ୍ରତ, ପୂଜା, ଯାତ୍ରା ପର୍ବ ପ୍ରଭୃତିର ଘୋର ବିରୋଧୀ ଥିଲେ । ସରଳ, ସଂଯତ, ପବିତ୍ର, ଆଡମ୍ବରଶୂନ୍ୟ ଜୀବନଯାପନ ସେମାନଙ୍କର ପ୍ରଧାନ ଆଦର୍ଶ ଥିଲା । କିନ୍ତୁ ମହାଯାନୀମାନେ ସ୍ୱ ଧର୍ମମତକୁ ଅଧିକ ଲୋକପ୍ରିୟ କରିବା ପାଇଁ ରଥଯାତ୍ରା ପ୍ରଭୃତି ଆଡମ୍ବରପୂର୍ଣ୍ଣ ବୈଭବପ୍ରଦର୍ଶକ ଯାତ୍ରା ପର୍ବ ଆଦି ପୁନଃ-ପ୍ରଚଳନ କରିଥିଲେ ।

ବୁଦ୍ଧଙ୍କ ପ୍ରଥମ ଦୁଇ ଶିଷ୍ୟ 'ତପସୁ' ଓ 'ଭଲ୍ଲିକ' ନାମକ ଉତ୍କଳ ବାସୀ ବଣିକଦ୍ୱୟ (୨୦) ଶିଷ୍ୟତ୍ୱର ସ୍ମାରକ ସ୍ୱରୂପ ମହାପୁରୁଷଙ୍କ ଏକ କେଶ ଓ ଏକ ନଖ ଆଣି ସ୍ୱଦେଶରେ 'କେଶସ୍ତୂପ' ଓ 'ନଖସ୍ତୂପ' ନିର୍ମାଣ କରିଥିଲେ । ଭାରତର ଏହି ପ୍ରାଚୀନତମ ସ୍ତୂପଦ୍ୱୟ ଉତ୍କଳର କେଉଁ ସ୍ଥାନରେ ଅବସ୍ଥିତ ଥିଲା ତାହା ଏପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇନାହିଁ ।

ପ୍ରାଚୀନ ବୌଦ୍ଧ ସାହିତ୍ୟରୁ ଜଣାଯାଏ ଯେ, ଥେର (ଭିକ୍ଷୁ) 'କ୍ଷେମ' ବୁଦ୍ଧଙ୍କ ଚିତାଭସ୍ମରୁ ତାଙ୍କର ଏକ ବାମ କଲ୍ଲଦନ୍ତ ସଂଗ୍ରହ କରି କଳିଙ୍ଗ

---

(୨୦) ଏହି ଦୁଇ ଶିଷ୍ୟଙ୍କ ସମ୍ବନ୍ଧରେ ସର୍ବପ୍ରଥମେ ମୁଁ ଓଡ଼ିଆରେ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲି—'ସହକାର', ୧୯୩୨, ୧୩ଶ ଭାଗ ।

ରାଜ ବ୍ରହ୍ମଦତ୍ତଙ୍କୁ ଅର୍ପଣ କରିଥିଲେ । ସେ ଦନ୍ତଧାତୁକୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ପୂର୍ବକ ତାହାର ସଂରକ୍ଷଣ ନିମିତ୍ତ ସ୍ୱୀୟ ରାଜଧାନୀରେ ଏକ ସୁବିଶାଳ ଚୈତ୍ୟ ନିର୍ମାଣ କରିଥିଲେ । ତେଣୁ ଏହାର ନାମାନୁସାରେ ରାଜଧାନୀର ନାମ ହେଲା 'ଦନ୍ତପୁର' ସେହି ସମୟରୁ ଏହା ବହୁକାଳ ପର୍ଯ୍ୟନ୍ତ କଳିଙ୍ଗ ବାସୀଙ୍କୁ ବୌଦ୍ଧ ଧର୍ମରେ ପ୍ରଭାବିତ କରିଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ମାଳବ ରାଜା 'ଦନ୍ତଧାତୁ'କୁ ନେବା ଉଦ୍ଦେଶ୍ୟରେ କଳିଙ୍ଗ ଆକ୍ରମଣ କରିବାରୁ କଳିଙ୍ଗରାଜ ଗୁହଶିବ ଯୁଦ୍ଧରେ ପରାଜିତ ହେବା ଆଶଙ୍କାରେ ନିଜ ଦୁହିତା 'ହେମମାଳା' ଓ ଜାମାତା 'ଦନ୍ତକୁମାର'ଙ୍କ ତତ୍ତ୍ୱାବଧାନରେ ଏହାକୁ ନିକଟର ବନ୍ଧୁ ରାଜ୍ୟ ସିଂହଳ ଦ୍ୱୀପକୁ ପଠାଇ ଦେଲେ । ହେମମାଳା ଏହାକୁ ନିଜର କେଶଗୁଚ୍ଛ ମଧ୍ୟରେ ଲୁଚାଇ ତାମ୍ରଲିପ୍ତ ବନ୍ଦର ଠାରେ ବୋଇତ ଚଢ଼ି ସିଂହଳ ଦ୍ୱୀପକୁ ଯାତ୍ରାକଲେ । ଏହାପରେ ଦନ୍ତପୁରର ପତନ ହେଲା । ଏହି 'ଦନ୍ତଧାତୁ' ଏପର୍ଯ୍ୟନ୍ତ ସିଂହଳରେ ବହୁ ସମ୍ମାନ ସହକାରେ ପୂଜିତ ହେଉଅଛି ।

କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ତୋଷଳୀ ଓ ତାହାର ଉପକଣ୍ଠର ଅଶୋକଙ୍କ ରାଜତ୍ୱରେ ନିର୍ମିତ ସ୍ତୂପସମୂହରେ ଆରାଧ୍ୟ ରୂପେ ସ୍ଥାପିତ ବସ୍ତୁ ଗୁଡ଼ିକ ସମ୍ବନ୍ଧରେ ଏପର୍ଯ୍ୟନ୍ତ ସମ୍ୟକ ତଥ୍ୟ ମିଳିନାହିଁ । କିନ୍ତୁ କଳିଙ୍ଗର ଦକ୍ଷିଣାଂଶରେ ଅବସ୍ଥିତ ହୀନଯାନ ବୌଦ୍ଧ କେନ୍ଦ୍ର 'ଦନ୍ତପୁର' ଓ 'ପାଲୁର', ଯାଜପୁରର ଅଦୂରରେ ବ୍ରାହ୍ମଣୀ ଉପତ୍ୟକାରେ ଅବସ୍ଥିତ 'ରତ୍ନଗିରି' ଓ 'ପୁଷ୍ପଗିରି' ସହିତ ପ୍ରସିଦ୍ଧ ହୀନଯାନ ପୀଠ ତୋଷଳୀର ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା ।

### ମହାଯାନ ଧର୍ମକେନ୍ଦ୍ର, ତୋଷଳୀ—

ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ପ୍ରଗାଢ଼ ଚେଷ୍ଟାରେ ସମଗ୍ର ଭାରତବର୍ଷରେ ଏବଂ ଭାରତ ବାହାରେ ସିଂହଳ ଦ୍ୱୀପ, ଅାଫଗାନିସ୍ଥାନ ଓ ସୁଦୂର ଗ୍ରୀକ୍ ରାଜ୍ୟ ଗୁଡ଼ିକରେ ହୀନଯାନ ମତ ପ୍ରଚଳିତ ହେଲାପରେ ପ୍ରଖ୍ୟାତ କୁଶାନ ସମ୍ରାଟ୍ କନିଷ୍କଙ୍କ ପୃଷ୍ଠପୋଷକତା ଯୋଗୁଁ ମହାଯାନ ମତ ସମଗ୍ର ଭାରତରେ ବ୍ୟାପ୍ତ ହୋଇଥିଲା । ମହାଯାନ ମତର ପ୍ରଧାନ

ପ୍ରବର୍ତ୍ତିତ ଦାର୍ଶନିକ ନାଗାର୍ଜ୍ଜୁନ ତାଙ୍କର ସଭା ମଣ୍ଡନ କରୁଥିଲେ । ଆଉ, ସାତବାହନ ସମ୍ରାଟ୍ ଶ୍ରୀ ଶାତକର୍ଣ୍ଣୀ ନାଗାର୍ଜ୍ଜୁନଙ୍କ ନିବାସ ନିମିତ୍ତ 'ପରିମଳ ଗିରି' ବା ବଲାଙ୍ଗୀର ଜିଲ୍ଲାର ଉତ୍ତର ପଶ୍ଚିମ ସୀମାରେ ଲମ୍ବମାନ ଗନ୍ଧମାର୍ଦନ ପର୍ବତରେ ଏକ ବୃହତ୍ ସଙ୍ଘାରାମ ବା ବିହାର ନିର୍ମାଣ କରିଥିଲେ । (୨୧) ସେଠାରେ ଅବସ୍ଥାନ କାଳରେ ସେ ମାଧ୍ୟମିକ ଦର୍ଶନ ସମ୍ବନ୍ଧରେ ବହୁ ଉପାଦେୟ ଗ୍ରନ୍ଥ ରଚନା କରିଥିଲେ । କଳିଙ୍ଗ ରାଜଧାନୀ 'ସିଂହପୁର'ର ଅଧିବାସୀ ନାଗାର୍ଜ୍ଜୁନଙ୍କ ପ୍ରିୟଶିଷ୍ୟ 'ଆର୍ଯ୍ୟଦେବ' ପରିମଳଗିରି ବିହାରରେ କିଛିକାଳ ଅବସ୍ଥାନ କରିଥିଲେ ।

ଚତୁର୍ଥ ଶତାବ୍ଦୀରେ ଆବିର୍ଭୂତ ବୌଦ୍ଧ ନ୍ୟାୟର ଜନକ ଆଚାର୍ଯ୍ୟ ଦିଙ୍ନାଗ ଧଉଳି ପାହାଡ଼ ଠାରୁ ଅଳ୍ପ କେତେ ମାଇଲ ଦୂରବର୍ତ୍ତୀ ଦୟା-ନଦୀର ଅଦୂରରେ ଅବସ୍ଥିତ 'ଭୋରଶୈଳ' ନାମକ ପାହାଡ଼ରେ ନିଜର କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଉତ୍କଳର ନବୀନ କୁମାର ସାହୁ ଏହାକୁ ଜଗନ୍ନାଥ ମୁଣ୍ଡିଆ ସହିତ ଚିହ୍ନିତ କରିଛନ୍ତି । (୨୨) ତାଙ୍କର ଏହି ଅନୁମାନ ଯଥାର୍ଥ । କାରଣ ଦିଙ୍ନାଗଙ୍କ ବାସସ୍ଥାନ କାଳକ୍ରମେ 'ଡେଲଙ୍ଗ'ରେ ପରିଣତ ହୋଇଅଛି । ସେହିପରି 'ଭୋରଶୈଳ' ଲୋକ ମୁଖରେ 'ଘୋରଶୈଳ' ରୂପ ଧାରଣ କରି ଶେଷରେ 'ଘୋଡ଼ଡିହା' ନାମରେ ଅଭିହିତ ହୋଇଥିବା ସମ୍ଭବପର । ଏହି ଗ୍ରାମଟି ଡେଲଙ୍ଗ ନିକଟରେ ଅବସ୍ଥିତ । ସେଠାରେ ପ୍ରାଚୀନ ବୌଦ୍ଧ କୀର୍ତ୍ତି ଅବସ୍ଥିତି ଯୋଗୁଁ ପରବର୍ତ୍ତୀ କାଳରେ ଧଉଳି ପାହାଡ଼ ଉପରେ ଧବଳେଶ୍ୱର ମନ୍ଦିର ନିର୍ମିତ ହେଲାପରି ଡେଲଙ୍ଗ ନିକଟବର୍ତ୍ତୀ ପାହାଡ଼ ଉପରେ ଏକ

---

(୨୧) 'ପରିମଳଗିରି' ବିହାର ସମ୍ପର୍କରେ ମୁଁ ପ୍ରଥମେ ଇଂରେଜୀ ଓ ଓଡ଼ିଆରେ ବିସ୍ତୃତ ଆଲୋଚନା କରି ପ୍ରବନ୍ଧ ପ୍ରକାଶ କରିଥିଲି ।

(କ) The Vaitarani, Vol. X, No. XI, July, 1936.

(ଖ) ପୋ-ଲେ-ମୋ-ଲୋ-କି-ଲି 'ନବଭାରତ'ବୃଷ ଓ ଧନୁ ସଂଖ୍ୟାଦ୍ୱୟ, ୧୯୬୭

(୨୨) ଓଡ଼ିଶାରେ ବୌଦ୍ଧଧର୍ମ — ପୃ ୨୨

ଶିବ ମନ୍ଦିର ଉନ୍ମୋଚିତ ହେଲା । ଉତ୍କଳ ଖଣ୍ଡରେ ବୌଦ୍ଧଧର୍ମ ପ୍ରଚାର ପାଇଁ ବିଶେଷ ଖ୍ୟାତି ଅର୍ଜନ କରିଥିବା ମହାଯାନ ମତର ପ୍ରବର୍ତ୍ତକ ନାଗାର୍ଜ୍ଜୁନ, କଳିଙ୍ଗାଧିବାସୀ ତଚ୍ଛିଷ୍ୟ ଆର୍ଯ୍ୟଦେବ ଓ 'ଯୋଗାଚାର ବିଜ୍ଞାନବାଦ'ର ସମର୍ଥକ ଆଚାର୍ଯ୍ୟ 'ଦିଙ୍ନାଗ'ଙ୍କ ତୋଷାଳୀରେ ଅବସ୍ଥାନ ସମ୍ବନ୍ଧରେ କୌଣସି ବିବରଣୀ ଏପର୍ଯ୍ୟନ୍ତ ମିଳିନାହିଁ । କିନ୍ତୁ ଅଶୋକ ସ୍ତୂପରୁ ବୌଦ୍ଧ ଧର୍ମର ଏକ ପ୍ରସିଦ୍ଧ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିବା ତୋଷାଳୀରେ ଏହି ପ୍ରଖ୍ୟାତ ଆଚାର୍ଯ୍ୟଦ୍ୱୟ ପ୍ରଚାର କେନ୍ଦ୍ର ସ୍ଥାପନ କରିଥିବା ଅନୁମାନ ଯୁକ୍ତିସଙ୍ଗତ ।

## ଆଚାର୍ଯ୍ୟ ସର୍ବଗାମୀ —

ପ୍ରାଚୀନ ଯୁଗରୁ 'ପୁଷ୍ପଗିରି' ନାମରେ ପରିଚିତ ଧଉଳୀପାହାଡ଼ରେ ମହାଯାନ ଧର୍ମର ଏକ ପ୍ରଧାନ ଆଚାର୍ଯ୍ୟ ସର୍ବଗାମୀଙ୍କର ଏକ ବିହାର ଥିବା ତୃତୀୟ ଶତାବ୍ଦୀରେ ରଚିତ 'ଗଣ୍ଡବ୍ୟୂହ' ନାମକ ପ୍ରସିଦ୍ଧ ଗ୍ରନ୍ଥରୁ ଜଣାଯାଏ । ଏହି ବିହାର ଯୋଗ ଶିକ୍ଷାର ଏକ ପ୍ରଧାନ କେନ୍ଦ୍ର ଥିଲା । ମହାଯାନୀମାନଙ୍କ ଦ୍ୱାରା 'ଗଣ୍ଡବ୍ୟୂହ' ବା 'ଅବତଂସକ ସୂତ୍ର' ଏକ ପ୍ରଧାନ ଧର୍ମଗ୍ରନ୍ଥ ରୂପେ ବିବେଚିତ ହେଉଥିବାରୁ ଚୀନ ଭାଷାରେ ଏହାର ତିନୋଟି ଅନୁବାଦ ଦେଖାଯାଏ । ଏହାର ପ୍ରଥମ ଅନୁବାଦ ବୁଦ୍ଧଭଦ୍ରଙ୍କ ଦ୍ୱାରା ୪୨୦ ଖ୍ରୀଷ୍ଟାବ୍ଦରେ, ଦ୍ୱିତୀୟ ଅନୁବାଦ ଶିକ୍ଷାନନ୍ଦଙ୍କ ଦ୍ୱାରା ୬୯୭ ଖ୍ରୀଷ୍ଟାବ୍ଦରେ ଓ ତୃତୀୟ ଅନୁବାଦ ପଣ୍ଡିତାଚାର୍ଯ୍ୟ ପ୍ରଜ୍ଞାଙ୍କ ଦ୍ୱାରା ୭୯୮ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ ହୋଇଥିଲା । ଏହି ତୃତୀୟ ଅନୁବାଦର ମୂଳ ସଂସ୍କୃତ ଗ୍ରନ୍ଥ ଓଡ୍ରଦେଶର ଅଧିପତି ସ୍ୱହସ୍ତ ଲିଖିତ ଏକ ପତ୍ର ସହ ଆଚାର୍ଯ୍ୟ ପ୍ରଜ୍ଞାଙ୍କ ହସ୍ତରେ ଚୀନ ସମ୍ରାଟଙ୍କ ନିକଟକୁ ୭୯୫ ଖ୍ରୀଷ୍ଟାବ୍ଦରେ ଉପହାର ସ୍ୱରୂପ ପ୍ରେରଣ କରିଥିଲେ ।

ପ୍ରଜ୍ଞା ଉତ୍କଳର ଏକ ବନ୍ଦରରୁ ଜଳଯାହାଜରେ ୭୯୬ ଖ୍ରୀଷ୍ଟାବ୍ଦରେ ଚୀନରେ ପଦାର୍ପଣ କରିଥିଲେ । ଦୁଇବର୍ଷ କାଳ କଠିନ ପରିଶ୍ରମ କରି ପ୍ରଜ୍ଞା ଚୀନ୍‌ଭାଷାରେ ଏହାର ଅନୁବାଦ ସମାପ୍ତ କରିଥିଲେ । ଚୀନ ସମ୍ରାଟ୍‌ଙ୍କ ଦ୍ୱାରା ଓଡ୍ର ନୃପତିଙ୍କ ନିକଟକୁ ଲିଖିତ ପତ୍ରରେ ଓଡ୍ରରାଜା

'ମହାଲକ୍ଷ୍ମୀ ଈଶ୍ୱର-ଶୁଭ-ସିଂହରାଜ' ରୂପେ ବର୍ଣ୍ଣିତ ହୋଇଛନ୍ତି । (୨୩) ସେ ଯେ ଉତ୍କଳର ଜଣେ ଭୌମବଂଶୀୟ ସମ୍ରାଟ୍ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଚୀନୋଟିଯାକ ଅନୁବାଦରେ 'ଅଚଳସ୍ଥିର' ନାମକ ଏକ ବୌଦ୍ଧ ଭିକ୍ଷୁଣୀଙ୍କ ପରାମର୍ଶରେ 'ସୁଧନ' ନାମକ ଏକ ଯୁବକ ଶିକ୍ଷାର୍ଥୀ ଅମିତ-ତୋଷଳର ରାଜଧାନୀ ତୋଷଳୀର ଉପକଣ୍ଠରେ ଥିବା 'ସୁରଭ' ପର୍ବତସ୍ଥ ଆର୍ଯ୍ୟ ସର୍ବଗ୍ରାମୀଙ୍କ ବିହାରକୁ ଯୋଗଶିକ୍ଷା ପାଇଁ ଯାଇଥିବା ବୃତ୍ତାନ୍ତ ଲିପିବଦ୍ଧ ହୋଇଅଛି । ଏଥିରେ ପ୍ରଦତ୍ତ ତୋଷଳ ନଗର ବର୍ଣ୍ଣନାର ବିଶେଷ ଗୁରୁତ୍ୱ ଥିବାରୁ ଆବଶ୍ୟକ ଅଂଶ ନିମ୍ନରେ ଉଦ୍ଧାର କରାଗଲା—

"ଗଚ୍ଛ କୁଳପୁତ୍ରେହୈବ ଦକ୍ଷିଣାପଥେ ଅମିତ ତୋଷଲେ ଜନପଦେ ତୋଷଲଂ ନାମ ନଗରଂ । ତତ୍ର ସର୍ବଗାମୀ ପରିବ୍ରାଜକଃ ପ୍ରତିବସତି । ଯେ ନାମିତ ତୋଷଲୋ ଜନପଦ ସ ତେନୋପଜଗାମୋପେତ୍ୟ ତୋଷଲ ନଗରଂ ପରିମାର୍ଗନ୍ ପରିଗବେଷ୍ୟମାଣୋଽନୁପୂର୍ବେଣ ତୋଷଲଂ ନଗରଂ ଅନୁପ୍ରାପ୍ତଃ । ସୂର୍ଯ୍ୟାସ୍ତଗମନକାଲେ ସ ତୋଷଲଂ ନାମ ନଗରଂ ଅନୁପ୍ରବିଶ୍ୟ ମଧ୍ୟେ ନଗରଶୃଙ୍ଗାଟକସ୍ୟ ସ୍ଥିତ୍ୱା ବୀଥୀମୁଖେନ ବୀଥୀମୁଖଂ, ଚତ୍ୱରେଣ ଚତ୍ୱରଂ ରଥ୍ୟାରଥ୍ୟଂ ସର୍ବଗ୍ରାମିଣଂ ଅଦ୍ରାକ୍ଷୀତ । ରାତ୍ର୍ୟାଂ ପ୍ରଶାନ୍ତାୟାଂ ତୋଷଲସ୍ୟ ନଗରସ୍ୟୋତ୍ତରେ ଦିଗ୍ଭାଗେ ସୁରଭଂ ନାମ ପର୍ବତଂ, ତସ୍ୟ ଶିଖରେ ବିବିଧତୃଣଗୁଲ୍ମୌଷଧିବନାଶ୍ରମରଚିତେ ମହାବଭାସପ୍ରାପ୍ତଂ ଭାସ୍କରମିବୋଦିତଂ, ତସ୍ୟ ତମବଭାସଂ ଦୃଷ୍ଟ୍ୱା × × × ।"

ବୌଦ୍ଧଭିକ୍ଷୁଣୀ ଅଚଳସ୍ଥିର ଯୋଗବିଦ୍ୟାଶିକ୍ଷାର୍ଥୀ ସୁଧନଙ୍କୁ ଉପଦେଶ ଦେଇଛନ୍ତି— "ହେ କୁଳପୁତ୍ର, ଆମ୍ଭର ଏହି ଦକ୍ଷିଣାପଥରେ ଅମିତ ତୋଷଳ ନାମକ ଜନପଦ ବା ରାଜ୍ୟ ଅବସ୍ଥିତ । ସେଠାରେ ତୋଷଳ

(୨ ) **"On Chinese translation of 'Avatamsaka Sūtra' original from Udra" by Jan Yun-hua, M.A. O. H. R. J. Vol. VII, pts 3 & 4, pp. 125-132.**

ନାମକ ନଗରୀରେ ପରିବ୍ରାଜକ ସର୍ବଗ୍ରାମୀ ବାସ କରୁଛନ୍ତି । ତାଙ୍କର ଉପଦେଶାନୁସାରେ ସେ ସ୍ୱ ସ୍ଥାନରୁ ତୋସଳ ଜନପଦସ୍ଥିତ ତୋଷଳ ନଗରର ଅନୁସନ୍ଧାନ ଉଦ୍ଦେଶ୍ୟରେ ବହିର୍ଗତ ହୋଇଥିଲେ । ଏହି ଯାତ୍ରାରେ ଦୀର୍ଘ ପଥ ଅତିକ୍ରମ ପୂର୍ବକ ସେ ସୂର୍ଯ୍ୟାସ୍ତ ପୂର୍ବରୁ ତୋଷଳୀ-ନଗର ଚତୁଷ୍ପଥ (ଶୃଙ୍ଗାଟକ) ଠାରେ ପହଞ୍ଚିଲେ । ତତ୍ପରେ ସେ ବିଭିନ୍ନ ସଡ଼କ, ଗଳି କନ୍ଦରେ ବୁଲିବୁଲି ଶେଷରେ ସର୍ବଗ୍ରାମୀଙ୍କ ନିବାସ ସ୍ଥଳରେ ଉପଗତ ହେଲେ । ସେ (ଆଚାର୍ଯ୍ୟଙ୍କ ଗୃହରେ) ରାତ୍ରିଯାପନ କରିଥିଲେ । ରାତିପାହିଲା ବେଳକୁ ତୋଷଳ ନଗରର ଉତ୍ତର ଦିଗ୍‌ବଳୟରେ ଲମ୍ବମାନ ବିବିଧ ତୃଣ, ଗୁଳ୍ମ ଓ ଔଷଧି ବୃକ୍ଷର ଉପବନ ଓ ଆରାମ ଦ୍ୱାରା ମଣ୍ଡିତ ଶିଖର ସୁରଭି ପର୍ବତ ଉଷାଲୋକରେ ଉଦ୍ଭାସିତ ହୋଇ ତାଙ୍କର ଦୃଷ୍ଟିପଥାରୂଢ଼ ହେଲା । (୧୮)

ଉକ୍ତ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ଶତାବ୍ଦୀରେ 'ଗଣ୍ଡବ୍ୟୂହ' ଗ୍ରନ୍ଥ ରଚନା ସମୟକୁ ତୋଷଳ ନଗରର ଶୃଙ୍ଗାଟକ ବା କେନ୍ଦ୍ର ସ୍ଥଳରେ ଥିବା ଚତୁଷ୍ପଥ (ଶୃଙ୍ଗାଟକ)ରୁ ଚତୁର୍ଦ୍ଦିଗକୁ ପ୍ରଶସ୍ତ ପଥମାନ ବିସ୍ତୀର୍ଣ୍ଣ ହୋଇଥିଲା । ଏହି ପଥଗୁଡ଼ିକ ଓ ସେଥିରୁ ବାହାରିଥିବା ବିଭିନ୍ନ ଗଳି, ସାହି, କନ୍ଦ (ରଥ୍ୟା ବା ଅଭ୍ୟନ୍ତର ମାର୍ଗ)ର ଉଭୟ ପାର୍ଶ୍ୱ ଗୃହମାଳା ଦ୍ୱାରା ପୂର୍ଣ୍ଣ ଥିଲା । ଏହି ବର୍ଣ୍ଣନା ଦ୍ୱାରା ତୋଷଳ ଏକ ବହୁଜନ ବସତି ପୂର୍ଣ୍ଣ ନଗର ଥିବା ପ୍ରକାରାନ୍ତରେ ସୂଚିତ ହୁଏ । ଏହାର ଏକ ପ୍ରାନ୍ତରେ ପ୍ରସିଦ୍ଧ ଆଚାର୍ଯ୍ୟ ସର୍ବଗ୍ରାମୀଙ୍କର ଯୋଗଶିକ୍ଷା କେନ୍ଦ୍ର ବିଦ୍ୟମାନ ଥିଲା । ଉକ୍ତ ଜନାକୀର୍ଣ୍ଣ ନଗରର ଉତ୍ତରରେ ଅବସ୍ଥିତ ସୁରଭି ପର୍ବତ (ଧଉଳୀ ପାହାଡ଼)ର ଶିଖର ପ୍ରଦେଶ ବହୁ ଭେଷଜ ଉଦ୍ୟାନ, ଆରାମ (ଉପବନ) ପ୍ରଭୃତି ଦ୍ୱାରା ମଣ୍ଡିତ ଥିଲା । (୧୯)

---

(୧୮) Early inscriptions of Bihar and Orissa by A. P. Bānerjee Sāstri, pp. 143-146.

(୧୯) ଅଶୋକଙ୍କ ରାଜତ୍ୱରେ ଏଠାରେ ଭେଷଜ ଉଦ୍ୟାନ ପ୍ରତିଷ୍ଠିତ ହୋଇଥିବା ପୂର୍ବରୁ ଆଲୋଚିତ ହୋଇଅଛି ।

ହୁଏନ୍‌ସାଂଙ୍କ ଉତ୍କଳ ଭ୍ରମଣ ସମୟରେ (୬୪୩ ଖ୍ରୀଷ୍ଟାବ୍ଦ) ବୌଦ୍ଧ ଧର୍ମର କେନ୍ଦ୍ରରୂପେ ଏହାର ବିଶେଷ ଖ୍ୟାତି ନ ଥିବାରୁ ଚୀନ ପରିବ୍ରାଜକ ବାଣପୁର ଜଙ୍ଗଲ ମଧ୍ୟରେ ଶାଳମା (ଶାଳିଆ) ନଦୀକୂଳରେ ଅବସ୍ଥିତ 'କୋଙ୍ଗଦ'ର ବିଶେଷ ବର୍ଣ୍ଣନା କରିଥିଲେ ମଧ୍ୟ ଏହାର ଉଲ୍ଲେଖ ସୁଦ୍ଧା କରି ନାହାନ୍ତି । ତେଣୁ ତାଙ୍କ ସମୟକୁ କିପରି ଏହାର ପତନର ସୂତ୍ରପାତ ହୋଇଥିଲା, ତାହା ପରବର୍ତ୍ତୀ ଅଧ୍ୟାୟରେ ବିସ୍ତୃତ ଭାବରେ ଆଲୋଚିତ ହୋଇଅଛି ।

# ଚତୁର୍ଥ ଅଧ୍ୟାୟ

## ବୌଦ୍ଧକେନ୍ଦ୍ର ତୋଷଳୀର ପତନ

**ବୈଦିକ ଯଜ୍ଞାନୁଷ୍ଠାନ :—** ବୌଦ୍ଧକେନ୍ଦ୍ର ତୋଷଳୀର ପତନ ବିଷୟରେ ଆଲୋଚନା କରିବା ପୂର୍ବରୁ ଅଶୋକଙ୍କ ପରବର୍ତ୍ତୀ ଯୁଗରୁ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ପାଇଁ କପରି ଧାରାବାହିକ ଉଦ୍ୟମ ହୋଇଥିଲା, ସେ ସମ୍ପର୍କରେ ଆଲୋକପାତ ଆବଶ୍ୟକ । ବୌଦ୍ଧ ଧର୍ମର ଜନ୍ମଭୂମି ମଗଧରୁ ବୌଦ୍ଧ ପ୍ରଭାବ କ୍ଷୁର୍ଣ୍ଣ କରିବା ପାଇଁ ମୌର୍ଯ୍ୟବଂଶ ଧ୍ୱଂସକାରୀ ବ୍ରାହ୍ମଣ ସେନାପତି ପୁଷ୍ୟମିତ୍ର ମହାପୁରୁଷ ବୁଦ୍ଧଙ୍କ ପ୍ରଭାବରେ ବହୁକାଳରୁ ଲୁପ୍ତ ଦୁଇଟି ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରି 'ଦ୍ୱିରଶ୍ୱମେଧଯାଜୀ' ପଦବୀ ଧାରଣ କରିଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ରାଜତ୍ୱ କରୁଥିବା 'ଭାରଶିବ' ବଂଶୀୟ ଜନୈକ ନରପତି ବୁଦ୍ଧଙ୍କ ଦ୍ୱାରା ସର୍ବପ୍ରଥମେ 'ଧର୍ମଚକ୍ର' ପ୍ରବର୍ତ୍ତିତ ହୋଇଥିବା ଋଷିପତନ ବା ବାରଣସୀ କ୍ଷେତ୍ରରୁ ବୌଦ୍ଧ ପ୍ରଭାବ ହ୍ରାସ କରିବା ପାଇଁ ଗଙ୍ଗା କୂଳରେ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ତେଣୁ ତାଙ୍କ ବଂଶଧରମାନେ ସ୍ୱ ସ୍ୱ ଅଭିଲେଖ ଗୁଡ଼ିକରେ "ଦଶାଶ୍ୱମେଧାବଭୃଥସ୍ନାତାନାଂ ଭାରଶିବାନାଂ" ରୂପେ ବର୍ଣ୍ଣିତ ହୋଇଛନ୍ତି । ସମଗ୍ର ଭାରତ ବିଜୟୀ ଗୁପ୍ତ ସମ୍ରାଟ୍ ସମୁଦ୍ର ଗୁପ୍ତ (୩୫୦-୩୭୫ ଖ୍ରୀଷ୍ଟାବ୍ଦ) ନିଜ ଦିଗ୍‌ବିଜୟର ଚିହ୍ନ ସ୍ୱରୂପ ଏକ ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରି ଏହି ଘଟଣାକୁ ଚିରସ୍ମରଣୀୟ କରିବା ନିମିତ୍ତ ଏକ ସ୍ୱର୍ଣ୍ଣମୁଦ୍ରା ପ୍ରଚଳନ କରିଥିଲେ । ସେଥିରେ ଲେଖା ହୋଇଛି — 'ଅଶ୍ୱମେଧପରାକ୍ରମଃ' । ଗୁପ୍ତ ସମ୍ରାଟ୍ କୁମାର ଗୁପ୍ତ ମଧ୍ୟ ଅଶ୍ୱମେଧ ଯଜ୍ଞ କରି 'ଅଶ୍ୱମେଧମହେନ୍ଦ୍ରଃ' ଲେଖ ଖୋଦିତ ମୁଦ୍ରା ପ୍ରଚଳନ କରିଥିଲେ ।

ଗୁପ୍ତ ସମ୍ରାଟ୍‌ମାନଙ୍କ ପଦାଙ୍କ ଅନୁସରଣ କରି ଷଷ୍ଠ ଶତାବ୍ଦୀରେ ଆନ୍ଧ୍ରର ଗୋଦାବରୀ-କୃଷ୍ଣା ଅଞ୍ଚଳରେ ରାଜତ୍ୱ କରୁଥିବା ବିଷ୍ଣୁକୁଣ୍ଡୀ

ବଂଶୀୟ ମାଧବ ବର୍ମନ୍ 'ସହସ୍ର ଅଗ୍ନିଷ୍ଟୋମ' ଓ 'ଏକାଦଶ ଅଶ୍ୱମେଧ ଯଜ୍ଞ' ସମ୍ପନ୍ନ କରିଥିଲେ । ତାଙ୍କର ତାମ୍ର ଶାସନରେ "ଅଗ୍ନିଷ୍ଟୋମ ସହସ୍ରସ୍ୟ ଶ୍ରୀ ଏକାଦଶାଶ୍ୱମେଧାବଭୃଥ-ବଧୌତ ଜନିତ କଳ୍ମଷଃ" ଉକ୍ତଭାବ ପରିଦୃଷ୍ଟ ହୁଏ । ଏହାର ଅଳ୍ପ କେତେ ବର୍ଷ ପରେ ଦକ୍ଷିଣ ତୋଷଳୀର କୋଙ୍ଗଦ ମଣ୍ଡଳରେ (ମହାନଦୀ ଓ ଋଷିକୂଲ୍ୟା ମଧ୍ୟବର୍ତ୍ତୀ ଅଞ୍ଚଳ) ରାଜତ୍ୱ କରୁଥିବା ଶୈଳୋଦ୍ଭବ ବଂଶୀୟ ମହାରାଜ ମାଧବ ବର୍ମନ୍ କଳିଯୁଗରେ ବହୁକାଳରୁ ଲୁପ୍ତ ଅଶ୍ୱମେଧ ପ୍ରଭୃତି ଯଜ୍ଞ ସମ୍ପନ୍ନ କରି ବିଶେଷ ଗର୍ବ ଓ ଗୌରବ ଅନୁଭବ କରିଥିବା ଉକ୍ତ ବଂଶର କେତେକ ଦାନପତ୍ରରୁ ଜଣାଯାଏ । ଯଥା—

"ଯଜ୍ଞୈରଶ୍ୱମେଧପ୍ରଭୃତିଭିରମଗଲମ୍ଭୈତାସ୍ପୃପ୍ତି ମୁର୍ବୀ-
ମୁଦ୍ଧୃତ୍ୟ ପ୍ରାଗ୍ଭିତପକ୍ଷପ୍ରକୃତପଙ୍ଗୁନା ଶ୍ରୀନିବାସେନ ଯେନ" । (୧)

ଉକ୍ତ ବଂଶୀୟ ଅନ୍ୟ ଏକ ପ୍ରଖ୍ୟାତ ନରପତି ଧର୍ମରାଜ ବାଜପେୟ ଓ ଅଶ୍ୱମେଧ ପ୍ରଭୃତି ଯଜ୍ଞ ସମ୍ପନ୍ନ କରିଥିବା ତାଙ୍କର ଚଣ୍ଡେଶ୍ୱର ତାମ୍ରଶାସନରୁ ଜଣାଯାଏ । ଯଥା— "ଶୈଳୋଦ୍ଭବକୁଳତିଳକୋ ମହାମଖ-ବାଜପେୟାଶ୍ୱମେଧାବଭୃଥସ୍ନାନ ନିର୍ବର୍ତ୍ତିତ ପ୍ରଖ୍ୟାତକୀର୍ତ୍ତି × × ପରମ ମାହେଶ୍ୱର ଶ୍ରୀ ଧର୍ମରାଜ ଦେବ କୁଶଳୀ ।।" (୨)

## ପାଶୁପତ ଆଚାର୍ଯ୍ୟମାନଙ୍କ ପ୍ରଭାବ—

ଶୈଳୋଦ୍ଭବ ବଂଶର ରାଜତ୍ୱ କାଳରେ ବୌଦ୍ଧ ଧର୍ମର ଘୋର ବିରୋଧୀ ହୋଇ ପାଶୁପତ ଆଚାର୍ଯ୍ୟମାନଙ୍କ ପ୍ରଭାବ ଓ ପ୍ରତିପତ୍ତି କୋଙ୍ଗଦ-

---

(୧) ମାଧବ ବର୍ମନ୍‌ଙ୍କ ବୁଗୁଡ଼ା ତାମ୍ର ଶାସନ E.I., Vol. III, pp. 41-50
,, ପୁରୁଷୋତ୍ତମପୁର ,, O.H.R.J., Vol. II, pp. 20 ff.
,, ପୁରୀ ,, E.I., XXIII, pp. 122-131.
,, ଓଡ଼ିଶା ମିଉଜିୟମ ,, E.I., Vol XXIV, pp. 148-53
(୨) ପଣ୍ଡିତ ରାଜଗୁରୁଙ୍କ ଦ୍ୱାରା ପ୍ରକାଶିତ J. K. H. R. S, Vol. II, pp. 69-72.

ମଣ୍ଡଳରେ ବିଶେଷ ଭାବରେ ବୃଦ୍ଧିଲାଭ କରିଥିଲା । ସେମାନଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ପଶ୍ଚିମରେ ଜୈନକୀର୍ତ୍ତି ମଣ୍ଡିତ ଖଣ୍ଡଗିରି-ଉଦୟଗିରି ଓ ଦକ୍ଷିଣରେ ବହୁ ପ୍ରାଚୀନ ବୌଦ୍ଧକୀର୍ତ୍ତି ଶୋଭିତ ସୁରଭି ପର୍ବତ (ଧଉଳୀ ପାହାଡ଼) ମଧ୍ୟବର୍ତ୍ତୀ 'ଆମ୍ରାଗ୍ରମ ଶତାଶ୍ରିତ ଏକାମ୍ର କାନନ' ବା ଭୁବନେଶ୍ୱରର ଝାଙ୍କରଭୂମିରେ କେତେକ ଶିବମନ୍ଦିର ଉତ୍ତୋଳିତ ହୋଇଥିଲା । ଯଥା — ରାମେଶ୍ୱର ନିକଟବର୍ତ୍ତୀ ଭରତେଶ୍ୱର, ଲକ୍ଷ୍ମଣେଶ୍ୱର, ଶତ୍ରୁଘ୍ନେଶ୍ୱର, ପର୍ଶୁରାମେଶ୍ୱର, ସ୍ୱର୍ଣ୍ଣଜାଳେଶ୍ୱର, ମାର୍କଣ୍ଡେଶ୍ୱର ପ୍ରଭୃତି । ଅଶୋକ ଯୁଗର ଏକ ସ୍ତମ୍ଭକୁ ଭାଙ୍ଗି ଭାସ୍କରେଶ୍ୱର ନାମଧେୟ ଲିଙ୍ଗରେ ପରିଣତ କରାଗଲା । ବୌଦ୍ଧଧର୍ମର ପ୍ରାଚୀନତମ କେନ୍ଦ୍ର ତୋଷଳୀ ପ୍ରତି ସେମାନଙ୍କର ବିଶେଷ ବୈରଭାବ ସହଜରେ ଅନୁମେୟ । ତେଣୁ ଧଉଳୀ ପାହାଡ଼ର ଶିଖର ଦେଶରେ ଅବସ୍ଥିତ ଅଶୋକ ଯୁଗର ଏକ ପ୍ରାଚୀନ ସ୍ତୂପର ପଶ୍ଚାଦ୍ ଭାଗରେ ଧବଳେଶ୍ୱର ନାମରେ ଅଭିହିତ ଏକ ଶିବ ମନ୍ଦିର ଉତ୍ତୋଳିତ ହୋଇଥିଲା ।

## ଧଉଳୀ ପାହାଡ଼ ଶିଖରରେ ଶିବ ମନ୍ଦିର ନିର୍ମାଣ —

ଗଳିତ ବର୍ଷ ଏହି ଲୋପୋନ୍ମୁଖ ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ସାଧିତ ହେବା ପୂର୍ବରୁ ଏହାର ଦକ୍ଷିଣ କାନ୍ଥର ପ୍ରାୟ ୧୫ ଫୁଟ ଉଚ୍ଚତା ବିଶିଷ୍ଟ ଭଗ୍ନାଂଶ ମାତ୍ର ବିଦ୍ୟମାନ ଥିଲା । କିନ୍ତୁ ୧୮୭୪ ଖ୍ରୀଷ୍ଟାବ୍ଦରେ ଗତ ଶତାବ୍ଦୀର ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ **J. D. Beglar**ଙ୍କ ପରିଦର୍ଶନ ସମୟରେ ଏହାର କେବଳ ଉତ୍ତର ପଟ କାନ୍ଥଟି ଭାଙ୍ଗି ପଡ଼ିଥିଲା; କିନ୍ତୁ ଅନ୍ୟ ତିନି କାନ୍ଥ ଅକ୍ଷୁର୍ଣ୍ଣ ଥିଲେ ମଧ୍ୟ ପତନୋନ୍ମୁଖ ଅବସ୍ଥାରେ ଥିଲା । ଯଥା — **"The whole of the northern side of the temple has fallen down but the other sides nevertheless stand in tact, though evidently rather shaky."**
ସେ ଏହାର ଉଚ୍ଚତା ଉଲ୍ଲେଖ ନ କରିଥିଲେ ମଧ୍ୟ ଏହା ପ୍ରାୟ ୪୫ ଫୁଟ ଉଚ୍ଚ ଥିଲା । ପୂର୍ବାଭିମୁଖ ପଞ୍ଚରଥ ଶ୍ରେଣୀର ଏହି ମନ୍ଦିରଟି ୧୫୦ ଫୁଟ ଲମ୍ବ ଓ ୧୦୦ ଫୁଟ ଓସାର ଏକ ଚଉତରା ଉପରେ ଦଣ୍ଡାୟମାନ ଥିଲା ।

ଏହି ଚଉତରାକୁ ସୁଦୃଢ ଭାବରେ ରଖିବା ପାଇଁ ପାହାଡ ଉପରେ ବଡ ବଡ ମାଙ୍କଡ଼ା ପଥର ପଡ଼ା ଯାଇଥିଲା । ଏହି ଚଉତରା ଚାରିପଟେ ଟିକିଏ ତଳକୁ ପୁଣି ଆଉଗୋଟିଏ ବଡ଼ ଚଉତରା ଥିଲା । ତାକୁ ମଧ୍ୟ ସୁଦୃଢ଼ କରିବା ପାଇଁ ଡ଼ିମା ଛକାଯାଇଥିଲା । ଏହି ଦୁଇଟି ଚୌବଖାର ଚତୁର୍ଦ୍ଦିଗରେ ପାହାଡ଼ର ସମନ୍ନମ୍ ଭୂମିରେ ଓ ପାଦଦେଶରେ ବହୁ ସଂଖ୍ୟାରେ ଭଙ୍ଗା ଇଟା ପଡ଼ିଥିଲା । ଯଥା—

"The temple stands on a platform over 150 feet long and 100 feet wide supported by revetments of cut blocks of laterite set without cement, this court again appears to have stood within a larger outer platform at a lower level similarly supported by revetments but not of cut laterite. There are great many brick-bats scattered about in both chaubatras along the slopes and at the foot of the hill." (୩)

ଏହି ଭଗ୍ନଦଶାପନ୍ନ ମନ୍ଦିରର ସ୍ଥାପତ୍ୟକୁ ଅତ୍ୟନ୍ତ ମନଯୋଗ ସହିତ ପରୀକ୍ଷା କରି ବେଗଲର ସାହେବ ଏହା ପଞ୍ଚମ ଶତାବ୍ଦୀର ଏକ କୀର୍ତ୍ତି ବୋଲି ଅନୁମାନ କରିଥିଲେ । ଯଥା—

"I culd not confidently venture a guess as to the age of the temple in the absence of sculpture, but judging from its bold mouldings, I would not think the fifth century of our era much too early a date for its erection."

ପୁନର୍ବାର ଏ ବିଷୟରେ ଆଲୋଚନା କରି ଲେଖକ ସେ ଏହି ଶିବାଳୟକୁ ଖ୍ରୀଷ୍ଟୀୟ ଚତୁର୍ଥରୁ ଷଷ୍ଠ ମଧ୍ୟରେ ଅବସ୍ଥାପିତ କରିଥିଲେ ।

---

(୩) Archaeological Survey of India by A. Cunningham, Vol. III, by J. D. Beglar, 1874-75, p 85

"to assign it to any period in particular between the fourth and sixth centuries."

ବେଗଲର ମହାଶୟ ପ୍ରାୟ ଏକଶତ ବର୍ଷ ପୂର୍ବେ ଯେଉଁ ମତ ପ୍ରକାଶ କରିଥିଲେ ଉତ୍କଳର ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ଭାସ୍କରେଶ୍ୱର ମନ୍ଦିର ନିକଟରୁ ଆବିଷ୍କୃତ ଖଣ୍ଡିତ ସିଂହ ଦେହରେ ପଞ୍ଚମ ଶତାବ୍ଦୀର ବ୍ରାହ୍ମୀ ବର୍ଣ୍ଣମାଳାରେ ଖୋଦିତ ଉତ୍କୀର୍ଣ୍ଣଲେଖ ଦ୍ୱାରା ତାହା ପୂର୍ଣ୍ଣ ସମର୍ଥିତ ହୁଏ । ପଞ୍ଚମ ବା ଷଷ୍ଠ ଶତାବ୍ଦୀରେ ଏକସମୟରେ ବା ଅଳ୍ପ ସମୟ ବ୍ୟବଧାନ ମଧ୍ୟରେ ଅଶୋକ ନିର୍ମିତ ଭାସ୍କରେଶ୍ୱର ସ୍ତୂପ ଓ ଧଉଳି ପାହାଡ଼ ଉପରେ ଥିବା ସ୍ତୂପ ଭଙ୍ଗାଯାଇଥିଲା ଏବଂ କୌଣସି ପାଶୁପତାଚାର୍ଯ୍ୟଙ୍କ ଉଦ୍ୟମରେ ଶୈବଧର୍ମର ଗୌରବ ଓ ମାହାତ୍ମ୍ୟ ପ୍ରଖ୍ୟାପନ ପାଇଁ ଧଉଳୀର ଶିଖର ପ୍ରଦେଶରେ ଉକ୍ତ ଧବଳେଶ୍ୱର ମନ୍ଦିର ନିର୍ମିତ ହୋଇଥିଲା । ଏହା ପରେ ଉତ୍କଳର ସର୍ବପ୍ରାଚୀନ ବୌଦ୍ଧକେନ୍ଦ୍ର ରୂପେ ତୋଷଳୀର ଖ୍ୟାତି ଓ ଗୌରବ କ୍ରମଶଃ ମ୍ରିୟମାଣ ହେଲା । ୬୪୩ ଖ୍ରୀଷ୍ଟାବ୍ଦରେ ସୁପ୍ରସିଦ୍ଧ ଚୀନ୍‌ଦେଶୀୟ ପରିବ୍ରାଜକ ହୁଏନ୍‌ସାଂ ପ୍ରାଚୀନ ବୌଦ୍ଧପୀଠ ଗୁଡ଼ିକ ପରିଦର୍ଶନ ଉଦ୍ଦେଶ୍ୟରେ ଉଡ୍ର, କୋଙ୍ଗଦ, କଳିଙ୍ଗ ଓ କୋଶଳ ରାଜ୍ୟ ଚତୁଷ୍ଟୟ ପରିଭ୍ରମଣ ସମୟରେ ତୋଷଳୀର ପ୍ରାଧାନ୍ୟ ଲୁପ୍ତପ୍ରାୟ ହୋଇଥିବାରୁ ତାହାର ନାମୋଲ୍ଲେଖ ପର୍ଯ୍ୟନ୍ତ କରି ନ ଥିଲେ । ଅଥଚ ପୁଷ୍ପଗିରି (କଟକ ଜିଲ୍ଲାର ଲଳିତଗିରି-ଉଦୟଗିରି) ଚେଲିତାଲୋ (କୋଣାର୍କ ନିକଟବର୍ତ୍ତୀ ସମୁଦ୍ର କୂଳବର୍ତ୍ତୀ ବନ୍ଦର) କୋଙ୍ଗଦ (ବାଣପୁର ଅଞ୍ଚଳ) କଳିଙ୍ଗ ରାଜଧାନୀ ଓ ପରିମଳ ଗିରି (ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲାର ସୀମାରେ ଅବସ୍ଥିତ ଗନ୍ଧମାର୍ଦନ ପର୍ବତ) ପ୍ରଭୃତି ସ୍ଥାନରେ ଅବସ୍ଥିତ ବୌଦ୍ଧକୀର୍ତ୍ତି ସମୂହ ସମ୍ବନ୍ଧରେ ସେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ।

## ଭୌମ ରାଜତ୍ୱ କାଳରେ ତୋଷଳୀ—

ଭୌମବଂଶୀୟ ପ୍ରଥମ ପ୍ରସିଦ୍ଧ ନରପତି କ୍ଷେମଙ୍କରଦେବ 'ପରମୋପାସକ' ତାଙ୍କ ପୁତ୍ର ପ୍ରଥମ ଶିବକର ଦେବ 'ପରମତଥାଗତ' ଓ

ନାଛ ପ୍ରଥମ ଶ୍ରୀ ଶୁଭାକର ଦେବ୍ 'ପରମସୌଗତ' ଉପାଧିରେ ଭୂଷିତ ହୋଇଥିବାରୁ ସେମାନେ ବୌଦ୍ଧମତର ସମର୍ଥକ ଥିବାର ସ୍ବୀକାର କରା-ଯାଏ । କିନ୍ତୁ ସେମାନଙ୍କ ରାଜଧାନୀ ବିରଜା (ଯାଜପୁର) ନିକଟବର୍ତ୍ତୀ ଗୁହେଶ୍ବର ପାଟକ (ଗୋହିରା ଟିକିରି); ବୈତରଣୀ ନିକଟବର୍ତ୍ତୀ 'ସୋଲଣପୁର' ପର୍ବତ ଦ୍ରୋଣୀ 'କୋମାରକ' (କୁପାରି ପାହାଡ) ପୃଷ୍ଠ-ଦେଶ (ରତ୍ନଗିରି-ଲଳିତଗିରି-ଉଦୟଗିରି ଅଞ୍ଚଳ) ଜୟାଶ୍ରମବିହାର (ଢାଳଭେଳ ନିକଟବର୍ତ୍ତୀ ଜଡିଙ୍ଗ) ବୌଦ; ଚଣ୍ଡିଦ୍ୱାର, ଚମ୍ପେଶ୍ୱରବାସୀ ପ୍ରଭୃତିରେ ଭୌମଯୁଗର ବହୁ ବୌଦ୍ଧକୀର୍ତ୍ତି ମିଳିଥିଲେ ମଧ୍ୟ ଏପର୍ଯ୍ୟନ୍ତ ଧଉଳୀ ଅଞ୍ଚଳରୁ କୌଣସି ଭୌମକୀର୍ତ୍ତିର ସନ୍ଧାନ ମିଳିନାହିଁ । କେବଳ ଖାଡ଼ପଡା ଗ୍ରାମରୁ ପ୍ରାପ୍ତ ପ୍ରାୟ ସାତଫୁଟ ଉଚ୍ଚ ଏକ ଖଣ୍ଡିତ ଅବଲୋକିତ ବିଗ୍ରହ ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ-ଅଛି । ଏହି ବିଗ୍ରହଟି ପ୍ରଥମାବସ୍ଥାରେ କୌଣସି ଏକ ବୌଦ୍ଧ ମନ୍ଦିରରେ ପୂଜିତ ହେଉଥିଲା । ମନ୍ଦିରଟି ବର୍ତ୍ତମାନ ଲୁପ୍ତ । ଉକ୍ତ ବିଗ୍ରହଟି ମାଟି ଖୋଳାହୋଇ ବାହାରିଥିବାରୁ ଏପରି ଅନ୍ୟ କେତେକ ବିଗ୍ରହ କାଳ-କ୍ରମେ ମାଟି ଭିତରେ ପୋତିହୋଇ ପଡ଼ିଥିବା କିମ୍ବା ଜାତସାରରେ ଭୂତଳରେ ଲୁକ୍କାୟିତ ରଖାଯାଇଥିବା ଅନୁମାନ ଯୁକ୍ତିସଙ୍ଗତ । ଅନ୍ୟ ଏକ କ୍ଷୁଦ୍ର ଅବଲୋକିତେଶ୍ବର ବିଗ୍ରହର ଅଂଶବିଶେଷ ବର୍ତ୍ତମାନ କପିଳପ୍ରସାଦ ଗ୍ରାମ ସୀମାନ୍ତରେ ଥିବା ଗୃହରେ ପୂଜିତ ନାଗ ଓ ନାଗୀ ମୂର୍ତ୍ତି ନିକଟରେ ରଖାଯାଇଛି ।

## ଅର୍ଘ୍ୟକା-ବର୍ତ୍ତିକା ମଠ—

ଭୌମସମ୍ରାଟ୍ ଶାନ୍ତିକରଦେବଙ୍କ ରାଜତ୍ବ କାଳରେ ୯୩ସମ୍ବତ୍‌ରେ ଛଅ ଧାଡରେ ଖୋଦିତ ଏକ ଲେଖ ଧଉଳେଶ୍ବର ମନ୍ଦିର ଥିବା ପାହା-ଡ଼ର ଦକ୍ଷିଣ ପାଖରେ ଥିବା ଏକ ଗୁମ୍ଫାରେ ଦେଖାଯାଏ । ପଣ୍ଡିତ ବିନାୟକ ମିଶ୍ର ଏହାର ନିମ୍ନଲିଖିତ ଶୁଦ୍ଧପାଠ ପ୍ରଦାନ କରିଛନ୍ତି । ଯଥା—

୧ମ ଧାଡ଼ି — "ଶ୍ରୀ ଶାନ୍ତିକର ଦେବରାଜ୍ୟସ-

୨ୟ ,, — ମ୍ବତ୍ ୯୦,୩, ଇଜ୍ୟାଗର୍ଭଜାତ

୩ୟ ଧାଡ଼ି — ବିରଜା ବାସ୍ତବ୍ୟ ବୈଦ୍ୟ ନନ୍ନଟ ପୁତ୍ର

୪ର୍ଥ „ — ଖ୍ରୀମଟେନ ଚ ପୌତ୍ର ଭଟ୍ଟ

୫ମ „ — ଲେପୁମକେନାର୍ଦ୍ଧ୍ୟକା ବରଟିକା

୬ଷ୍ଠ „ — ମଠୋଽୟଂ ଦ୍ୱାଭ୍ୟାଂ କାରିତୋ" (୪)

ଅର୍ଥାତ୍ ଶ୍ରୀ ଶାନ୍ତିକରଦେବଙ୍କ ରାଜତ୍ୱରେ ୯୩ ସମ୍ବତ୍ସରରେ ଇଜ୍ୟା ଗର୍ଭ-ଜାତ ବିରଜା ବାସ୍ତବ୍ୟ ବୈଦ୍ୟ ନନ୍ନଟଙ୍କ ପୁତ୍ର ଖ୍ରୀମଟ ଓ ପୌତ୍ର ଭଟ୍ଟ ଲେପୁମକ ଉଭୟଙ୍କ ଦ୍ୱାରା 'ଅର୍ଦ୍ଧ୍ୟକା ବରଟିକା' ନାମକ ମଠ ତୋଷଳୀ ନଗରରେ ପ୍ରତିଷ୍ଠିତ ହୋଇଥିଲା । ଏଥିରେ ବ୍ୟବହୃତ ସମ୍ବତ୍ ଭୌମସମ୍ବତ୍ ରୂପେ ଗୃହୀତ ହୋଇଅଛି । ମୋର ଗଣନା ଅନୁଯାୟୀ ୭୧୪ ଖ୍ରୀଷ୍ଟାବ୍ଦରୁ ଭୌମସମ୍ବତ୍ ପ୍ରଚଳିତ ହୋଇଥିବାରୁ (୫) ଏହି ଲେଖର ସମୟ ହେଉଛି ୭୧୪+୯୩=୭୦୭ ଖ୍ରୀଷ୍ଟାବ୍ଦ । 'ଓଡ଼ିଶାରେ ବୌଦ୍ଧଧର୍ମ' ସମ୍ବନ୍ଧରେ ଇଂରାଜୀ ଭାଷାରେ ଅତି ଉପାଦେୟ ପୁସ୍ତକ ପ୍ରକାଶ କରିଥିବା ଡକ୍ଟର ଶ୍ରୀ ନବୀନ କୁମାର ସାହୁ ଏହାକୁ ଏକ ବୌଦ୍ଧ ଅନୁଷ୍ଠାନ ରୂପେ ଗ୍ରହଣ କରିଛନ୍ତି । (୬) କିନ୍ତୁ ତାଙ୍କର ଏହି ମତ ଗ୍ରହଣୀୟ ନୁହେ । ଭଟ୍ଟ ପଦବୀ କୁଳୀନ ବ୍ରାହ୍ମଣମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବାରୁ ଖ୍ରୀମଟ ଓ ଭଟ୍ଟ ଲେପୁମକଙ୍କୁ ବୌଦ୍ଧ ସନ୍ୟାସୀ ରୂପେ ଗ୍ରହଣ କରାଯାଇ ନ ପାରେ । ବିଶେଷତଃ ମଠ ଏକ ବ୍ରାହ୍ମଣ୍ୟ ଅନୁଷ୍ଠାନ । ବୌଦ୍ଧ 'ବିହାର'ର ପ୍ରତିଦ୍ୱନ୍ଦୀ ରୂପେ ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ କାଳରେ ବିଭିନ୍ନ ଧର୍ମପୀଠରେ ବହୁ ମଠ ସ୍ଥାପିତ ହୋଇଥିଲା । ମଠ ଓ ବିହାର ମଧ୍ୟରେ ପାର୍ଥକ୍ୟ ଥିବାରୁ ଭୌମବଂଶୀୟା ମହାରାଣୀ

---

(୪) Orissa under the Bhauma Kings, p. 11.

(୫) ୭୧୪ ଖ୍ରୀଷ୍ଟାବ୍ଦରୁ ଭୌମ ସମ୍ବତ୍‌ର ପ୍ରଚଳନ ହୋଇଥିବା ମୋର ପ୍ରକାଶ ଅପେକ୍ଷାରେ ଥିବା ଉତ୍କଳ ଇତିହାସରେ ବିଶଦ ଭାବରେ ଆଲୋଚିତ ହୋଇଅଛି ।

(୬) Buddhism in Orissa, p. 90

ତ୍ରିଭୁବନ ମହାଦେବୀଙ୍କ ଢେଙ୍କାନାଳ ତାମ୍ରଶାସନରେ 'ମଠ' ଓ 'ବିହାର' ଉଭୟର ସ୍ୱତନ୍ତ୍ର ଉଲ୍ଲେଖ ଦେଖାଯାଏ । ଯଥା—

"ନିଃମେଷ ନଭନ୍ତର ବିରଚିତ ବିବିଧ **ମଠ-ବିହାର-ପ୍ରାସାଦ** ପ୍ରବନ୍ଧୈଃ ପୁରନ୍ଦରପୁରବେଷ୍ଟଣସୋପାନବନ୍ଧୈରିବ ମଣ୍ଡିତ-ମହୀମଣ୍ଡଳେତ୍ୟାଖଣ୍ଡଳ ପ୍ରଭବେଷୁ" ॥

ଉକ୍ତ ଶାନ୍ତିକରଙ୍କ ରାଜତ୍ୱରେ ଉଦୟଗିରିର ଗଣେଶ ଗୁମ୍ଫାରେ ଖୋଦିତ ଅନ୍ୟ ଏକ ଲେଖରୁ ଜଣାଯାଏ ଯେ, ଭଟ୍ଟ୍ୟା ଗର୍ଭ ସମ୍ଭୂତ ବିରଜାବାସୀ ନନ୍ନଟଙ୍କ ପୁତ୍ର ଭିକ୍ଷୁ ଶ୍ରୀମଠ ଉଦୟଗିରି ଗୁମ୍ଫାରେ ଏକ ବର୍ଷ କାଳ ତପସ୍ୟା କଲା ପରେ (ବେଦ ସଙ୍ଗଧାରୀ ମୁନିମାନଙ୍କ ସମ୍ମୁଖରେ) ଶ୍ରୀ ଗଣେଶଙ୍କ ସନ୍ନିଧିରେ ବାନପ୍ରସ୍ଥ ବ୍ରତ ଅବଲମ୍ବନ କରିବା ପାଇଁ ଶପଥ ଗ୍ରହଣ କରିଥିଲେ । 'ବାନପ୍ରସ୍ଥ' ବେଦସମ୍ମତ ବର୍ଣ୍ଣାଶ୍ରମ ଧର୍ମର ତୃତୀୟାଶ୍ରମ ହୋଇଥିବାରୁ ଶ୍ରୀମଠଙ୍କୁ ବୌଦ୍ଧ ସନ୍ନ୍ୟାସୀ ରୂପେ ଗ୍ରହଣ କରିବା ଅସମ୍ଭବ । ବେଦର ଅର୍ଥ ବେଦଜ୍ଞ । ଯଥା— ଦ୍ୱିବେଦୀ, ତ୍ରିବେଦୀ, ଚତୁର୍ବେଦୀ । ତେଣୁ ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ, ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିବା ଶ୍ରୀ ଶାନ୍ତିକର ଦେବଙ୍କ ରାଜତ୍ୱ ବେଳକୁ ଖଣ୍ଡଗିରି, ଉଦୟଗିରି ଓ ଧଉଳୀର ଗୁମ୍ଫାଗୁଡ଼ିକରେ ବହୁ ବ୍ରାହ୍ମଣ୍ୟ ମତାବଲମ୍ବୀ ତପସ୍ୱୀ ତପସ୍ୟା କରୁଥିଲେ ।

ଧଉଳୀରେ ମଠ ପ୍ରତିଷ୍ଠାତା ଭଟ୍ଟ ନନ୍ନଟ ଭୌମସମ୍ରାଟ୍ ଉନ୍ମତ୍ତ କେଶରୀଙ୍କ ସାମନ୍ତରାଜା ଗଙ୍ଗବଂଶୀୟ ଜୟବର୍ମ ଦେବ ଓ ତାଙ୍କ ପର-ବର୍ତ୍ତୀ ଅନନ୍ତ ବର୍ମାଙ୍କ ଠାରୁ ଗ୍ରାମଦାନ ଗ୍ରହଣ କରିଥିବା ବତ୍ସଗୋତ୍ର, ବାଜସନେୟ ଚରଣ କାଣ୍ୱ ଶାଖାଧ୍ୟାୟୀ ବତ୍ସ, ଦର୍ଭ, ଭୃଗୁ, ଚ୍ୟବନ ଓ ଜମଦଗ୍ନି ପଞ୍ଚର୍ଷି ପ୍ରବର ଭଟ୍ଟ ଶ୍ରୀ ନନ୍ନଟ ମହତ୍ତର ଏକ ଓ ଅଭିନ୍ନ ବ୍ୟକ୍ତି ଥିବାର ମନେହୁଏ । ପ୍ରଥମ ଦାନପତ୍ରଟି ୫୦ ସମ୍ବତ୍ ଓ ଦ୍ୱିତୀୟ ଦାନପତ୍ରଟି ୭୯ ସମ୍ବତ୍‌ରେ ଲିଖିତ ହୋଇ-

ଥିବାରୁ (୭) ତାଙ୍କ ପୁତ୍ର ଶ୍ରୀମନ୍ତ ୯୩ ସମ୍ବତ୍‌ରେ ଧଉଳୀରେ ମଠ ପ୍ରତିଷ୍ଠା କରିଥିବା ସର୍ବଥା ସମ୍ଭବପର । ଭୌମ ରାଜତ୍ୱ କାଳର ଜଣେ ପ୍ରଖ୍ୟାତ ବ୍ୟକ୍ତି ନନ୍ନଟ ଭଟ୍ଟଙ୍କ ପୁତ୍ର ଶ୍ରୀମନ୍ତ ଲେଖ ଖୋଦିତ ହୋଇଥିବା ଗୁମ୍ଫାର ଦକ୍ଷିଣକୁ କୌଣସି ସ୍ଥାନରେ ମଠ ପ୍ରତିଷ୍ଠା କରିଥିଲେ । ତାହା ଅଧୁନା ସମ୍ପୂର୍ଣ୍ଣ ରୂପେ ବିଲୁପ୍ତ ହୋଇଛି ।

## ସୋମବଂଶୀ ରାଜତ୍ୱ କାଳରେ ଧଉଳୀ—

ସେହି ସୋମବଂଶୀୟ ପ୍ରବଳ ପରାକ୍ରମ ପ୍ରଖ୍ୟାତ ନରପତି 'ମହାରାଜାଧିରାଜ' 'ସୋମକୁଳତିଳକ' 'ତ୍ରିକଳିଙ୍ଗାଧିପତି' ପ୍ରଥମ ଯଯାତି (ଆ: ୯୨୧—୯୭୫ ଖ୍ରୀଷ୍ଟାବ୍ଦ) ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠା ଓ ବୌଦ୍ଧଧର୍ମର ପ୍ରାଧାନ୍ୟ କ୍ଷୁର୍ଣ୍ଣ କରିବା ପାଇଁ ଭୌମମାନଙ୍କ ରାଜଧାନୀ ବିରଜା କ୍ଷେତ୍ରରେ ଏକ ବିରାଟ ଶୁଭସ୍ତମ୍ଭ ପ୍ରତିଷ୍ଠା ପୂର୍ବକ ଦଶାଶ୍ୱମେଧ ଯଜ୍ଞ ସଂପନ୍ନ କରିଥିଲେ; ଚତୁର୍ଦ୍ଦିଗରେ ବୌଦ୍ଧ ଓ ଜୈନକୀର୍ତ୍ତି ମଣ୍ଡିତ ଏକାମ୍ର କ୍ଷେତ୍ରରେ ଭାରତ ବିଖ୍ୟାତ କମନୀୟ କାରୁକାର୍ଯ୍ୟ ମଣ୍ଡିତ ଉତ୍ତୁଙ୍ଗ ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ; ଶ୍ରୀକ୍ଷେତ୍ରରେ ୩୮ ହାତ ଉଚ୍ଚ ଏକ ଦେଉଳ ତୋଳି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠିତ କରିଥିଲେ; ତାଙ୍କର ଦୃଷ୍ଟି ଉତ୍କଳର ପ୍ରାଚୀନତମ ବୌଦ୍ଧ-କେନ୍ଦ୍ର ତୋଷଳୀ ପ୍ରତି ଆକୃଷ୍ଟ ହୋଇଥିବା ସେହି ଧର୍ମ ପ୍ରତିଦ୍ୱନ୍ଦ୍ୱିତା ଯୁଗରେ ସ୍ୱତଃସିଦ୍ଧ ପରି ମନେହୁଏ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଶୁଭସ୍ତମ୍ଭ ଓ ଦଶାଶ୍ୱମେଧ ଘାଟ ଅଦ୍ୟାପି ଯାଜପୁରରେ ବିଦ୍ୟମାନ ।

ଏ ସମ୍ପର୍କରେ କୌଣସି ଲିଖିତ ପ୍ରମାଣ ନ ମିଳିଥିଲେ ମଧ୍ୟ ପ୍ରାତ୍ନ-ତାତ୍ତ୍ୱିକ ଅନୁସନ୍ଧାନ ଚଳାଇ ଡକ୍ଟର ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଯେଉଁ ସୁଚିନ୍ତିତ ମତ ପ୍ରଦାନ କରିଛନ୍ତି ତାହା ପ୍ରଣିଧାନଯୋଗ୍ୟ । ସେ ଧଉଳୀ ପାହାଡ଼ର ପଶ୍ଚିମ ଦ୍ରୋଣୀରେ ଦୟାନଦୀ କୂଳରେ ବର୍ତ୍ତମାନ

---

(୭) S. N. Rajguru —Inscriptions of Orissa, Vol, II, p. 260 and 270.

ଏକ କ୍ଷୁଦ୍ର ମନ୍ଦିରରେ ପୂଜିତ ଅତି ଚମତ୍କାର ଗଣେଶ ମୂର୍ତ୍ତିକୁ ନିରୀକ୍ଷା କରି ଏହା ସହିତ ଲିଙ୍ଗରାଜ ମନ୍ଦିରର ଦକ୍ଷିଣ ବାଡ଼ରେ ପାର୍ଶ୍ୱ ଦେବତା ରୂପେ ସ୍ଥାପିତ ଗଣେଶ ବିଗ୍ରହର ଆକୃତି, ବେଶଭୂଷା ଓ କେଶ ପ୍ରସାଧନ ପ୍ରଭୃତିରେ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ଥିବା ପ୍ରତିପାଦନ କରିଛନ୍ତି । ଯଥା—

"The image of Ganeśa, the presiding deity of the temple is a close proto type of the one to be found in the southern niche of the Lingarāja Both the images are almost identical even in their details of decorations and the arrangement of the hair." (୮)

ତେଣୁ 'ସିଦ୍ଧତୀର୍ଥ' ରୂପେ (୯) ପ୍ରଖ୍ୟାତ 'ଏକାମ୍ର କ୍ଷେତ୍ର'ର ସୀମାରେ 'ସିଦ୍ଧଗଣେଶ' ନାମରେ ଅଭିହିତ ଏହି ଗଣନାଥଙ୍କ ନିମିତ୍ତ ସ୍ୱାତନ୍ତ୍ର୍ୟ ଯଥାର୍ଥ ଏକ ମନ୍ଦିର ତୋଳିଥିବା ସର୍ବଥା ସମ୍ଭବପର । ହୁଏତ ଉତ୍କୋଳ ସ୍ଥାନରୁ ବୌଦ୍ଧମାନଙ୍କ ଦ୍ୱାରା ପୂଜିତ 'ଗଜବଦନ'ର ମାହାତ୍ମ୍ୟ କ୍ଷୁର୍ଣ୍ଣ କରିବା ପାଇଁ ଯଯାତି 'ଗଜବଦନ' ଗଣେଶଙ୍କ ପୂଜାର ପ୍ରଚାର ନିମିତ୍ତ ଏହି ଚମତ୍କାର ବିଗ୍ରହ ନିର୍ମାଣ କରି ଧଉଳି ପାହାଡ଼ ତଳୀ-ର ଏକ ସ୍ୱତନ୍ତ୍ର ମନ୍ଦିରରେ ପ୍ରତିଷ୍ଠିତ କରିଥିବେ । ଅଥବା 'ସିଦ୍ଧ' ନାମରେ ଅଭିହିତ ତାନ୍ତ୍ରିକ ବୌଦ୍ଧାଚାର୍ଯ୍ୟଙ୍କ ମତାବଲମ୍ବୀ ବୌଦ୍ଧମାନଙ୍କୁ ବ୍ରାହ୍ମଣ୍ୟ ଧର୍ମ ପ୍ରତି ଆକୃଷ୍ଟ କରିବା ପାଇଁ ବୌଦ୍ଧକେନ୍ଦ୍ର ଧଉଳିରେ ଏକ ମନ୍ଦିର ନିର୍ମାଣ ପୂର୍ବକ ଏହି ତାନ୍ତ୍ରିକଙ୍କ ସିଦ୍ଧ ଗଣେଶ ବିଗ୍ରହ ପ୍ରତିଷ୍ଠା କରିଥିବେ । ଏହି ସିଦ୍ଧ ଗଣେଶଙ୍କ ମନ୍ଦିର ନିକଟରେ ଅବସ୍ଥିତ

---

(୮) Archaeological Remains at Bhubaneswar, p. 167.

(୯) ଯଯାତିଙ୍କ ବଂଶଧର ଉଦ୍ୟୋତକେଶରୀଙ୍କ ବ୍ରହ୍ମେଶ୍ୱର ଲେଖରେ ଏକାମ୍ର ସିଦ୍ଧତୀର୍ଥ ରୂପେ ବର୍ଣ୍ଣିତ ହୋଇଅଛି—
"ଏକାମ୍ରେ ସିଦ୍ଧତୀର୍ଥେ ତରୁବରକୁଳୀ ଶୁଭ୍ରଶାଳା ସମେତ"

ଏକାମ୍ର କ୍ଷେତ୍ରର ସୀମା ନିର୍ଦ୍ଦେଶକ (୧୦) 'ବନ୍ଧୁରଙ୍ଗେଶ୍ବର' ମନ୍ଦିରକୁ ମଧ୍ୟ ଯଯାତିଙ୍କ ଏକ କୀର୍ତ୍ତିରୂପେ ଗ୍ରହଣ କରାଯାଇପାରେ । ଏହି ମନ୍ଦିରର ମୁଖଶାଳା ବର୍ତ୍ତମାନ ଲୁପ୍ତ । କେବଳ ଏହାର ନମ୍ଭଗ ବର୍ତ୍ତମାନ ବିଦ୍ୟମାନ । ଏହାର ଉତ୍କଳୀୟ ସମୟରେ ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ମୋ ହାର ପ୍ରମୁଖ ତଦାରଖ ଥିବା ସମୟରେ ୧୯୬୨ ମସିହାରେ ସଂପନ୍ନ ହୋଇଥିଲା ।

୧୮୩୮ ଖ୍ରୀଷ୍ଟାବ୍ଦରେ ମାରଖାମ କିଟୋଙ୍କ ଧଉଳୀ ପରିଦର୍ଶନ ସମୟରେ ବୋଧହୁଏ ଗଣେଶ ମନ୍ଦିର ଧ୍ୱଂସପ୍ରାପ୍ତ ହୋଇଥିବାରୁ ବନ୍ଧୁ-ରଙ୍ଗେଶ୍ବର ମନ୍ଦିରରେ ଗଣେଶ ମୂର୍ତ୍ତି ଅବସ୍ଥାପିତ ହୋଇଥିଲେ । ସେ ଏଠାରେ ଅନ୍ୟ କେତେକ ମନ୍ଦିରର ଧ୍ୱଂସାବଶେଷ ମଧ୍ୟ ଲକ୍ଷ୍ୟ କରିଥିଲେ—

"There is a fine temple dedicated to Ganesa and Mahādeva at the western cave, also ruins of several temples." (୧୧)

ତେଣୁ କିଟୋ ସାହେବଙ୍କ ୧୮୩୮ରେ ଧଉଳୀ ପରିଦର୍ଶନ ସମୟରେ ସିଦ୍ଧ ଗଣେଶଙ୍କ ପ୍ରାଚୀନ ମନ୍ଦିର ଭାଙ୍ଗି ପଡ଼ିଥିବାରୁ ବନ୍ଧୁରଙ୍ଗେଶ୍ବର ମନ୍ଦିର ମଧ୍ୟରେ ପୂଜିତ ହେଉଥିଲେ । ଗଣେଶଙ୍କ ବର୍ତ୍ତମାନ ମନ୍ଦିର ୧୮୩୮ ଖ୍ରୀଷ୍ଟାବ୍ଦ ପରେ କେବେ ନିର୍ମିତ ହୋଇଥିଲା । ୧୯୬୨ରେ ବନ୍ଧୁରଙ୍ଗେ-ଶ୍ବର ମନ୍ଦିର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ଚାଲିଥିବା ସମୟରେ ଚାରିପଟେ ଥିବା ଜଙ୍ଗଲ ସଫା କରାଯାଇ ଏବଂ ମାଟି ପଥର ଗୁଡ଼ସବୁ ଛଡ଼ାଯାଇ ଏହା

(୧୦) "ଖଣ୍ଡାଚଳାତ୍ ସମାସାଦ୍ୟ ଯଜ୍ଞାଶ୍ରେ କୁଣ୍ଡଳେଶ୍ବରଃ
ଆସାଦ୍ୟ ବାଗ୍ଭବୀଦେବୀଂ ବନ୍ଧୁରଙ୍ଗେଶ୍ବରାବଧି
କ୍ଷେତ୍ରମେତତ୍ ସମାଦିଷ୍ଟଂ ଚକ୍ରାକାରଂ ଶୁଭଂ ମୁନେ
ସର୍ବପାପଘ୍ନ ମତୁଲଂ ନାନାତୀର୍ଥବିଭୂଷିତଂ ॥"
(ସ୍ବର୍ଣ୍ଣାଦ୍ରି ମହୋଦୟ, ପ୍ରଥମ ଅଧ୍ୟାୟ)

(୧୧) J. A. S., 1838, Vol. VII.

ନିକଟରେ ଥିବା ଧ୍ୱସ୍ତ ପ୍ରାଚୀନ ମନ୍ଦିର ଗୁଡ଼ିକରେ ବ୍ୟବହୃତ ବହୁ ବନ୍ଧନମାଳା କନ୍ଦାପଥର ସଂଗୃହୀତ ହୋଇଥିଲା ।

## ବୌଦ୍ଧ ଲୋକନାଥ ମନ୍ଦିର—

ଯଯାତି 'ପରମ ମାହେଶ୍ୱର' ଓ ବ୍ରାହ୍ମଣ୍ୟ ଧର୍ମର ପ୍ରଧାନ ପୃଷ୍ଠ-ପୋଷକ ଥିଲେ ମଧ୍ୟ ବୌଦ୍ଧବିଦ୍ୱେଷୀ ଥିବାର କୌଣସି ପ୍ରମାଣ ମିଳନାହିଁ । ପରନ୍ତୁ ତାଙ୍କ ସମୟରେ ବା ତାହାର କିଛିକାଳ ପରେ ଭୁବନେଶ୍ୱରରେ ବୌଦ୍ଧ ଲୋକନାଥଙ୍କ ପାଇଁ ଏକ ମନ୍ଦିର ନିର୍ମିତ ହୋଇଥିବାର ପ୍ରମାଣ ମିଳିଲାଣି । ୧୯୫୨ ମସିହାରେ ବ୍ରହ୍ମେଶ୍ୱର ମନ୍ଦିର ଉତ୍ତରକୁ ଗଙ୍ଗୁଆ ତୀରବର୍ତ୍ତୀ ଏକ ସ୍ଥଳରେ ହଳ କରୁଥିବା ସମୟରେ ମୁଗୁନି ପଥରରେ ତିଆରି ମସ୍ତକ ବିହୀନ ଏକ ଚମତ୍କାର ଲୋକନାଥ ବିଗ୍ରହ (୫୪୫" x ୨୭୫") ମାଟି ଭିତରୁ ବାହାରିଥିଲା । (୧୨) ଲିଙ୍ଗରାଜ ମନ୍ଦିରରେ ଖଚିତ କାର୍ତ୍ତିକେୟ ଓ ପାର୍ବତୀ ପାର୍ଶ୍ୱଦେବତା ଦ୍ୱୟଙ୍କ ଖୋଦନ ଶୈଳୀ ସହିତ ଏହାର ଖୋଦନ ଶୈଳୀର ସାମଞ୍ଜସ୍ୟ ଥିବାରୁ ଏହାକୁ ଦଶମ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ । ଏହି ବିଗ୍ରହଟି ପ୍ରଥମାବସ୍ଥାରେ ଏକ ସ୍ୱତନ୍ତ୍ର ମନ୍ଦିରରେ ପୂଜିତ ହେଉଥିଲା । ପରବର୍ତ୍ତୀ କାଳରେ ବୌଦ୍ଧ ବିତାଡ଼ନ କାଳରେ ଏହି ମୂର୍ତ୍ତିଟିକୁ ଭାଙ୍ଗି ମାଟିତଳେ ପୋତିଦେଇ ଥିବାର ଅନୁମାନ କରାଯାଏ ।

## ଅଗରଗଡ଼ ନିକଟରେ ମହାଯାନ କେନ୍ଦ୍ର—

୧୯୫୮ ମସିହାରେ ଧଉଳୀ ପାହାଡ଼ର ଦକ୍ଷିଣକୁ ପ୍ରାୟ ଦଶ-ମାଇଲ ଦୂରରେ ଅଗରଗଡ଼ ପାହାଡ଼ ଠାରୁ ଅଳ୍ପ ଦୂରରେ ଅବସ୍ଥିତ ଅଗରଗଡ଼ ମୌଜାର ଏକ ସ୍ଥଳ ହଳ କରୁଥିବା ସମୟରେ ମୁଗୁନି ପଥରରେ ତିଆରି ଅତି ଚମତ୍କାର କାରୁକାର୍ଯ୍ୟ ମଣ୍ଡିତ କ୍ଷୁଦ୍ରାବୟବ (ପ୍ରାୟ ୨ ଫୁଟ ଉଚ୍ଚ) ଗୋଟିଏ 'ବଜ୍ରଯାନ' ବିଗ୍ରହ ମାଟି ଭିତରୁ ଅକ୍ଷତ ଅବସ୍ଥାରେ ବାହାରିଥିଲା । ଏଗୁଡ଼ିକ ବାହାରିବା ମାତ୍ରେ ହରିପୁର

---

(୧୨) O. H. R. J., Vol. II, pp. 41—44

ଗ୍ରାମବାସୀମାନେ ସେଗୁଡ଼ିକ ନେଇ ଗାଁ'ର ଭାଗବତ ଘରେ ରଖି ପୂଜା କରିବାକୁ ଲାଗିଲେ । ପ୍ରଥମେ ମୁଁ ସେଠାକୁ ଯାଇ ତନ୍ନତନ୍ନ କରି ମୂର୍ତ୍ତି-ଗୁଡ଼ିକ ପରୀକ୍ଷା କରି ସେ ସମ୍ପର୍କରେ ବିବରଣୀଟି ଆଣିଲି ।

ପ୍ରଥମ ମୂର୍ତ୍ତିଟି ଅଷ୍ଟଭୁଜ, ପଦ୍ମାସନରେ ଉପବିଷ୍ଟ, ତ୍ରିମୁଖ, ଢଳ-ନୟନ, ମୁକୁଟ ଓ କିରୀଟ ମଣ୍ଡିତ, ମାଳା ଓ ଉପବୀତ ସୂତ୍ର ଶୋଭିତ, ମସ୍ତକୋପରି ଏକ ଧ୍ୟାନୀ ବୁଦ୍ଧମୂର୍ତ୍ତି ଅଛି । ମୁଣ୍ଡ ଉପରେ ହାସାକାର ପ୍ରଭାମଣ୍ଡଳ । ଉପରର ଦୁଇକୋଣରେ ପୁଷ୍ପମାଳାଧାରିଣୀ ଦୁଇଟି ଅପ୍‌ସରା ମୂର୍ତ୍ତି । ଉର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ତୂଣୀର । ତାହା ତଳକୁ ଥିବା ଅନ୍ୟ ତିନିହସ୍ତରେ ଯଥାକ୍ରମେ ଅଙ୍କୁଶ, ଖଡ୍‌ଗ ଓ ବଜ୍ର । ଉପରେ ବାମହସ୍ତରେ ଚାପ, ତା ତଳକୁ ତିନି ହସ୍ତରେ ଯଥାକ୍ରମେ ଘଣ୍ଟି, ମୁଦ୍ରା ଓ ପାଶ । ପାଦପୀଠର ଦୁଇ କୋଣରେ ଦୁଇଟି ଗଜସିଂହ ମୂର୍ତ୍ତି, ପୀଠରେ ଜଣେ ପୂଜକ ପୂଜାନିରତ ।

ଦ୍ୱିତୀୟ ମୂର୍ତ୍ତିଟି ଷଡ଼ଭୁଜ, ତ୍ରିମୁଖ, ଢଳନୟନ, ମୁକୁଟ କିରୀଟ ମଣ୍ଡିତ, ମସ୍ତକୋପରି ଧ୍ୟାନୀବୁଦ୍ଧ, ଉପରର ଦକ୍ଷିଣ ହସ୍ତରେ ବଜ୍ର, ମଧ୍ୟ ଦକ୍ଷିଣ ହସ୍ତରେ ଅକ୍ଷମାଳା, ଉପରର ବାମହସ୍ତରେ କମଣ୍ଡଳୁ, ମଧ୍ୟ ବାମ ହସ୍ତରେ ମୁଦ୍ରା । ନିମ୍ନ ଦୁଇହସ୍ତରେ ଏକ ପ୍ରସ୍ଫୁଟିତ ପଦ୍ମ ଧାରଣ କରିଛନ୍ତି । ମୂର୍ତ୍ତିଟି ହାସାକୃତି ପ୍ରଭାମଣ୍ଡିତ, ପଦ୍ମାସନ ଉପରେ ଉପବିଷ୍ଟ, ଉପବୀତ ଓ କଣ୍ଠମାଳାଧାରୀ, ଦୁଇହାତ ବକ୍ଷରେ ଯୋଡ଼ା ଖଣ୍ଡ ପିନ୍ଧି-ଛନ୍ତି । ଉପରେ ଦୁଇ କୋଣରେ ପୁଷ୍ପମାଳା ଧାରିଣୀ ଅପ୍‌ସରା ମୂର୍ତ୍ତି । ପାଦପୀଠରେ ଦୁଇକୋଣରେ ଗଜସିଂହ, ପୀଠରେ ପୂଜକ ସମ୍ମୁଖରେ ଧୂପଦାନ, ଏହାର ଦକ୍ଷିଣରେ ଏକ ନର ମୂର୍ତ୍ତି ।

ତୃତୀୟ ମୂର୍ତ୍ତିଟି ପଦ୍ମାସନରେ ଚକା ପକାଇ ଉପବିଷ୍ଟ, ତ୍ରିମୁଖ କିନ୍ତୁ ଚତୁର୍ଭୁଜ, କିରୀଟ, ମୁକୁଟ ଶୋଭିତ, ଉପରେ ଦକ୍ଷିଣ ହସ୍ତରେ ବଜ୍ର ଓ ଉପରର ବାମ ହସ୍ତରେ ବାଇଗଣ ପରି ଗୋଟିଏ ଫଳ ଧରିଛନ୍ତି । ନିମ୍ନ ଦୁଇହସ୍ତ ଛନ୍ଦାଛନ୍ଦି ହୋଇ କୋଡ଼ ଉପରେ ରହିଛି । ପୀଠର ଦୁଇ କୋଣରେ ଗଜସିଂହ । ପୀଠରେ ଥିବା ପୂଜକର ବାମ-ଭାଗରେ ଦୁଇଟି ଧୂପଦାନ । ପ୍ରଭାମଣ୍ଡଳ ଉପରେ ଦୁଇ କୋଣରେ

ଦୁଇଟି ଅପ୍ସରା ମୂର୍ତ୍ତି । ପଦ୍ମାସନରେ ଉପବିଷ୍ଟ, ଉତ୍ତରୀୟପ୍ରଧାରୀ ଚତୁର୍ଥ ମୂର୍ତ୍ତିର ପଛପଟେ ଏକ ତୋରଣ ବିଦ୍ୟମାନ । ତା'ର ଉପର ଦୁଇ କୋଣରେ ଅପ୍ସରା, ଶିର ଉପରେ ଜଟାମୁକୁଟ, ଦ୍ୱିହସ୍ତ; ଦକ୍ଷିଣ ହସ୍ତ ଦକ୍ଷିଣ ଜଂଘ ଉପରେ ସ୍ଥାପିତ । ବାମହସ୍ତର ପାପୁଲି ଉପରମୁହାଁ ହୋଇ ବାମ ପାଦ ଉପରେ ରହିଛି । ପୀଠରେ ପଦ୍ମାସନ ତଳେ ଗୋଟିଏ ଗଜସିଂହ । ପୀଠରେ ଥିବା ପୂଜକ ଆସନରେ ପୋଥି ରଖି ସ୍ତୁତିପାଠ କରୁଛି । ପାଖରେ ଦୁଇଟି ଧୂପ ରହିଛି । ଭଗବତ ଘରେ ତୋଳନ'ର ସ୍ତମ୍ଭ ଉପରେ ବୃତ୍ତାକାର କ୍ରମଶଃ ସଙ୍କୁଚିତ ସାତ ଥାକ ବିଶିଷ୍ଟ ଏକ ପ୍ରସ୍ତର ରଖାଯାଇଛି । ଏହାର ଉପର ଥାକ ପଦ୍ମୁଆ ପରି ଦିଶୁଛି । ଏପରି ୩ । ୪ଟି ପଥର ବିଲ ମଧ୍ୟରୁ ମିଳିଥିବା ଲୋକେ କହିଥିଲେ ।

ଏହାର ଅଳ୍ପ କେତେଦିନ ପରେ ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଓ ମୁଁ ହରିପୁର ଗ୍ରାମକୁ ଯାଇ ସେଗୁଡ଼ିକ ପ୍ରାଦେଶିକ ସଂଗ୍ରହାଳୟକୁ ଆଣିବା ପାଇଁ ବହୁ ଚେଷ୍ଟା କରି ବିଫଳ ମନୋରଥ ହେଲୁ । ଅଳ୍ପଦିନ ପରେ ଗ୍ରାମବାସୀମାନେ ଚାନ୍ଦା କରି ଗୋଟିଏ ଦେଉଳ ତୋଳି ଏହି ମୂର୍ତ୍ତିଗୁଡ଼ିକର ପୂଜାର ବ୍ୟବସ୍ଥା କରିଦେଲେ । ରତ୍ନଗିରି ବୌଦ୍ଧ ବିହାରରେ ପ୍ରାତ୍ନତାତ୍ତ୍ୱିକ ଭୂଖୋଦନ ସମୟରେ ମୂଗୁନି ପଥରରେ ଖୋଦିତ ଏତାଦୃଶ କ୍ଷୁଦ୍ର ବିଗ୍ରହ ସମୂହର ଆବିଷ୍କାର ଘଟିବାରୁ ଅସୁରଗଡ଼ ନିକଟରେ ସୋମବଂଶୀ ରାଜତ୍ୱ କାଳରେ ଏକ ବିହାର ନିର୍ମିତ ହୋଇଥିବାର ସ୍ଥିର କରାଯାଇ ପାରେ ।

ଭୁବନେଶ୍ୱରର ପ୍ରସିଦ୍ଧ କମନୀୟ ସ୍ଥାପତ୍ୟ କୀର୍ତ୍ତି ଇନ୍ଦ୍ରେଶ୍ୱର (ବର୍ତ୍ତମାନ ରାଜାରାଣୀ ନାମରେ ପରିଚିତ) ମନ୍ଦିର ନିର୍ମାତା ସୋମବଂଶୀୟ ମହାରାଜାଧିରାଜ ଇନ୍ଦ୍ରରଥ (ଆ: ୧୦୦୦—୧୦୨୩ ଖ୍ରୀଷ୍ଟାବ୍ଦ) ତାଙ୍କ ରାଜତ୍ୱର ଷଷ୍ଠବର୍ଷରେ ଖଦିରବସ୍ତି ଭଟ୍ଟାରିକା (ତାରା)ଙ୍କ ପୂଜା ଆରାଧନା

ପାଇଁ ଯୋଉଣ ବିଷୟ (ବାଣପୁର ନିକଟବର୍ତ୍ତୀ ଯୋଖିଣ)ରେ ଗ୍ରାମଦାନ କରିଥିବା ତାଙ୍କର ବାଣପୁର ତାମ୍ରଶାସନରୁ ଜଣାଯାଏ । (୧୩)

ତାଙ୍କ ବଂଶଧର ସୋମବଂଶର ଜଣେ ପ୍ରବଳ ପରାକ୍ରମ ନରପତି ଶ୍ରୀ ଉଦ୍ୟୋତକେଶରୀଙ୍କ ମାତା ରାଣୀ କୋଳାବତୀ ତାଙ୍କ ପୁତ୍ରଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ 'ସିଦ୍ଧତୀର୍ଥ' ଏକାମ୍ର (ଭୁବନେଶ୍ୱର)ରେ ପଞ୍ଚାୟତନ ବିଶିଷ୍ଟ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ମଧ୍ୟ ତାଙ୍କ ରାଜତ୍ୱର ପଞ୍ଚମ ବର୍ଷରେ ଦିଗମ୍ବର ଜୈନମାନେ କୁମାରୀ ପର୍ବତ ବା ଖଣ୍ଡଗିରିର ଗୁମ୍ଫାମାନଙ୍କରେ ଚତୁର୍ବିଂଶତି ତୀର୍ଥଙ୍କର ଓ ସେମାନଙ୍କ ଶାସନ ଦେବୀ-ମାନଙ୍କର ବିଗ୍ରହ ଖୋଦନ ଓ ପ୍ରାଚୀନ ମନ୍ଦିରର ଜୀର୍ଣ୍ଣୋଦ୍ଧାର ଓ ଜୀର୍ଣ୍ଣ ବାପୀର ସଂସ୍କାର କାର୍ଯ୍ୟ ସଂପନ୍ନ କରିଥିଲେ । ତାଙ୍କ ରାଜତ୍ୱର ଅଷ୍ଟା-ଦଶ ବର୍ଷରେ ଉତ୍କୀର୍ଣ୍ଣ ଅନ୍ୟ ଏକ ଲେଖରେ (୧୪ କ) ପ୍ରସିଦ୍ଧ ଦିଗମ୍ବର ଜୈନ ଆଚାର୍ଯ୍ୟ ଶୁଭଚନ୍ଦ୍ରଙ୍କ ଖଣ୍ଡଗିରି (କୁମାରୀ ପର୍ବତ)ରେ ନିବାସ ସମ୍ବନ୍ଧରେ ଉଲ୍ଲେଖ ରହିଛି । (୧୪ ଖ) ଏକାଦଶ ଶତାବ୍ଦୀର ଶେଷଭାଗରେ ରାଜତ୍ୱ କରୁଥିବା ଉଦ୍ୟୋତକେଶରୀଙ୍କ ନାତି କର୍ଣ୍ଣଦେବ ଉତ୍କଳ ଦେଶସ୍ଥ ସୋଲଣପୁର ମହାବିହାରରୁ ଆଗତ ରାଣୀ କର୍ପୂରଶ୍ରୀଙ୍କୁ ଗ୍ରାମଦାନ କରିଥିବା ଜଣାଯାଏ । (୧୫) କର୍ଣ୍ଣଦେବଙ୍କ ପରେ ସୋମ-ବଂଶର ପତନ ଆରମ୍ଭ ହୋଇଗଲା ଏବଂ ଏହାର ଅଳ୍ପକାଳ ପରେ ୧୧୧୨ ଖ୍ରୀଷ୍ଟାବ୍ଦ ପୂର୍ବରୁ ସମଗ୍ର ଉତ୍କଳ ପ୍ରଥମ ଦିଗ୍‌ବିଜୟୀ ଗଙ୍ଗସମ୍ରାଟ୍ ଚୋଡ଼ଗଙ୍ଗଦେବଙ୍କ ଅଧିକାରଭୁକ୍ତ ହେଲା ।

---

(୧୩) ଉତ୍କଳର ଶ୍ରୀ କୁଞ୍ଜବିହାରୀ ତ୍ରିପାଠୀଙ୍କ ଦ୍ୱାରା ଝଙ୍କାର, ଅଷ୍ଟାଦଶ ବର୍ଷ, ୧୦ମ ସଂଖ୍ୟା, ପୃ ୭୨୧—୭୨୮ରେ ପ୍ରକାଶିତ ।

(୧୪ କ ଓ ଖ) E. I., Vol. XIII —Edited by R. D. Banarjee.

(୧୫) E. I., Vol. XXXIII —Edited by Mrs. Debala Mitra.

## ବୌଦ୍ଧ ଓ ବ୍ରାହ୍ମଣ୍ୟଧର୍ମ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା—

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରୁ ବୌଦ୍ଧବିଦ୍ୱେଷୀ ଶୈବ ପାଶୁପତ ମତର ଅଭ୍ୟୁଦୟ ଯୋଗୁଁ ପରବର୍ତ୍ତୀ ଯୁଗରେ ବ୍ରାହ୍ମଣ୍ୟ ଧର୍ମର ଅଧିକ ପ୍ରସାର ଘଟିଥିଲେ ମଧ୍ୟ ଉତ୍କଳରେ କେତେକ ପ୍ରସିଦ୍ଧ ବୌଦ୍ଧ ଆଚାର୍ଯ୍ୟଙ୍କ ଆବିର୍ଭାବ ଯୋଗୁଁ ବୌଦ୍ଧଧର୍ମ ଦ୍ୱାଦଶ ଶତାବ୍ଦୀ ଶେଷପର୍ଯ୍ୟନ୍ତ ନିଜର ଅସ୍ତିତ୍ୱ ରକ୍ଷା କରିବା ପାଇଁ ସମର୍ଥ ହୋଇଥିଲା । ସେହି ପ୍ରସିଦ୍ଧ ବୌଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ ପଞ୍ଚମ ଶତାବ୍ଦୀରେ ଆବିର୍ଭୂତ ବୌଦ୍ଧ-ନ୍ୟାୟର ଜନକ ଆଚାର୍ଯ୍ୟ ଦିଗ୍‌ନାଗ, ସପ୍ତମ ଶତାବ୍ଦୀରେ ବିଶେଷ ଖ୍ୟାତି ଅର୍ଜନ କରିଥିବା କଳିଙ୍ଗବାସୀ ଦାର୍ଶନିକ ଓ କବି ଧର୍ମକୀର୍ତ୍ତି ଓ ତାଙ୍କର କିଞ୍ଚିତ୍ ପରବର୍ତ୍ତୀ ବୌଦ୍ଧ ବଜ୍ରଯାନ ମତର ପ୍ରବର୍ତ୍ତକ ଇନ୍ଦ୍ରଭୂତିଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ ।

ଆଚାର୍ଯ୍ୟ ଦିଗ୍‌ନାଗ 'ପ୍ରମାଣ ସମୁଚ୍ଚୟ' ନାମକ ବୌଦ୍ଧ ନ୍ୟାୟ-ଗ୍ରନ୍ଥ ରଚନା କରି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । 'ସାଂଖ୍ୟକାରି-କା'ର ପ୍ରଣେତା ଈଶ୍ୱରକୃଷ୍ଣ ତାଙ୍କ ସହିତ ଶାସ୍ତ୍ରାଲୋଚନାରେ ପରାସ୍ତ ହୋଇଥିବା ଜନଶ୍ରୁତି ରହିଛି । ତାଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଓଡ଼ିଶା ରାଜା ଓ ତାଙ୍କର ମନ୍ତ୍ରୀ ଭଦ୍ରପାଳିତ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ଭଦ୍ରପାଳିତ ବୌଦ୍ଧ ମତର ପ୍ରଚାର ପାଇଁ ଉତ୍କଳରେ ଷୋଳଟି ମହାବିହାରର ପ୍ରତିଷ୍ଠା କରିଥିଲେ ।

ପ୍ରସିଦ୍ଧ ବୌଦ୍ଧ ଦାର୍ଶନିକ ଧର୍ମକୀର୍ତ୍ତି ଚତୁର୍ଦ୍ଦିଗରେ ବଂଶଧାରା ନଦୀ ବିଧୌତ ସମତଳ ଭୂଖଣ୍ଡ ଦ୍ୱାରା ବେଷ୍ଟିତ ଯୋଗମୁଣ୍ଡା ନାମକ ପର୍ବତରେ ତାଙ୍କର କର୍ମକେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଏହି ପର୍ବତଟି କୋରାପୁଟ ଜିଲ୍ଲାର ଗୁଣୁପୁର ସହରରେ ଅଦୂରବର୍ତ୍ତୀ ପଦ୍ମପୁର ନାମକ ଗ୍ରାମରେ ଅବସ୍ଥିତ । ପର୍ବତ ଶିଖର ଉପରେ ମାଳକଣ୍ଠେଶ୍ୱର ଓ ମଲ୍ଲିକେଶ୍ୱର ନାମକ ଦୁଇଟି ଶିବମନ୍ଦିର ଦଣ୍ଡାୟମାନ । କ୍ଷୁଦ୍ର ମାଳ-କଣ୍ଠେଶ୍ୱର ମନ୍ଦିର ଦେହରେ 'ଭଦନ୍ତ ଧର୍ମକୀର୍ତ୍ତି'ଙ୍କ ନାମ ପ୍ରସ୍ତର ଫଳକରେ ଉତ୍କୀର୍ଣ୍ଣ ହୋଇଅଛି । ସେ 'ନ୍ୟାୟବିନ୍ଦୁ' 'ପ୍ରମାଣବାର୍ତ୍ତିକ'

କାରିକା', 'ପ୍ରମାଣବିନିଶ୍ଚୟ', 'ତର୍କନ୍ୟାୟ' ପ୍ରଭୃତି ଗ୍ରନ୍ଥ ରଚନା କରି ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

ଐତିହାସିକ ତାରାନାଥଙ୍କ ମତରେ ଧର୍ମକୀର୍ତ୍ତି କେବଳ ଜଣେ ଭାରତ ପ୍ରସିଦ୍ଧ ଦାର୍ଶନିକ ନ ଥିଲେ । ସେ 'ଅମରୁ' ଓ 'ଭର୍ତ୍ତୃହରି'ଙ୍କ ପରି ଜଣେ ପ୍ରସିଦ୍ଧ କବି ଥିଲେ । କିନ୍ତୁ ତାଙ୍କ କୃତ କବିତାବଳୀ ବର୍ତ୍ତମାନ ଲୁପ୍ତ । ବୌଦ୍ଧମାନଙ୍କ ମଧ୍ୟରେ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ସେ ପୂର୍ବ ଭାରତର ପ୍ରସିଦ୍ଧ ବ୍ରାହ୍ମଣ୍ୟଧର୍ମ ପ୍ରଚାରକ କୁମାରିଲଭଟ୍ଟଙ୍କ ନିକଟରେ ପ୍ରଚ୍ଛନ୍ନ ଭୃତ୍ୟ ଭାବରେ କାର୍ଯ୍ୟ କରି ତାଙ୍କୁ ନିଜର ଅକାଟ୍ୟ ଯୁକ୍ତି ବଳରେ ପରାସ୍ତ କରିଥିଲେ । ଉକ୍ତ କିମ୍ବଦନ୍ତୀର ସତ୍ୟତା ଯାହା ହେଉ, ଏହା ନିଶ୍ଚିତ ଯେ, ଏହି ପ୍ରସିଦ୍ଧ ଦାର୍ଶନିକ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ଓ ବାଗ୍ମିତା ବଳରେ ଭାରତରେ ବୌଦ୍ଧଧର୍ମ ଅଧଃପତନର ଗତିରୋଧ କରିଥିଲେ । ତେଣୁ ୬୭୧ ଖ୍ରୀଷ୍ଟାବ୍ଦରେ ନାଳନ୍ଦା ପରିଦର୍ଶନ କରିଥିବା ଚୀନ୍‌ଦେଶୀୟ ବୌଦ୍ଧ ପରିବ୍ରାଜକ ଇତ୍‌ସିଙ୍ଗ୍ ତାଙ୍କ ପାଣ୍ଡିତ୍ୟର ଭୂୟସୀ ପ୍ରଶଂସା କରିଛନ୍ତି ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଓଡ଼ିଶା ରାଜ୍ୟର ଏକ ବ୍ରାହ୍ମଣ ବଂଶରେ ସମ୍ଭୂତ ମହାମଣ୍ଡଳାଚାର୍ଯ୍ୟ ପରମଗୁରୁ ରାହୁଲ ରୁଚିତାନ୍ତିକ ବୌଦ୍ଧମତ ପ୍ରଚାର କରି ଅବସନ୍ନ ବୌଦ୍ଧଧର୍ମକୁ ପୁନର୍ବାର ଲୋକପ୍ରିୟ କରିଥିଲେ । ସେ ଉତ୍କଳର ପ୍ରଥମ ପ୍ରସିଦ୍ଧ ବୌଦ୍ଧସମ୍ରାଟ୍ ଭୌମବଂଶୀୟ ଶ୍ରୀ ଶୁଭକର ଦେବ (ପ୍ରଥମ)ଙ୍କ ପୃଷ୍ଠପୋଷକତା ଲାଭକରି ଯାଜପୁର ଠାରୁ ୭ ମାଇଲ ଉତ୍ତର-ପଶ୍ଚିମରେ ଅବସ୍ଥିତ ଖଡ଼ିପଦା ଗ୍ରାମରେ ଏକ ବିହାର ପ୍ରତିଷ୍ଠା କରିଥିଲେ । ସେଠାରେ ଥିବା ଏକ ଅବଲୋକିତେଶ୍ୱର ବିଗ୍ରହରେ ତାଙ୍କର ଏକ ଲେଖ ବିଦ୍ୟମାନ । ଏହି ଐତିହାସିକ ବିଗ୍ରହଟି ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ଶ୍ରୀଯୁକ୍ତ ଅମଳାନନ୍ଦ ଘୋଷ ଏହି ଲେଖର ପାଠ ପ୍ରଥମେ ପ୍ରକାଶ କରିଥିଲେ । (୧୭)

---

(୧୭) E. I. Vol. XXIV, p. 247 ff

ରାହୁଲ ୨୫ଟି ତାନ୍ତ୍ରିକ ଗ୍ରନ୍ଥର ରଚୟିତା ରୂପେ ବିଶେଷ ଖ୍ୟାତି ଲାଭ କରିଥିଲେ । ସେ ନିଜର ଗଭୀର ପାଣ୍ଡିତ୍ୟ ଯୋଗୁଁ ପ୍ରସିଦ୍ଧ ନାଲନ୍ଦା ମହାବିହାରର ଧର୍ମାଧ୍ୟକ୍ଷ ପଦ ମଣ୍ଡନ କରିଥିଲେ । ସେ 'ସରହପାଦ' ନାମରେ ମଧ୍ୟ ଖ୍ୟାତ ଥିଲେ । ତାନ୍ତ୍ରିକ ବୌଦ୍ଧସାହିତ୍ୟ ମନ୍ଥନ କରିଥିବା ଡକ୍ଟର ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ମତରେ ସେ ୬୩୩ ଖ୍ରୀଷ୍ଟାବ୍ଦରେ ଜୀବିତ ଥିଲେ । ତିବ୍ବତରେ 'ମହାବ୍ରାହ୍ମଣ', 'ମହାଚାର୍ଯ୍ୟ', 'ମହାଯୋଗୀ', 'ଯୋଗୀଶ୍ୱର' ରୂପେ ଖ୍ୟାତିଲାଭ କରିଥିବା ମହାମଣ୍ଡଳାଚାର୍ଯ୍ୟ ରାହୁଲ ତାନ୍ତ୍ରିକ ବୌଦ୍ଧମତର ପ୍ରବର୍ତ୍ତକ ଓ ପ୍ରଥମ ସିଦ୍ଧାଚାର୍ଯ୍ୟ ରୂପେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲେ ।

ରାହୁଲଙ୍କ ପରବର୍ତ୍ତୀ ଓ ବୌଦ୍ଧ ବଜ୍ରଯାନ ମତର ପ୍ରବର୍ତ୍ତକ ରାଜା ଇନ୍ଦ୍ରଭୂତି 'ଉଡ୍ଡୀୟାନ ବିନିର୍ଗତ' ବା ଓଡ଼ିଶାବାସୀ ରୂପେ ପ୍ରଖ୍ୟାତ । ତାଙ୍କ ଦ୍ୱାରା ରଚିତ ୨୩ଟି ଗ୍ରନ୍ଥ ତିବ୍ବତର ଗ୍ରନ୍ଥାଗାରରେ ସଂରକ୍ଷିତ । 'ସାଧନମାଳା' ଗ୍ରନ୍ଥରେ ସଂଗୃହୀତ ଉଡ୍ଡୀୟାନ୍ ପୀଠର ଅଧିଷ୍ଠାତ୍ରୀ 'କୁରୁକୁଲ୍ଲା' ସାଧନାର ସେ ଥିଲେ ରଚୟିତା । ତାଙ୍କ ପ୍ରଣୀତ ପ୍ରସିଦ୍ଧ ଜ୍ଞାନସିଦ୍ଧି ଗ୍ରନ୍ଥ ସେ ଉଡ୍ଡୀୟାନ୍‌ର ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ପ୍ରଣିପାତ ପୂର୍ବକ ଆରମ୍ଭ କରିଛନ୍ତି । ଯଥା—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞାନବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧିବ୍ୟାପିନଂ ଗଗନୋପମମ୍ ।।"
(ମଙ୍ଗଳାଚରଣ ଶ୍ଳୋକ) (୧୭)

ଉକ୍ତ ଗ୍ରନ୍ଥରେ 'ବଜ୍ରଯାନ'ର ସାଧନତତ୍ତ୍ୱ ଓ ପଞ୍ଚଧ୍ୟାନୀ ବୁଦ୍ଧଙ୍କ ଉପାସନା ପଦ୍ଧତି ଆଲୋଚିତ ହୋଇଅଛି । ତାଙ୍କ ଶିଷ୍ୟ ପଦ୍ମସମ୍ଭବ ସୁଦୂର ତିବ୍ବତରେ 'ତନ୍ତ୍ରଯାନ' ପ୍ରଚାର କରିଥିଲେ । ତାଙ୍କର ଭଗିନୀ ଓ ଶିଷ୍ୟା

---

(୧୭) ଏହି ଅମୂଲ୍ୟ ଗ୍ରନ୍ଥ ବରୋଦାର 'ଗାଏକୱାଡ଼ ପ୍ରାଚ୍ୟବିଦ୍ୟା ଗବେଷଣା ପ୍ରତିଷ୍ଠାନ' (Gaekward Oriental Research Institute) ଦ୍ୱାରା ପ୍ରକାଶିତ ହୋଇଅଛି ।

ଲକ୍ଷ୍ମୀଙ୍କର ବୌଦ୍ଧ 'ସହଜଯାନ' ମତ ପ୍ରବର୍ତ୍ତନ କରିଥିଲେ । ମନୁଷ୍ୟର ଯୌନପ୍ରବୃତ୍ତିକୁ ଉଚ୍ଚତମ ସ୍ତରରେ ପରିଚାଳିତ କରି ନିବୃତ୍ତି ଲାଭ ସୁଗମ କରିବା ହେଉଛି ସହଜଯାନର ଲକ୍ଷ୍ୟ । ଏଦ୍ୱାରା ସାଧନା ପାଇଁ ଯୌନ-ଚର୍ଯ୍ୟା ଅବଶ୍ୟକ ଏବଂ ସେଥିପାଇଁ ନାରୀଶକ୍ତିର ସାହଚର୍ଯ୍ୟ ପ୍ରୟୋଜନ । ଯେ ନାରୀ ସମ୍ଭୋଗରେ ସିଦ୍ଧିଲାଭର ଏହି ଯେଉଁ ପନ୍ଥା ପ୍ରବର୍ତ୍ତନ କଲେ ତାହା କ୍ରମଶଃ ବ୍ୟାପକ ବିଭତ୍ସ ଯୌନସଂସ୍ପର୍ଶରେ ପରିଣତ ହୋଇ ବୌଦ୍ଧଧର୍ମର ଅଧଃପତନର ପଥ ଉନ୍ମୁକ୍ତ କରିଦେଲା ।

## ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଉତ୍କଳ ପର୍ଯ୍ୟଟନ —

ନବମ ଶତାବ୍ଦୀର ପ୍ରଥମ ପାଦରେ ପରିବ୍ରାଜକାଚାର୍ଯ୍ୟ ଶ୍ରୀ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଅଭ୍ୟୁଦୟ ଫଳରେ ଭାରତର ଧର୍ମ ଇତିହାସରେ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଥିଲା । ଏହି ସ୍ୱଳ୍ପାୟୁ ମହାପୁରୁଷ (୭୮୮—୮୨୦ ଖ୍ରୀଷ୍ଟାବ୍ଦ) ନିଜର ଆଶ୍ଚର୍ଯ୍ୟଜନକ ଧୀଶକ୍ତି ବଳରେ ଷୋଡ଼ଶ ବର୍ଷ ମଧ୍ୟରେ ବେଦ, ବେଦାନ୍ତ, ଉପନିଷଦ୍, ଷଡ଼୍ଦର୍ଶନ, ମହାକାବ୍ୟ ଓ ପୁରାଣ ପ୍ରଭୃତି ଶାସ୍ତ୍ରସାଗର ମନ୍ଥନ କରି ବ୍ରହ୍ମସୂତ୍ର, ଗୀତା ପ୍ରଭୃତିର ଉତ୍କୃଷ୍ଟ ଭାଷ୍ୟମାନ ରଚନା କରିଥିଲେ । ସେ ଷୋଡ଼ଶ ବର୍ଷ ବୟସରେ ଅଦ୍ୱୈତବାଦ ପ୍ରଚାର ନିମିତ୍ତ ସମଗ୍ର ଭାରତ ଭ୍ରମଣରେ ବହିର୍ଗତ ହୋଇଥିଲେ । ଏହି ପର୍ଯ୍ୟଟନ ସମୟରେ ସେ ଦକ୍ଷିଣ ଭାରତରେ ଶୃଙ୍ଗେରୀ, ପୂର୍ବରେ ଉତ୍କଳର ଶ୍ରୀକ୍ଷେତ୍ର, ପଶ୍ଚିମରେ ଗୁଜରାଟ ଅନ୍ତର୍ଗତ ଦ୍ୱାରକା ଓ ଉତ୍ତରରେ ହିମାଳୟ ପର୍ବତରେ ଅବସ୍ଥିତ ବଦ୍ରିନାଥ ଠାରେ ସ୍ୱ ଧର୍ମମତ ପ୍ରଚାର ପାଇଁ ଗୋଟିଏ ଗୋଟିଏ ମଠ ପ୍ରତିଷ୍ଠା କରି-ଥିଲେ । ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ପଦ୍ମପାଦାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠର ପ୍ରଥମ ଅଧୀଶ ରୂପେ ନିୟୋଜିତ ହୋଇଥିଲେ । ଶ୍ରୀ ଶଙ୍କର ବୌଦ୍ଧ ଜଗନ୍ନାଥ ଓ ଗୀତାର ଶ୍ରୀ ପୁରୁଷୋ-ତ୍ତମଙ୍କ ଅଭିନ୍ନତ୍ୱ ପ୍ରତିପାଦନ କରିବାରୁ ଶ୍ରୀ ପୁରୁଷୋତ୍ତମଙ୍କ ମାହାତ୍ମ୍ୟ ଓ ପ୍ରଭାବ ପରବର୍ତ୍ତୀ କାଳରେ କ୍ଷିପ୍ରଗତିରେ ବୃଦ୍ଧିଲାଭ କରିଥିବା ବହୁ ଲେଖଗତ ଓ ଗ୍ରନ୍ଥନିବଦ୍ଧ ପ୍ରମାଣ ଦ୍ୱାରା ପ୍ରତିପାଦିତ ହୁଏ । ଉତ୍କଳର

ଧର୍ମକ୍ଷେତ୍ରରେ ଶ୍ରୀ ଶଙ୍କରଙ୍କ ପ୍ରାଧାନ୍ୟ ସୁପ୍ରତିଷ୍ଠିତ ହେବାରୁ ଶ୍ରୀ ଜଗନ୍ନାଥଙ୍କ ରତ୍ନସିଂହାସନ ଉପରେ ଶ୍ରୀ ଶଙ୍କର ଓ ଶ୍ରୀ ପଦ୍ମପାଦାଚାର୍ଯ୍ୟଙ୍କ ବିଗ୍ରହ ଦ୍ୱୟ ସ୍ଥାପିତ ହୋଇ ସସମ୍ମାନରେ ପୂଜିତ ହେବାକୁ ଲାଗିଲା ।

'ଦିଗ୍‌ବିଜୟ' ନାମରେ ପ୍ରଖ୍ୟାତ ତାଙ୍କର ସମଗ୍ର ଭାରତ ପର୍ଯ୍ୟଟନ ସମୟରେ ସେ ନିଜର ପ୍ରଗାଢ଼ ପାଣ୍ଡିତ୍ୟ, ଅନନ୍ୟସୁଲଭ କବିତ୍ୱ, ଅକାଟ୍ୟ ଯୁକ୍ତିସମୂହ ଦ୍ୱାରା ବହୁ ବୌଦ୍ଧ ଆଚାର୍ଯ୍ୟଙ୍କୁ ବିତଣ୍ଡାବାଦରେ ପରାସ୍ତ କରିଥିଲେ । ତାଙ୍କର ପ୍ରବଳ ତାତ୍ତ୍ୱିକ ଆକ୍ରମଣ ଫଳରେ ନାନା ପନ୍ଥା ଓ ମତବାଦରେ ବିଭକ୍ତ ଅନ୍ତଃସାରଶୂନ୍ୟ ବୌଦ୍ଧଧର୍ମର ମେରୁଦଣ୍ଡ ଭାଙ୍ଗି ପଡ଼ିଲା । ସ୍ୱୟଂ ଭଗବାନ ରୂପେ ସମ୍ମାନିତ ଶ୍ରୀ ଶଙ୍କର ବୌଦ୍ଧମତରେ ବିରୋଧୀ ଥିଲେ ମଧ୍ୟ ଏହି ମତର ପ୍ରବର୍ତ୍ତକ ଗୌତମଙ୍କୁ ବିଷ୍ଣୁଙ୍କ ନବମ ଅବତାର ଏବଂ 'ବୁଦ୍ଧ' 'ପ୍ରବୁଦ୍ଧ' 'ଯୋଗିନାଂ ଚକ୍ରବର୍ତ୍ତୀ' ରୂପେ ଗ୍ରହଣ କରି ଭକ୍ତି ଗଦ୍‌ଗଦ୍ ଚିତ୍ତରେ ତାଙ୍କର ସ୍ତୁତିଗାନ କରିଥିଲେ । ଯଥା—

"ଧରାବଦ୍ଧପଦ୍ମାସନସ୍ଥାଙ୍ଘ୍ରିଯଷ୍ଟି
ର୍ନିୟମ୍ୟାନିଲଂ ନ୍ୟସ୍ତନାସାଗ୍ରଦୃଷ୍ଟିଃ ।
ଯ ଆସ୍ତେ କଳୌ ଯୋଗିନାଂ ଚକ୍ରବର୍ତ୍ତୀ
ସ ବୁଦ୍ଧଃ ପ୍ରବୁଦ୍ଧୋଽସ୍ତୁ ନିଶ୍ଚିନ୍ତବର୍ତ୍ତୀ ॥" (୧୮)

ବୁଦ୍ଧଙ୍କ ଠାରେ ନିଜର ଅଟଳ ଭକ୍ତି ଓ ଉଦାର ମତବାଦ ବଳରେ ସେ ବହୁସଂଖ୍ୟକ ବୌଦ୍ଧଙ୍କୁ ସ୍ୱମତାବଲମ୍ବୀ କରିପାରିଥିଲେ । ଶଙ୍କରଙ୍କ ଦିଗ୍‌ବିଜୟ ଫଳରେ ଉତ୍କଳରେ ବୌଦ୍ଧଧର୍ମ ନିଷ୍ପ୍ରଭ ହେଲେ ମଧ୍ୟ ବୌଦ୍ଧ ସିଦ୍ଧାଚାର୍ଯ୍ୟମାନେ ଏହି ଧର୍ମର ଅସ୍ତିତ୍ୱ ରକ୍ଷା ପାଇଁ ଅସାଧ୍ୟ ସାଧନ କରିଥିଲେ ।

---

(୧୮) ଶ୍ରୀମଚ୍ଛଙ୍କରାଚାର୍ଯ୍ୟ ବିରଚିତଂ ଦଶାବତାର ସ୍ତୋତ୍ରମ୍ ।

## ତାନ୍ତ୍ରିକ ବୌଦ୍ଧମତର ପ୍ରସାର—

ତନ୍ତ୍ରବିଦ୍ୟା ସମ୍ମତ ମନ୍ତ୍ର, ଯନ୍ତ୍ର, ମୁଦ୍ରା, ମଣ୍ଡଳ ପ୍ରଭୃତି ସାହାଯ୍ୟରେ ଯେଉଁ ସାଧକମାନେ ନିଜର ଅଲୌକିକ ଶକ୍ତି ପ୍ରଦର୍ଶନ ପୂର୍ବକ ଅସାଧ୍ୟ ସାଧନ କରିପାରୁଥିଲେ ସେମାନେ ସିଦ୍ଧାଚାର୍ଯ୍ୟ ନାମରେ ଅଭିହିତ ହେଉଥିଲେ । ସେମାନେ ନିଜ ନିଜର ସାଧନା ବଳରେ ସାଧାରଣ ଲୋକଙ୍କୁ ବହୁକାଳ ପର୍ଯ୍ୟନ୍ତ ବୌଦ୍ଧମତ ପ୍ରତି ଆକୃଷ୍ଟ ରଖିପାରିଥିଲେ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ସେମାନଙ୍କ ଉଦ୍ୟମରେ ଭାରତର ପୂର୍ବଭାଗରେ ଅବସ୍ଥିତ ଉତ୍କଳ, ମଗଧ, ବଙ୍ଗ, ଶ୍ରୀହଟ୍ଟ, କାମରୂପ ପ୍ରଭୃତି ପ୍ରଦେଶରେ ଏବଂ ଭାରତ ବାହାରେ ନେପାଳ ଓ ତିବ୍ବତରେ ତନ୍ତ୍ରମତ ବିଶେଷ ପ୍ରସାର ଲାଭ କରିଥିଲା । ବିଭିନ୍ନ ସମୟରେ ଆବିର୍ଭୂତ ଏହି ସିଦ୍ଧାଚାର୍ଯ୍ୟମାନେ ସାଧାରଣତଃ ୮୪ ସିଦ୍ଧ ନାମରେ ପ୍ରଖ୍ୟାତ । ଅଶୋକ ଯୁଗରୁ ବିଭିନ୍ନ ସମୟରେ ଖୋଦିତ ବିଭିନ୍ନ ଗିରିଗୁହା ବା ଶୈଳନିବାସ ଓ ପର୍ବତଖଣ୍ଡରେ ବିଭିନ୍ନ ରାଜବଂଶ ଦ୍ୱାରା ପ୍ରତିଷ୍ଠିତ ବିହାର ଗୁଡ଼ିକ ସେମାନଙ୍କର ପ୍ରଧାନ କର୍ମକେନ୍ଦ୍ର ଥିଲା । ସେମାନେ ସର୍ବସାଧାରଣଙ୍କ ମଧ୍ୟରେ ସ୍ୱ ସ୍ୱ ଧର୍ମମତ ପ୍ରଚାର କରିବା ପାଇଁ ସଂସ୍କୃତ ପରିବର୍ତ୍ତରେ ପ୍ରାକୃତ ଭାଷା ବ୍ୟବହାର କରୁଥିଲେ । ପ୍ରାଚୀନ ଓଡ଼ିଆ, ବଙ୍ଗଳା, ମୈଥିଳୀ ପ୍ରଭୃତି ଭାଷାର ବିକାଶ ପାଇଁ ସେମାନଙ୍କର ବିଶେଷ ଅବଦାନ ରହିଛି ।

ତିବ୍ବତୀୟ ଭାଷାରେ ଅନୂଦିତ ଚତୁରାଶୀତି ସିଦ୍ଧପ୍ରବୃତ୍ତି ନାମକ ଗ୍ରନ୍ଥରେ ୮୪ ଜଣ ସିଦ୍ଧଙ୍କ ଜୀବନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ଏମାନଙ୍କ ମଧ୍ୟରେ ବୌଦ୍ଧ ତନ୍ତ୍ରମତର ପ୍ରବର୍ତ୍ତକ ମହାମଣ୍ଡଳାଚାର୍ଯ୍ୟ ରାହୁଳ ବା ସରହ, କମ୍ବଳ, ପଦ୍ମବଜ୍ର, ଲୁଇପା, କଳାତବଜ୍ର, ଗମ୍ଭୀରବଜ୍ର, କୁକୁରିପା, ପିଟୋ ପ୍ରଭୃତି ଉଡ୍‌ଡୀୟାନ ବା ଓଡ଼ିଶାରେ ଆବିର୍ଭୂତ ହୋଇଥିବା ତିବ୍ବତୀୟ ଲାମା ତାରାନାଥଙ୍କ ଗ୍ରନ୍ଥରୁ ଜଣାଯାଏ ।

ବଜ୍ରଯାନର ପ୍ରବର୍ତ୍ତକ ଉଡ୍‌ଡୀୟାନ ରାଜା ଇନ୍ଦ୍ରଭୂତି ପ୍ରସିଦ୍ଧ ସିଦ୍ଧାଚାର୍ଯ୍ୟ କମ୍ବଳପାଦଙ୍କ ଶିଷ୍ୟ ଥିଲେ । ଇନ୍ଦ୍ରଭୂତିଙ୍କ ଭଉଣୀ

'ସହଜଯାନ' ମତରେ ପ୍ରତିଷ୍ଠାତ୍ରୀ ଲକ୍ଷ୍ମୀଙ୍କରା ଲଙ୍କାପୁରୀ ବା ସୋନପୁରର ନିକଟବର୍ତ୍ତୀ ଲଙ୍କାବର୍ତ୍ତିକର ଅଧିପତି ଜଳେନ୍ଦ୍ରଙ୍କ ପୁତ୍ରଙ୍କୁ ବିବାହ କରି-ଥିଲେ । ଇନ୍ଦ୍ରଭୂତିଙ୍କ ପୁତ୍ର ଚନ୍ଦ୍ରସମ୍ଭବ ବା ଚନ୍ଦ୍ରପ୍ରଭଙ୍କ କର୍ମକେନ୍ଦ୍ର ଥିଲା ବିରଜା କ୍ଷେତ୍ର ବା ଯାଜପୁର । ଯାଜପୁର ନିକଟବର୍ତ୍ତୀ ଉଦୟଗିରିରେ ପ୍ରତିଷ୍ଠିତ ଏକ ବୋଧିସତ୍ତ୍ୱ ମୂର୍ତ୍ତିର ପଦପାଖେ ୨୫ ଧାଡ଼ି ବିଶିଷ୍ଟ ଗୋଟିଏ ଲେଖ ଉତ୍କୀର୍ଣ୍ଣ ହୋଇଅଛି । ସେଥିରୁ ଜଣାଯାଏ, ନିର୍ବାଣ ଲଭ ପରେ ତାଙ୍କର ଧାତୁଗର୍ଭ ଉଦୟଗିରିଠାରେ ଅଦ୍ୟାପି ଜରାଜୀର୍ଣ୍ଣ ଅବସ୍ଥାରେ ବିଦ୍ୟମାନ ଏକ ସ୍ତୂପରେ ରକ୍ଷିତ ହୋଇଥିଲା । "ତଥାଗତାଧିଷ୍ଠିତ ଧାତୁଗର୍ଭ ସ୍ତୂପ" । ଚନ୍ଦ୍ରସମ୍ଭବ ୭ମ ଖ୍ରୀଷ୍ଟାବ୍ଦର ଶେଷରେ ତାନ୍ତ୍ରିକ ମତ ପ୍ରଚାର କରି ଏକ ବିହାର ପ୍ରତିଷ୍ଠା କରିଥିଲେ ।

ଉଡ୍ଡୀୟାନର ମଙ୍ଗଳକୋଷ୍ଠ ନାମକ ସ୍ଥାନରେ ବଜ୍ରପାଣି ଆବିର୍ଭୂତ ହୋଇଥିବା ନେପାଳରୁ ଉପଲବ୍ଧ ଏକ ପ୍ରାଚୀନ ଗ୍ରନ୍ଥରୁ ଜଣାଯାଏ । ଡକ୍ଟର ସାହୁ ମଙ୍ଗଳକୋଷ୍ଠକୁ ବିରଜା କ୍ଷେତ୍ର ନିକଟବର୍ତ୍ତୀ ମଙ୍ଗଳପୁର ସହିତ ଚିହ୍ନିତ କରିଛନ୍ତି । ସିଦ୍ଧ ବେଘପା ଉଡ୍ଡୀୟାନ ପୀଠର ଅଧିଷ୍ଠାତ୍ରୀ ଦେବୀ 'କୁରୁକୁଲ୍ଲା'ଙ୍କୁ ନିଜର ପ୍ରଧାନ ଆରାଧ୍ୟ ଦେବତା ରୂପେ ଗ୍ରହଣ କରି ତାଙ୍କର ଏକ 'ସାଧନା' ରଚନା କରି-ଥିଲେ । ତାରାନାଥଙ୍କ ମତରେ 'ଶବରୀପା'ଙ୍କ ଶିଷ୍ୟ 'ଲୁଇପା' ପ୍ରଥମେ ଉଡ୍ଡୀୟାନର ରାଜା ସାମନ୍ତଶୁଭଙ୍କ ପୁସ୍ତକପାଳ ଥିଲେ । ଲୁଇପଙ୍କ ଶିଷ୍ୟ ବଜ୍ରଘଣ୍ଟ ଉଡ଼ିଶା ବା ଓଡ଼ିଶା ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ବଜ୍ରଘଣ୍ଟଙ୍କ ଓଡ଼ିଶାବାସୀ ଶିଷ୍ୟ କମ୍ବଳପାଦ ଜଣେ ପ୍ରଖ୍ୟାତ ସିଦ୍ଧ ଥିଲେ ଓ ବହୁ ଦୋହା ରଚନା କରିଥିଲେ । ତାଙ୍କ କୃତ ଦୋହାଗୁଡ଼ିକ 'କମ୍ବଳଗୀତିକା' ନାମରେ ଉଦ୍ଧୃତ ।

ଲକ୍ଷ୍ମୀଙ୍କରାଙ୍କ ଦ୍ୱାରା ପ୍ରବର୍ତ୍ତିତ 'ସହଜଯାନ'ର ପ୍ରଧାନ ପ୍ରଚାରକ ଥିଲେ 'ଜାଳନ୍ଧରୀପା' । ତାଙ୍କର ଦୁଇ ପ୍ରଧାନ ଶିଷ୍ୟ ଆଚାର୍ଯ୍ୟ ବରୁପା ଓ କୃଷ୍ଣାଚାର୍ଯ୍ୟ । ଆଚାର୍ଯ୍ୟ ବରୁପାଙ୍କ ବସତି ସ୍ଥାପନ ଯୋଗୁଁ 'ରତ୍ନଗିରି' ବୌଦ୍ଧ ମହାବିହାର ନିକଟରେ ପ୍ରବାହିତ ମହାନଦୀର ଏକ ଶାଖାନଦୀ

'ବିରୂପା' ନାମ ଧାରଣ କରିଥିଲେ * । ଲାମା ତାରାନାଥଙ୍କ ମତରେ ଆଚାର୍ଯ୍ୟ ବିରୂପା ଅଲୌକିକ ଶକ୍ତିସଂପନ୍ନ ଥିଲେ ଏବଂ ଶିବପୂଜା ବିରୁଦ୍ଧରେ ପ୍ରବଳ ପ୍ରଚାର ଚଳାଇଥିଲେ । 'ଦୋହାକୋଷ', 'ବିରୂପାପଦ ଚତୁରଶୀତି', 'ବିରୂପା ଗୀତିକା' 'ବିରୂପା ବଜ୍ର-ଗୀତିକା' ପ୍ରଭୃତି ତାଙ୍କ ଦ୍ୱାରା ରଚିତ ହୋଇଥିଲା ।

ସିଦ୍ଧାଚାର୍ଯ୍ୟ 'ଜାଳନ୍ଧରପା'ଙ୍କ ଅନ୍ୟ ପ୍ରଖ୍ୟାତ ଶିଷ୍ୟ କୃଷ୍ଣାଚାର୍ଯ୍ୟ, କୃଷ୍ଣପାଦ ବା କାହ୍ନୁପା ଓଡ଼ିବିଶ ବା ଓଡ଼ିଶାର ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ଅଦ୍ୱିତୀୟ ପଣ୍ଡିତ ଥିଲେ । ଅନ୍ୟୁନ ୭୪ ଖଣ୍ଡ ବୌଦ୍ଧ ତାନ୍ତ୍ରିକ ଗ୍ରନ୍ଥର ରଚୟିତା ରୂପେ ସେ ଖ୍ୟାତ । ସେ ମଧ୍ୟ ଏକ 'ଦୋହାକୋଷ' ପ୍ରଣୟନ କରିଥିଲେ । ପ୍ରାଚୀନ ଓଡ଼ିଆ ଭାଷାରେ ରଚିତ ତାଙ୍କର ୧୧ଟି ଦୋହା 'ଚର୍ଯ୍ୟାଚର୍ଯ୍ୟ' ଗ୍ରନ୍ଥରେ ସଂଗୃହୀତ ହୋଇଥିବାର ଦେଖାଯାଏ । କାହ୍ନୁପାଦ ପ୍ରାଚୀନ ଓଡ଼ିଆ ସାହିତ୍ୟର ଜଣେ ଲବ୍ଧପ୍ରତିଷ୍ଠ ଲେଖକ ।

ବୌଦ୍ଧ 'କାଳଚକ୍ରଯାନ' ସମ୍ବନ୍ଧରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିବା ଆଚାର୍ଯ୍ୟ 'ପିଣ୍ଡୋପାଦ' ଓ ତାଙ୍କର ତିନି ପ୍ରଧାନ ଶିଷ୍ୟ 'ଅବଧୂତିପାଦ', 'ବୋଧିଶ୍ରୀ' ଓ 'ନାରୋପା' ରତ୍ନଗିରି ମହାବିହାରରେ ଯୋଗବିଦ୍ୟା ଶିକ୍ଷା କରିଥିଲେ । ପ୍ରୌଢ଼ାବସ୍ଥାରେ ନାଳନ୍ଦା ମହାବିହାରର ଅଧ୍ୟକ୍ଷ ପଦ ଲାଭ କରିଥିବା 'ଅଭୟାକର ଗୁପ୍ତ' ଓଡ଼ିଶା ଅନ୍ତର୍ଗତ ଝାଡ଼ଖଣ୍ଡରେ ଜନ୍ମଗ୍ରହଣ କରିଥିଲେ । (୧୯)

---

* କୁରୁକୁଲ୍ଲା ଦେବୀଙ୍କ ଆସ୍ଥାନ ଯୋଗୁଁ ଦେବୀ ନିକଟବର୍ତ୍ତୀ ଏକ ଗ୍ରାମ କୁରୁକୁଲ୍ଲା (ବର୍ତ୍ତମାନ କୁରୁକୁରା) ମାରଚୀ ଦେବୀଙ୍କ ଆସ୍ଥାନ ଯୋଗୁଁ ମାରଚୀପୁର (ବର୍ତ୍ତମାନ ମରିଚପୁର) ତାରାଙ୍କ ନାମାନୁସାରେ ଓଡ଼ିଶାରେ ଅନେକ ଗ୍ରାମ ଦେଖାଯାଏ । ଯଥା ବରୁଣେଇ ପାହାଡ଼ ତଳେ 'ତରବୋଇ', ଭୁଷଣ୍ଡପୁର ନିକଟରେ 'ତାରାତାରିଣୀ' ଇତ୍ୟାଦି ।

(୧୯) ଏହି ସିଦ୍ଧାଚାର୍ଯ୍ୟମାନଙ୍କ ସମ୍ବନ୍ଧରେ ଜାଣିବା ପାଇଁ ଡକ୍ଟର ଶ୍ରୀ ନବୀନ କୁମାର ସାହୁଙ୍କ ପ୍ରଣୀତ 'Buddhism in Orissa' ପୁସ୍ତକ ଦ୍ରଷ୍ଟବ୍ୟ ।

ଏହି ଉତ୍କଳୀୟ ପ୍ରସିଦ୍ଧ ଶିଳ୍ପାଗୁର୍ଜ୍ଜମାନଙ୍କ ମଧ୍ୟରୁ କିଏ ବା କେଉଁ-ମାନେ ଧଉଳୀ ଅଞ୍ଚଳରେ ନିଜର କର୍ମକେନ୍ଦ୍ର ପ୍ରତିଷ୍ଠା କରିଥିଲେ ସେ ସମ୍ପର୍କରେ ବିଶ୍ୱାସଯୋଗ୍ୟ ତଥ୍ୟ ମିଳନାହିଁ ।

## ଗଙ୍ଗ ରାଜତ୍ୱରେ ଧଉଳୀ—

ଆଗଙ୍ଗାଗୋଦାବରୀ ବିସ୍ତୃତ ଗଙ୍ଗ ସାମ୍ରାଜ୍ୟର ପ୍ରତିଷ୍ଠାତା ଅନନ୍ତବର୍ମା ଚୋଡ଼ଗଙ୍ଗଦେବ (୧୦୭୭—୧୧୪୭ ଖ୍ରୀଷ୍ଟାବ୍ଦ) ୧୧୧୨ ଖ୍ରୀଷ୍ଟାବ୍ଦରେ ଉତ୍କଳ ଅଧିକାର କରିବା ପରେ ବ୍ରାହ୍ମଣ୍ୟ ଧର୍ମର ଦୃଢ଼ୀକରଣ ପାଇଁ ଧାରାବାହିକ ଉଦ୍ୟମ ଚଳାଇଥିଲେ । ରାଜ୍ୟଜୟର ଅଳ୍ପକାଳ ପରେ ସେ ଏକାମ୍ର କ୍ଷେତ୍ରର ଶ୍ରେଷ୍ଠ ଦେବତା "ଶ୍ରୀ କୃତ୍ତିବାସ ଭଟ୍ଟାରକ" (ଲିଙ୍ଗରାଜ)ଙ୍କୁ ଦର୍ଶନ କରି ତାଙ୍କ ନିକଟରେ ଅଖଣ୍ଡ ଦୀପ ଜାଳିବା ପାଇଁ ଏକ ଗ୍ରାମ ଖଞ୍ଜି ଦେଇଥିଲେ । ତାଙ୍କ ରାଜତ୍ୱର ଆଉ ତିନୋଟି ଲେଖ ଲିଙ୍ଗରାଜ ମନ୍ଦିରରେ ଦେଖାଯାଏ । ଦ୍ୱିତୀୟଟିର ସମୟ ଜଣାଯାଉ ନାହିଁ । ତୃତୀୟଟିର ସମୟ ୧୧୩୪ ଖ୍ରୀଷ୍ଟାବ୍ଦ । ୧୦୬୩ ଶକାବ୍ଦ ବା ୧୧୪୧ ଖ୍ରୀଷ୍ଟାବ୍ଦରେ ଲିଖିତ ତାଙ୍କର ଶେଷ ଲେଖରୁ ଜଣାଯାଏ ଯେ, ତାଙ୍କର ଏକ ରାଣୀ ଚନ୍ଦ୍ରଦେବୀ ମହାଦେବୀ ଲିଙ୍ଗରାଜ ମନ୍ଦିରରେ ଅଖଣ୍ଡ ଦୀପ ଜାଳିବା ପାଇଁ ଅନ୍ୟ ଏକ ଗ୍ରାମ ଦାନ କରିଥିଲେ । (୨୦)

କେଦାରେଶ୍ୱର ମନ୍ଦିରରେ ଥିବା ତାଙ୍କ ରାଜତ୍ୱରେ ୧୧୪୨ ଓ ୧୧୪୫ ଖ୍ରୀଷ୍ଟାବ୍ଦରେ ଖୋଦିତ ଅନ୍ୟ ଦୁଇ ଲେଖରେ ଯଥାକ୍ରମେ ତାଙ୍କ ସାନଭାଇ ପ୍ରମାଡ଼ିଦେବ ଓ ପ୍ରମାଡ଼ିଙ୍କ ପୁତ୍ର ଚୋଳଗଙ୍ଗ ଦେବ କେଦାରେ-ଶ୍ୱରଙ୍କ ନିକଟରେ ଅଖଣ୍ଡ ଦୀପ ଜାଳିବା ପାଇଁ ଗୋଟିଏ ଗୋଟିଏ ଗ୍ରାମ ଖଞ୍ଜି ଥିବାର ଉଲ୍ଲେଖ ରହିଛି । (୨୧)

---

(୨୦) Inscriptions of Orissa by S. N. Rājaguru, Vol. III, Part-1.

(୨୧) O. H. R J., Vol. I, No. 2.

ଭୁବନେଶ୍ୱର ଓ ଧଉଳୀ ମଧ୍ୟବର୍ତ୍ତୀ ଶିଶୁପାଳ ଗଡ଼ରେ ବର୍ତ୍ତମାନ ଗ୍ରାମଦେବତା ରୂପେ ପୂଜିତ ହେଉଥିବା ଏକ ପାଦଁଶ ମୂର୍ତ୍ତିର ପୃଷ୍ଠ-ଦେଶରେ ୧୬ ଧାଡ଼ିରେ ଉତ୍କୀର୍ଣ୍ଣ ଏକ ସଂସ୍କୃତ ଲେଖରେ ଗଙ୍ଗେଶ୍ୱର ଦେବଙ୍କ ଦ୍ୱାରା ଏକ ମନ୍ଦିର ନିର୍ମାଣ ସମ୍ପର୍କରେ ୨୦ଟି ଶ୍ଳୋକବିଶିଷ୍ଟ ଏକ ପ୍ରଶସ୍ତି ଦେଖାଯାଏ । ପଥରଟିର ଦକ୍ଷିଣାଂଶ ଭଗ୍ନ ହୋଇଥିବାରୁ ଶ୍ଳୋକଗୁଡ଼ିକ ଅସମ୍ପୂର୍ଣ୍ଣ ଭାବରେ ରହିଯାଇଛି । ତଥାପି ଅବଶିଷ୍ଟ ଅଂଶରେ ଗଙ୍ଗେଶ୍ୱରଙ୍କ ନାମ ଅକ୍ଷୁର୍ଣ୍ଣ ରହିଛି ଏବଂ ତାଙ୍କ ଦ୍ୱାରା ନିର୍ମିତ ପ୍ରାସାଦର ଉଲ୍ଲେଖ ମିଳୁଛି । ଯଥା—

"ତସ୍ମାଦ୍‌ବଭୂବ ଭୁବନତ୍ରୟପ୍ରସିଦ୍ଧ
ଗଙ୍ଗେଶ୍ୱରଃ ମଦନ ସୁନ୍ଦର ଶୁଦ୍ଧବାତୁଃ" ।

× × ×

'ପ୍ରାଲେୟାଚଳ ଯଦ୍‌ବୃଞ୍ଜସ୍ୟ ବଦତ ପ୍ରାସାଦରାଜ ସ୍ଫୁରଦ୍ୟୁ
ବୀ ଖ୍ଗତ" × × × × (୨୨)

ଚୋଳଗଙ୍ଗଦେବ ତାଙ୍କ ଦର୍ଘ ରାଜତ୍ୱର ଶେଷଆଡ଼କୁ 'ଗଙ୍ଗେ-ଶ୍ୱର' ନାମରେ ପ୍ରସିଦ୍ଧି ଲାଭ କରିଥିବା ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିରରେ ୧୦୭୨ ଶକାବ୍ଦ (୧୧୫୦ ଖ୍ରୀଷ୍ଟାବ୍ଦ)ରେ ଖୋଦିତ କୋଶଳ ମହାଦେବୀଙ୍କ ଲେଖ, ଶ୍ରୀକୂର୍ମ ମନ୍ଦିରରେ ୧୦୭୦ ବା ୧୧୪୭ ଖ୍ରୀଷ୍ଟା-ବ୍ଦରେ ଉତ୍କୀର୍ଣ୍ଣ ନିଜର ଏକ ଲେଖ ଓ ଖଲିକୋଟସ୍ଥ ମୁକ୍ତେଶ୍ୱର ମନ୍ଦିରରେ ଅବସ୍ଥିତ ଏକ ଖଣ୍ଡିତ ଲେଖରୁ ସ୍ପଷ୍ଟ ଜଣାଯାଏ । (୨୩)

---

(୨୨) ବହୁ ବର୍ଷ ପୂର୍ବେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ମୋର ଚେଷ୍ଟାରେ ଏହି ଲେଖର ଏକ ପ୍ରତିଲିପି ସଂଗୃହୀତ ହୋଇଥିଲା । କିନ୍ତୁ ସଂସ୍କୃତିକ ବ୍ୟାପାର ବିଭାଗର ନିର୍ଦ୍ଦେଶକ ଶ୍ରୀ ଅନିରୁଦ୍ଧ ଦାଶ, ଆଇ ଏ ଏସ. ଶ୍ରୀ ରାଜ-ଗୁରୁଙ୍କ ଦ୍ୱାରା ଏହାର ପାଠୋଦ୍ଧାର କରାଇ ଏକ ପ୍ରବନ୍ଧ ପ୍ରକାଶ କରିଛନ୍ତି— O. H. R. J., Vol. XV, No. 1 & 2, pp. 53—60.

(୨୩) Inscriptions of Orissa, Rājaguru, Vol. III, pt I pp. 205, 227, 248.

ତାଙ୍କର ପରବର୍ତ୍ତୀ ଗଙ୍ଗସମ୍ରାଟ୍‌ମାନଙ୍କ ଏପର୍ଯ୍ୟନ୍ତ ଉପଲବ୍ଧ ପ୍ରାୟ ୧୩ଟି ଉତ୍କୀର୍ଣ୍ଣ ତାମ୍ରଶାସନରେ ଶ୍ରୀକ୍ଷେତ୍ରସ୍ଥ ପୃଥ୍ୱୀ ପ୍ରସିଦ୍ଧ ଜଗନ୍ନାଥ ମନ୍ଦିର ଗଙ୍ଗେଶ୍ୱରଦେବଙ୍କ କୀର୍ତ୍ତି ରୂପେ ସଗୌରବରେ ଘୋଷିତ ହୋଇଅଛି ।

"ପ୍ରସାଦଂ ପୁରୁଷୋତ୍ତମସ୍ୟ ନୃପତିଃ କୋ ନାମ କର୍ତ୍ତୁଂ କ୍ଷମଃ
ତସ୍ୟେତ୍ୟାଦ୍ୟନୃପୈରୁପେକ୍ଷିତମୟଂ ଚକ୍ରେଽଥ ଗଙ୍ଗେଶ୍ୱରଃ"

ଉତ୍କଳର ପ୍ରାଚୀନତମ ବୌଦ୍ଧପୀଠ ତୋଷଳୀର କ୍ଷୟିଷ୍ଣୁ ଗୌରବ ଓ ମାହାତ୍ମ୍ୟର ବିଲୋପ ସାଧନ ନିମିତ୍ତ ବ୍ରାହ୍ମଣ୍ୟଧର୍ମର ଏକ ପ୍ରଧାନ ପୃଷ୍ଠପୋଷକ ଗଙ୍ଗେଶ୍ୱରଦେବ ଧଉଳୀ ପାହାଡ଼ ଓ ନିକଟବର୍ତ୍ତୀ ଅଞ୍ଚଳ ରେ କେତେକ ବ୍ରାହ୍ମଣ ଶାସନ ଓ ମନ୍ଦିର ପ୍ରତିଷ୍ଠା ଓ ଜଳାଶୟମାନ ଖନନ କରିଥିଲେ । ଧଉଳୀ ପାହାଡ଼ର ଦକ୍ଷିଣ-ପଶ୍ଚିମ ଦିଗରେ ଦୟାନଦୀ କୂଳରେ ସେ ନିଜ ନାମାନୁସାରେ 'ଗଙ୍ଗେଶ୍ୱରପୁର' ନାମକ ଶାସନ ପ୍ରତିଷ୍ଠା କରିଥିଲେ । ତାଙ୍କର ୧୯ ଜଣ ରାଣୀଙ୍କ ମଧ୍ୟରୁ ଜଣକ ନାମ ଥିଲା କଲ୍ୟାଣ ଦେବୀ । ପୂର୍ବ ଗୋଦାବରୀ ଜିଲ୍ଲାର ଦ୍ରାକ୍ଷାରାମସ୍ଥ ଭୀମେଶ୍ୱର ମନ୍ଦିରରେ ୧୦୫୦ ଶକାବ୍ଦ ବା ୧୧୨୮ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ତାଙ୍କର ଏକ ଲେଖ ବିଦ୍ୟମାନ । (୨୪) ସେ ଗଙ୍ଗେଶ୍ୱରପୁର ଦକ୍ଷିଣକୁ ଦୟା ନଦୀ କୂଳରେ ନିଜ ନାମରେ 'କଲ୍ୟାଣପୁର' ନାମକ ଏକ ଶାସନ ସ୍ଥାପନ କରିଥିଲେ ।

ତାଙ୍କର ଅନ୍ୟ ଏକ ରାଣୀଙ୍କ ନାମ କୋଶଳ ଦେବୀ । ବଂଶଧାରା ନଦୀ ତୀରବର୍ତ୍ତୀ ମୁଖଲିଙ୍ଗମ୍‌ସ୍ଥ ମଧୁକେଶ୍ୱର ମନ୍ଦିରରେ ୧୦୬୨ ଶକାବ୍ଦ ବା ୧୧୪୦ ଖ୍ରୀଷ୍ଟାବ୍ଦରେ ଖୋଦିତ ତାଙ୍କର ଏକ ଲେଖ ଦେଖାଯାଏ । (୨୫) ସେ ଧଉଳୀ ପାହାଡ଼ର ଦକ୍ଷିଣ ଦିଗରେ ନିଜ ନାମରେ କୋଶଳପୁର ନାମକ ଏକ ବ୍ରାହ୍ମଣ ଶାସନ ବସାଇଥିଲେ । ଏହା କାଳକ୍ରମେ ଲୋକମୁଖରେ ରାମାୟଣ ପ୍ରସିଦ୍ଧ କୌଶଲ୍ୟା ରାଣୀଙ୍କ ନାମ

(୨୪) I. O., Vol. III, Rājaguru, p. 111.

(୨୫) „ „ p 205.

ବହନ କରି 'କୌଶଲ୍ୟାପୁର' ନାମ ଧାରଣ କରିଛନ୍ତି । ଏହି ଶାସନ ନିକଟରେ ଧଉଳୀ ପାହାଡ଼ର ପୂର୍ବକୁ ମହାରାଣୀ କୋଶଳଦେବୀ ଓ ସମ୍ରାଟ୍ ଗଙ୍ଗେଶ୍ୱରଙ୍କ ସ୍ମୃତିରକ୍ଷା କରିବା ପାଇଁ 'କୋଶଳ-ଗଙ୍ଗ' ନାମକ ଏକ ବିରାଟ ଜଳାଶୟ ଖୋଳିତ ହୋଇଥିଲା । ଏହାର ଦୈର୍ଘ୍ୟ ଏକ କ୍ରୋଶ ଓ ପ୍ରସ୍ଥ ଏକ କ୍ରୋଶ ବୋଲି ଜନଶ୍ରୁତି ପ୍ରଚଳିତ ଥିଲେ ମଧ୍ୟ ଏହା ପ୍ରକୃତରେ ୧୯ ମାଇଲ୍ ଲମ୍ବ ଓ ପାଞ୍ଚ ଫର୍ଲଙ୍ଗ ଓସାର । ବାସ୍ତବିକ୍ ଏପରି ବିରାଟ ଜଳଭଣ୍ଡାର ଉତ୍କଳରେ ଅତି ଅଳ୍ପ ଦେଖାଯାଏ ।

ପୁରୀର ନରେନ୍ଦ୍ର ସରୋବର ପରି ଏଠାରେ ଠାକୁରଙ୍କ ଚନ୍ଦନ-ଯାତ୍ରା ପାଇଁ ଦକ୍ଷିଣ ଆଡ଼କୁ ଏକ ବୃହଦାକାର ଜଗତୀ ନିର୍ମିତ ହୋଇ-ଥିଲା । ଜଗତୀଟି କାଳକ୍ରମେ ଭଙ୍ଗିପଡ଼ି ପ୍ରସ୍ତର ସ୍ତୂପରେ ପରିଣତ ହେଲା । ଏଠାରୁ ଲେଖକ ୧୯୫୦ ମସିହାରେ ୨୮ଟି ସୁନ୍ଦର ନାଗୁଣୀ, ପୁରୁଷ ଓ ସିଂହମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷଣ ପାଇଁ ସଂଗ୍ରହ କରିଥିଲି । ଏହି ଜଳାଶୟର ଉତ୍ତର ପଶ୍ଚିମ କୋଣ ଦୟାନଦୀ ସହିତ ଏକ ପ୍ରଣାଳୀ ବା ନାଳ ଦ୍ୱାରା ସଂଯୁକ୍ତ ହୋଇଥିଲା । ଏହି କେନାଲକୁ ପାର ହେବାପାଇଁ ମଝିରେ ମଝିରେ ପଥରରେ ପୋଲସବୁ ତିଆରି ହୋଇଥିଲା । ବର୍ଷାଦିନେ ନଦୀର ବଳିପାଣି ଏହି କେନାଲ ଭିତରେ ଆସି ଜଳାଶୟକୁ ଜଳପୂର୍ଣ୍ଣ କରିଦେଉଥିଲା । ଧଉଳୀ ପାହାଡ଼ ଆଡ଼କୁ ଥିବା ଏହାର ପଶ୍ଚିମ ବନ୍ଧରେ ପ୍ରାଚୀନ କୀର୍ତ୍ତିଗୁଡ଼ିକର ମୂଳଭିତ୍ତି ନିର୍ଦ୍ଦେଶ କରୁଥିବା ବହୁ ପ୍ରସ୍ତର ସ୍ତୂପ, ପ୍ରାଚୀନ ମୃତ୍ପାତ୍ରର ଅଂଶ-ବିଶେଷ ଓ ଗଦା ଗଦା ଇଟାରୁ ଏଠାରେ ପ୍ରାଚୀନ କାଳରେ ଏକ ନଗରର ଅବସ୍ଥିତି ସୂଚିତ ହେଉଅଛି । (୨୭)

ଅଳ୍ପଦିନ ତଳେ ଅଶ୍ୱତ୍ଥାମା ପାହାଡ଼ର ଉତ୍ତର-ପୂର୍ବ କୋଣକୁ ଥିବା ଗୋଟିଏ ହୁଡ଼ା ଖୋଳିବାରୁ ଏକ ପ୍ରାଚୀନ ମନ୍ଦିରରେ ବ୍ୟବହୃତ ବହୁତ ପଥର ବାହାରିଲା । କାଳକ୍ରମେ କେନାଲଟି ପୋତିହୋଇ

(୨୭) J. A, S. Vol. VII, pp. 446.

ପଡ଼ନ୍ତି । ବର୍ତ୍ତମାନ ଜଳାଶୟର ଅଧିକାଂଶ ପଙ୍କପୂର୍ଣ୍ଣ ଓ ଦଳାଚ୍ଛାଦିତ । କେବଳ ଏହି ବିରାଟ ଜଳାଶୟର ମୂକସାକ୍ଷୀ ସ୍ୱରୂପ ଗଙ୍ଗେଶ୍ୱରଦେବଙ୍କ ଦ୍ୱାରା ପୂର୍ବଭାଗରେ ପ୍ରତିଷ୍ଠିତ ପୂର୍ବାଶାସନ (ପୁର୍ବାଶାସନ) ଓ ଉତ୍ତର ତଟରେ ପ୍ରତିଷ୍ଠିତ ଉତ୍ତର ଶାସନ ମ୍ରିୟମାଣ ଅବସ୍ଥାରେ ଅଦ୍ୟାପି ବିଦ୍ୟମାନ ।

ତାଙ୍କର ଅନ୍ୟତମ ରାଣୀ ଶ୍ରୀସ୍ୱାଦେବୀଙ୍କ ଅଖଣ୍ଡ ବର୍ତ୍ତିଦାନ ସମ୍ବନ୍ଧୀୟ ଗୋଟିଏ ଲେଖ ପୂର୍ବ ଗୋଦାବରୀ ଜିଲାର ଦ୍ରାକ୍ଷାରାମସ୍ଥ ଭୀମେଶ୍ୱର ମନ୍ଦିରରୁ ୧୦୫୦ ଶକାବ୍ଦ ବା ୧୧୨୮ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ହୋଇଥିବାର ଜଣାଯାଏ । (୨୭) ଉକ୍ତ ଶ୍ରୀସ୍ୱାଦେବୀ ଦୟାନଦୀର ଉତ୍ପତ୍ତି ସ୍ଥଳରେ ଉତ୍ତର ଶାସନର ଉତ୍ତରକୁ 'ଶ୍ରୀସ୍ୱାଦେଈପୁର' ନାମକ ଶାସନ ବସାଇଥିଲେ । କାଳକ୍ରମେ ଏହାର ନାମ ହୋଇଗଲା 'ଶରଦେଈପୁର' ।

ଗଙ୍ଗେଶ୍ୱରଙ୍କର ଅନ୍ୟ ଜଣେ ରାଣୀଙ୍କ ନାମ ସାମଳା ମହାଦେବୀ । ମୁଖଲିଙ୍ଗର ଏକ ମନ୍ଦିରରେ ୧୦୩୦ ଶକାବ୍ଦ ବା ୧୧୦୮ ଖ୍ରୀଷ୍ଟାବ୍ଦରେ ସଂସ୍କୃତ ଓ ତେଲୁଗୁ ଭାଷାରେ ଲିଖିତ ଏକ ଲେଖରୁ ସେ ସେଠାରେ ଅଖଣ୍ଡ ଦୀପ ଜାଳିବା ପାଇଁ ଭୂମିଦାନ କରିଥିବା ଜଣାଯାଏ । (୨୮) ଗଙ୍ଗେଶ୍ୱରଦେବ ଓ ଉକ୍ତ ସାମଳା ମହାଦେବୀ ଭୁବନେଶ୍ୱରସ୍ଥ ବିନ୍ଦୁସାଗରର ପଶ୍ଚିମକୁ ରାମପୁଣି ଓ କାପାଳିନୀ ମନ୍ଦିର ଦ୍ୱୟ ମଧ୍ୟରେ 'ସାମଳ-ଗଙ୍ଗ' ନାମକ ଏକ ପୁଷ୍କରିଣୀ ଖନନ କରିଥିଲେ । 'କୋଶଳ-ଗଙ୍ଗ' ପରି ଏହାର ନାମ ହୋଇଥିଲା 'ହାମଳ-ଗଙ୍ଗ' । ପୂର୍ବେ ବିନ୍ଦୁସାଗର ସହିତ ଏହାର ସଂଯୋଗ ଥିଲା । ବର୍ତ୍ତମାନ ଏହା ସମ୍ପୂର୍ଣ୍ଣ ଲୁପ୍ତ ।

---

(୨୭) Inscriptions of Orissa, —Rājaguru, Vol. III, pt. I p. 114

(୨୮) Inscriptions of the Madras Presidency, Ganjam, No. 297.

ତାଙ୍କର ଅନ୍ୟ ଏକ ରାଣୀ ଲକ୍ଷ୍ମୀଦେବୀଙ୍କର ଦୁଇଟି ଲେଖ ଶ୍ରୀକାକୁଳଂ ଜିଲ୍ଲାର ରେମନ୍‌ଙ୍କି ନାମକ ଗ୍ରାମରେ ଅବସ୍ଥିତ ସିଦ୍ଧେଶ୍ୱର ମନ୍ଦିରରେ ୧୦୧୫ ଶକାବ୍ଦ ବା ୧୦୯୩ ଖ୍ରୀଷ୍ଟାବ୍ଦରେ ଓ ଅନ୍ୟ ଏକ ଲେଖ ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିରରେ ୧୦୩୩ ବା ୧୧୧୧ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇଥିବାର ଦେଖାଯାଏ । (୨୯) ଉକ୍ତ ରାଣୀ ଲକ୍ଷ୍ମୀଦେବୀ ନିଜର ନାମକୁ ଚିରସ୍ମରଣୀୟ କରିବା ପାଇଁ ଏକାମ୍ର କ୍ଷେତ୍ରର ଉତ୍ତର-ପୂର୍ବ ଭାଗରେ 'ଲକ୍ଷ୍ମୀସାଗର' ନାମକ ଏକ ବୃହତ୍ ଜଳାଶୟ ଖନନ କରିଥିଲେ । ଏହା ବର୍ତ୍ତମାନ 'କୋଶଳଗଙ୍ଗ' ପରି ପଙ୍କପୂର୍ଣ୍ଣ । ଏହା ନିକଟରେ ଅବସ୍ଥିତ ଚିନ୍ତାମଣୀଶ୍ୱର ଶିବମନ୍ଦିର ବୋଧହୁଏ ଗଙ୍ଗେଶ୍ୱରଦେବଙ୍କ କୀର୍ତ୍ତି । ଉତ୍କଳରେ ଚୋଳଗଙ୍ଗଦେବଙ୍କ ରାଜତ୍ୱ କାଳରେ (୧୧୧୨—୧୧୪୭ ଖ୍ରୀଷ୍ଟାବ୍ଦ) ଧଉଳୀର ଚତୁର୍ଦ୍ଦିଗରେ ଓ ଏକାମ୍ର କ୍ଷେତ୍ରରେ ବହୁ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ଓ ଦେବତାମାନଙ୍କ ଉଦ୍ଦେଶ୍ୟରେ ବୃହତ୍ ଜଳାଶୟମାନ ଖନନ ଓ ମନ୍ଦିର ନିର୍ମାଣ ଫଳରେ ଶୈବକ୍ଷେତ୍ର ଏକାମ୍ରର ପ୍ରାଧାନ୍ୟ, ଗୌରବ ଓ ମହତ୍ତ୍ୱ କ୍ଷିପ୍ରଭାବରେ ବୃଦ୍ଧିଲାଭ କରିବାରୁ ଧଉଳୀ ଅଞ୍ଚଳରୁ ବୌଦ୍ଧଧର୍ମର ଅସ୍ତିତ୍ୱ କ୍ରମଶଃ ଲୋପ ପାଇବାକୁ ଲାଗିଲା ।

## ଧଉଳୀ ଅଞ୍ଚଳରୁ ବୌଦ୍ଧ ବିତାଡ଼ନ—

ଧଉଳୀ ଅଞ୍ଚଳରୁ ସିଦ୍ଧ ବୌଦ୍ଧମାନଙ୍କ ବିତାଡ଼ନ ସମ୍ବନ୍ଧରେ ତିନୋଟି ସୂତ୍ରରୁ ଉପାଦାନ ସଂଗ୍ରହ କରାଯାଇପାରେ । ପ୍ରଥମଟି କିମ୍ବଦନ୍ତୀ ବା ଜନଶ୍ରୁତି, ଦ୍ୱିତୀୟଟି ହେଉଛି ଶୈବକ୍ଷେତ୍ର 'ଏକାମ୍ର'ର ମାହାତ୍ମ୍ୟ ପ୍ରଚାରକ 'ଏକାମ୍ର ପୁରାଣ' ଏବଂ ତୃତୀୟଟି ମାଦଳାପାଞ୍ଜିରେ ପ୍ରଦତ୍ତ ବିବରଣ ।

---

(୨୯) Inscriptions of Orissa, Rājaguru, Vol. III, pt I pp. 46, 47 & 61.

ଜନଶ୍ରୁତି ବା କମ୍ବଦନ୍ତୀ ଅନୁଯାୟୀ ଏକାମ୍ର କ୍ଷେତ୍ରର ପଶ୍ଚିମ ସୀମାରେ ଅବସ୍ଥିତ ଖଣ୍ଡାଚଳ (ପ୍ରାଚୀନ କୁମାରି ପର୍ବତ) ନିକଟରେ ବେଦପାରଗ ବ୍ରାହ୍ମଣମାନେ ବହୁକାଳରୁ ଲୁପ୍ତ ଏକ ଯାଗ କରିବା ପାଇଁ ବିଶେଷ ଆୟୋଜନ କରିଥିଲେ । କିନ୍ତୁ ଖଣ୍ଡଗିରି, ଉଦୟଗିରି ଓ ଓ ଧଉଳୀର ଗୁମ୍ଫାମାନଙ୍କରେ ବାସକରୁଥିବା ଯାଗଯଜ୍ଞରେ ଘୋର ବିରୋଧୀ ବୌଦ୍ଧ ସନ୍ନ୍ୟାସୀମାନଙ୍କ ପ୍ରବଳ ବାଧା ଯୋଗୁଁ ଯାଗ ବ୍ୟାହତ ହୋଇଥିଲା । ଯେଉଁ ସ୍ଥାନରେ ଏହି ଘଟିବାରୁ ଯାଗ ହୋଇପାରିଲା ନାହିଁ, ତାହାର ନାମ ହେଲା **ଯାଗମାରି** । ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ବାଧାପ୍ରାପ୍ତ ହେବାରୁ ଯାଜ୍ଞିକ ବ୍ରାହ୍ମଣମାନେ ଚତୁର୍ଦ୍ଦିଗରୁ ବହୁ ସଂଖ୍ୟାରେ ପୁନର୍ବାର ସମବେତ ହୋଇ ଖଣ୍ଡଗିରିର ଦକ୍ଷିଣକୁ ଏକ ସ୍ଥାନରେ ବହୁ ଆଡ଼ମ୍ବର ସହକାରେ ଏକ ବିରାଟ ଯାଗ ସଂପନ୍ନ କରିଥିଲେ । ଏଥର ସଂଖ୍ୟାନ୍ୟୂନ ବୌଦ୍ଧ ସନ୍ନ୍ୟାସୀମାନେ ଯାଗ ନଷ୍ଟ କରିବାକୁ ସାହସ କରି ନ ଥିଲେ । ତେଣୁ ଯେଉଁ ସ୍ଥାନରେ ନିର୍ବିଘ୍ନରେ ଯାଗ ସମାପ୍ତ ହେଲା ସେ ସ୍ଥାନର ନାମ ହେଲା **ଯାଗସରା** ।

ସଂସ୍କୃତ ଏକାମ୍ର ପୁରାଣରେ ବୈଦିକ ବ୍ରାହ୍ମଣ ଓ ବୌଦ୍ଧ ସନ୍ନ୍ୟାସୀମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଓ ଖଣ୍ଡଯୁଦ୍ଧ ପଞ୍ଚତ୍ରିଂଶତ ଠାରୁ ଦ୍ୱିଚତ୍ୱାରିଂଶ ପର୍ଯ୍ୟନ୍ତ ଆଠୋଟି ଅଧ୍ୟାୟରେ 'ଦେବାସୁର ସଂଗ୍ରାମ' ରୂପେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି । ତାହାର ସାରମର୍ମ ହେଉଛି, ଦେବତା (ଯାଜ୍ଞିକ ବ୍ରାହ୍ମଣ)ମାନେ ଗନ୍ଧବତୀ ନଦୀ କୂଳରେ ବିରାଟ ଆକାରରେ ଯଜ୍ଞାନୁଷ୍ଠାନ କରିବା ପାଇଁ ଯଜ୍ଞଶାଳା ଓ ବେଦୀମାନ ନିର୍ମାଣ କରିଥିଲେ ଓ ଯଜ୍ଞସ୍ତମ୍ଭ ପ୍ରତିଷ୍ଠିତ କରିଥିଲେ । ନାନା ସ୍ଥାନରୁ ଆଗତ ପଣ୍ଡିତମାନେ ଏହି ଅବସରରେ ନ୍ୟାୟବୈଶେଷିକ, ଇତିହାସ, ପୁରାଣ, ଆଗମ, କଳ୍ପସୂତ୍ର, ନିରୁକ୍ତ, ବ୍ରାହ୍ମଣ, ଶିବସଂହିତା ପ୍ରଭୃତି ଆଲୋଚନାରେ ନିରତ ହେଲେ । ହୋତା, ସଦସ୍ୟ, ଉପାଧ୍ୟାୟାଦି ଋତ୍ୱିକ୍‌ମାନେ ସମସ୍ତ ଆୟୋଜନ ସମାପ୍ତ କରି ଯଥାବିଧି ଯଜ୍ଞ ଆରମ୍ଭ କଲେ । ସୂର୍ଯ୍ୟାସ୍ତ ସମୟରେ ଯାଜକ ଦ୍ୱିଜମାନେ ସନ୍ଧ୍ୟା ଉପାସନା ପାଇଁ ଗନ୍ଧବତୀ ନଦୀ କୂଳକୁ ଗଲେ । ସଦସ୍ୟ ଓ ଶିଷ୍ୟମାନେ ଭ୍ରମଣାର୍ଥେ ବହିର୍ଗତ ହେଲେ । ଏହି

ସୁଯୋଗରେ ଦୁରକର୍ମା ଅସୁର (ଯଜ୍ଞ ବିରୋଧୀ ବୌଦ୍ଧ)ମାନେ ଛଦ୍ମବେଶରେ ଯଜ୍ଞଶାଳାରେ ପ୍ରବେଶ କରି ଅରଣୀ, ଯଜ୍ଞପାତ୍ର, ଉଦୁଖଳ, ଆଜ୍ୟ, ପଶୁ, ଚରୁ, ଚରୁପାତ୍ର, ସମିଧ ପ୍ରଭୃତି ଅପହରଣ କରିନେଲେ । ପଞ୍ଚାଗ୍ନିକୁ ନିର୍ବାପିତ କଲେ, ପାକ ଅନ୍ନ, ବ୍ୟଞ୍ଜନ ପ୍ରଭୃତି ଦୂଷିତ କରିଦେଲେ ।

ଏହି ଘଟଣା ପରେ ଦେବ ଓ ଅସୁରଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା । ଯୁଦ୍ଧରେ ଦେବରାଜ ଇନ୍ଦ୍ରଙ୍କ ବାଣରେ ପ୍ରପୀଡ଼ିତ ହୋଇ ଅଶରଣ ଅସୁରମାନେ ପଶ୍ଚିମ ଦିଗକୁ ପଳାଇଗଲେ । ଏହି ପରାଜୟ ପରେ କାଳନେମି, ଦ୍ରୁମିଳ, ହିରଣ୍ୟାକ୍ଷ, ହିରଣ୍ୟକଶିପୁ ପ୍ରଭୃତି ଅସୁର ସେନାପତିମାନେ କିଛିକାଳ ପ୍ରବଳ ଭାବରେ ଯୁଦ୍ଧ ଚଳାଇଥିଲେ । କିନ୍ତୁ ଦେବତାମାନଙ୍କ ପକ୍ଷରେ ସ୍ୱୟଂ କାର୍ତ୍ତିକେୟ, ଶିବ ଓ କୃଷ୍ଣ ସେନାପତି ରୂପେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବାରୁ ଅସୁରମାନେ ଯୁଦ୍ଧରେ ଏକାବେଳକେ ପରାସ୍ତ ହେଲେ । ଅସୁର ସେନାପତି କାଳନେମି, ହିରଣ୍ୟାକ୍ଷ ଓ କେତେ ଅସୁର ଯୁଦ୍ଧରେ ନିହତ ହେଲେ । ଯେଉଁ ଅସୁରମାନେ ବଞ୍ଚିଗଲେ, ସେମାନେ ଭୟୋଦ୍‌ବିଗ୍ନ ହୋଇ ପ୍ରାଣରକ୍ଷାର୍ଥେ ଗିରିଗୁହାମାନଙ୍କରେ ଆଶ୍ରୟ ନେଇଥିଲେ । ଯଥା –

"ମୃତାଽବଶେଷାସ୍ତୁ ତେ ଦୈତ୍ୟା ବଦ୍ରବନ୍ତ ଦିଶୋ ଦଶ
ଜୀବାଶୟା ଭୟୋଦ୍‌ବିଗ୍ନା ବିଶନ୍ତି ଗିରିକନ୍ଦରେ ॥"

ଏହା ପରେ ଉଭୟ ପକ୍ଷ ମଧ୍ୟରେ ଶାନ୍ତି ସ୍ଥାପିତ ହେଲା । ଅସୁରମାନଙ୍କ ମନ୍ତ୍ରଣାଦାତା ଶୁକ୍ର ବ୍ରହ୍ମାଙ୍କ ନିକଟକୁ ଆସି କ୍ଷମା ଭିକ୍ଷା କଲେ । ଭୃଗୁ ଶୁକ୍ରଙ୍କୁ ଏକାମ୍ର କ୍ଷେତ୍ରରେ ଶାନ୍ତିରେ ରହି କୃଷ୍ଣ ଓ ଶିବଙ୍କ ଆରାଧନାରେ କାଳଯାପନ କରିବା ପାଇଁ ଉପଦେଶ ଦେଇଥିଲେ ।

ହିରଣ୍ୟାକ୍ଷଙ୍କ ମୃତ୍ୟୁ ପରେ ହିରଣ୍ୟକଶିପୁ ଶୁକ୍ରଙ୍କ ଉପଦେଶ ମାନି ଏକାମ୍ର କ୍ଷେତ୍ରରେ ଶାନ୍ତିରେ ବାସ କରିବାକୁ ସ୍ଥିର କଲେ ଏବଂ ସିଦ୍ଧେଶ୍ୱର ମନ୍ଦିର ପଶ୍ଚିମରେ ଦୈତ୍ୟେଶ୍ୱର ମନ୍ଦିର ନିର୍ମାଣ

କରିଥିଲେ । (୩୦) ପୌରାଣିକ ଗ୍ରନ୍ଥରେ ବର୍ଣ୍ଣିତ ଏହି ଦେବାସୁର ସଂଗ୍ରାମର ବିସ୍ତୃତ ବିବରଣରୁ ଏହା ହିଁ ସ୍ପଷ୍ଟ ହୁଏ ଯେ, ଶାସକମାନଙ୍କ ପୃଷ୍ଠପୋଷକତା ଯୋଗୁଁ ଧଉଳୀ, ଖଣ୍ଡଗିରି ଓ ଉଦୟଗିରିର କନ୍ଦର ବା ଗୁହାଗୁଡ଼ିକରେ ବାସକରୁଥିବା ବୌଦ୍ଧସନ୍ୟାସୀମାନଙ୍କ ପ୍ରବଳ ପ୍ରତିରୋଧ ସତ୍ତ୍ୱେ ଏକାମ୍ର କ୍ଷେତ୍ରରେ ବୈଦିକ ଧର୍ମ ସୁପ୍ରତିଷ୍ଠିତ ହେଲା । ବୌଦ୍ଧମାନଙ୍କ ମଧ୍ୟରୁ ଅଧିକାଂଶ ଶୈବ ଏବଂ ବୈଷ୍ଣବ ଧର୍ମ ଗ୍ରହଣ କରି ଏକାମ୍ର କ୍ଷେତ୍ରରେ ଶାନ୍ତିରେ ରହିଲେ । ଅବଶିଷ୍ଟ ନିଷ୍ପ୍ରଭ ନିରାଶ ହୋଇ ଶୈଳଗୁହାମାନଙ୍କରେ ବାସ କଲେ ।

ଉତ୍କଳରେ ସୂର୍ଯ୍ୟବଂଶ ରାଜତ୍ୱ ପୂର୍ବରୁ 'ମାଦଳାପାଞ୍ଜି'ରେ ପ୍ରଦତ୍ତ ଐତିହାସିକ ବିବରଣ କିମ୍ବଦନ୍ତୀ ମୂଳକ । ଆଉମଧ୍ୟ ନିମ୍ନରେ ଉଦ୍ଧୃତ ବିବରଣରେ 'ବିଷୟ' ପରିବର୍ତ୍ତରେ 'ଦଣ୍ଡପାଟ'ର ବ୍ୟବହାର ଦ୍ୱାରା ଏହା ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ରଚିତ ହୋଇଥିବାର ସୂଚିତ ହୁଏ । କାରଣ ଚତୁର୍ଥ ନରସିଂହଙ୍କ ଦ୍ୱାରା ୧୩୯୫, ୧୩୯୬ ଓ ୧୩୯୭ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଦାନପତ୍ରରେ "ଆଠଖଣ୍ଡ କୋଷ୍ଠଦେଶ ମଦନଖଣ୍ଡ ବିଷୟେ" ଓ ବାରମ୍ବାର 'ଏ ବିଷୟ ମଧ୍ୟେ' ବୋଲି ଉଲ୍ଲେଖ ଦେଖାଯାଏ । (୩୧) ତଥାପି ଏହି କିମ୍ବଦନ୍ତୀ ମୂଳକ ବିବରଣରେ ଐତିହାସିକ ସତ୍ୟ ନିହିତ ଥିବାରୁ ଏହା ନିମ୍ନରେ ଉଦ୍ଧାର କରାଗଲା—

ପ୍ରଥମ ପାଞ୍ଜି ମତେ— "ଏ କେମ୍ବାଇ ଦଣ୍ଡପାଟରେ ଅଛନ୍ତି । କାଳୁପଡ଼ା ନେନ୍ଦେଶ୍ୱର ପର୍ବତ ଉପରେ ବିଷ୍ଣୁସ୍ୱାମୀ ଲିଙ୍ଗ, ଏହାଙ୍କ ପଶ୍ଚିମ ଦିଗରେ ସାଅଁଳା ପର୍ବତ ଓ ପାଅଁରି ପର୍ବତ, ଏ ପାଶେ ବଣି-

---

(୩୦) କଟକ ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ସଂସ୍କୃତ 'ଏକାମ୍ର ପୁରାଣ'

(୩୧) "Two copper plate inscriptions of the king Narasimha Deva IV of Orissa" — by M. M. Chakravarti, J. A. S, Bengal, 1895.

ଚନ୍ଦେଶ୍ୱର ପର୍ବତ, ଯମୁନା ଝାଡ଼ପଡ଼ା ପର୍ବତ । ପରଙ୍ଗ ଦଣ୍ଡପାଟେ ଅଗ୍ରଗଡ଼ ପର୍ବତ, ଧଉଳି ପର୍ବତ; ଏ ସବୁ ପର୍ବତ କନ୍ଦରମାନଙ୍କରେ ଚୌରାଅଶି ଗୁମ୍ଫାମାନ କରି ସିଦ୍ଧ ବୌଦ୍ଧମାନେ ରହୁଅଛନ୍ତି । ଏମାନେ ସର୍ବଜ୍ଞ ।" (୩୨)

ଝାଡ଼ପଡ଼ା ଓ ଭୁବନେଶ୍ୱର ଷ୍ଟେସନ ଠାରୁ ଅଳ୍ପ ଦୂରରେ ରେଲ-ଲାଇନର ପର୍ବପଟେ ରହିଛି । ଏଠାରେ ଥିବା ଚନ୍ଦେଶ୍ୱର ପର୍ବତର ଉଚ୍ଚତା ୧୬୮ ଫୁଟ । ରେଲଲାଇନର ପଶ୍ଚିମପଟେ ସାଆଳା ପର୍ବତ (୨୫୦ ଫୁଟ ଉଚ୍ଚ) ଓ ପାଆଁଶ ପର୍ବତ (୨୯୪ ଫୁଟ ଉଚ୍ଚ) । ଏ ତିନୋଟି ପର୍ବତ ଦୟାନଦୀର ଦକ୍ଷିଣରେ ଅବସ୍ଥିତ । ଚଣ୍ଡିକେଶ୍ୱର ପର୍ବତ ବେଗୁନିଆପଡ଼ା ଗ୍ରାମ ନିକଟରେ ଓ ମୋଟରୀ ରେଲଷ୍ଟେସନର ୩ ମାଇଲ ପଶ୍ଚିମକୁ ଓ ଯମୁନା ଝାଡ଼ପଡ଼ା ପର୍ବତ କଣ୍ଟଣି ଷ୍ଟେସନର ୨୪ ମାଇଲ ଦକ୍ଷିଣକୁ ଅବସ୍ଥିତ । ରେଲଲାଇନର ପଶ୍ଚିମକୁ ଥିବା ଏହି ପାହାଡ଼ ଦୁଇଟିର ଉଚ୍ଚତା ଯଥାକ୍ରମେ ୨୨୦ ଓ ୩୭୨ ଫୁଟ । ଏହି ଦୁଇ ପର୍ବତର ଦକ୍ଷିଣକୁ ରେଲଲାଇନ ପଶ୍ଚିମରେ ଅଗ୍ରଗଡ଼ ପର୍ବତ । ଅଗ୍ରଗଡ଼ ପର୍ବତର ଦକ୍ଷିଣକୁ ଅଳ୍ପ ଦୂରରେ ଦୟା ନଦୀ ପ୍ରବାହିତ । ଧଉଳି ପାହାଡ଼ ମଧ୍ୟ ଦୟାନଦୀର ଡାହାଣ କୂଳରେ ଭୁବନେଶ୍ୱର ଠାରୁ ୩ ମାଇଲ ଦୂରରେ ଅବସ୍ଥିତ । ତେଣୁ ମାଦଳାପାଞ୍ଜିରେ ପର୍ବତ-ଗୁଡ଼ିକର ଯେଉଁ ବର୍ଣ୍ଣନା ଦିଆଯାଇଛି, ଏକ ମାଇଲକୁ ଏକ ଇଞ୍ଚ ଅନୁପାତରେ ପ୍ରଣୀତ ସରକାରୀ ମାନଚିତ୍ରରେ ତାହା ସମ୍ପୂର୍ଣ୍ଣ ରୂପେ ମିଳିଯାଉଛି । (୩୩)

ସେହିପରି ପ୍ରତ୍ୟେକ ପାହାଡ଼ରେ ଥିବା ଗୁମ୍ଫା ବର୍ଣ୍ଣନାରେ ମଧ୍ୟ ସତ୍ୟତା ଥିବାର ମନେହୁଏ । ମୁଁ ଧଉଳି ଓ ଅଗ୍ରଗଡ଼ରେ ଥିବା ଗୁମ୍ଫାଗୁଡ଼ିକ ପରୀକ୍ଷା କରିବାର ସୁଯୋଗ ପାଇଅଛି । ଅନ୍ୟଗୁଡ଼ିକର ସନ୍ଧାନ କରିପାରି ନାହିଁ । ଏ ପର୍ବତ ଗୁଡ଼ିକରେ ୮୪ ଗୁମ୍ଫା ଥିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ତାନ୍ତ୍ରିକ ବୌଦ୍ଧମାନଙ୍କ ମଧ୍ୟରେ ୮୪ ଜଣ

---

(୩୨) ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ, 'ମାଦଳାପାଞ୍ଜି' ପୃ ୨୫

(୩୩) One inch Topo Map. 73 $\frac{H}{12}$.

ସିଦ୍ଧାଗୁମ୍ଫ ବିଶେଷ ଖ୍ୟାତିଲାଭ କରିଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି । ଏମାନେ ଦେଶାଟନ ସମୟରେ ପ୍ରତ୍ୟେକେ ବିଭିନ୍ନ ଗୁମ୍ଫାରେ ରହୁଥିବାରୁ ଏପରି କିମ୍ବଦନ୍ତୀର ଉଦ୍ଭବ ଘଟିଥିବା ସମ୍ଭବପର ।

'ସର୍ବଜ୍ଞ' ପଦର ବ୍ୟବହାର ମଧ୍ୟ ବିଶେଷ ପ୍ରଣିଧାନଯୋଗ୍ୟ । ଏପର୍ଯ୍ୟନ୍ତ ମିଳିଥିବା ସର୍ବପ୍ରାଚୀନ ସଂସ୍କୃତ ଅଭିଧାନ 'ଅମରକୋଷ'ର ବୁଦ୍ଧ ପର୍ଯ୍ୟାୟରେ ବୁଦ୍ଧ 'ସର୍ବଜ୍ଞ' ନାମରେ ପରିଚିତ । ଯଥା 'ସର୍ବଜ୍ଞ ସୁଗତ ବୁଦ୍ଧ ।' ଆଜିମଧ୍ୟ ତନ୍ତ୍ରିକ ବୌଦ୍ଧ ସାହିତ୍ୟରେ ସିଦ୍ଧାଗୁମ୍ଫ ମାନଙ୍କ 'ସର୍ବଜ୍ଞତା' ସମ୍ବନ୍ଧରେ ବହୁ ଗଳ୍ପର ଉଲ୍ଲେଖ ଦେଖାଯାଏ ।

ପାଞ୍ଜି ଅନୁସାରେ ମଦନ ମହାଦେବଙ୍କ ଅନ୍ୟ ନାମ ରାଜରାଜଦେବ । ସେ ଚୋଳଗଙ୍ଗଙ୍କ ପୁତ୍ର ଏକଜଟା କାମଦେବ ବା କାମାର୍ଣ୍ଣବଙ୍କ ପରେ ରାଜତ୍ୱ କରିଥିବାରୁ ସେ ହେଉଛନ୍ତି ଦ୍ୱିତୀୟ ରାଜରାଜଦେବ ଓ ତାଙ୍କର ରାଜତ୍ୱ କାଳ ହେଉଛି ୧୧୭୦ରୁ ୧୧୯୦ ଖ୍ରୀଷ୍ଟାବ୍ଦ । ସେ ରାଣୀମାନଙ୍କ କଥାରେ ହାଣ୍ଡି ଭିତରେ ସାପ ରଖି ବୌଦ୍ଧମାନଙ୍କ ସର୍ବଜ୍ଞତା ପରୀକ୍ଷା କରିଥିଲେ । ବୌଦ୍ଧମାନେ ଠିକ କଥା କହିବାରୁ ରାଜା ହାରିଗଲେ । ତେଣୁ ବୌଦ୍ଧ ପକ୍ଷପାତି ରାଣୀମାନେ ରାଜାଙ୍କୁ ପରିହାସ କଲେ । ତହୁଁ ରାଜା ବ୍ରାହ୍ମଣମାନଙ୍କୁ ପଚାରିବାରୁ ସେମାନେ ମନ୍ତ୍ରବଳରେ ସାପକୁ ଭସ୍ମ କରିଦେଇ ହାଣ୍ଡି ଭିତରେ ଭସ୍ମ ଅଛି ବୋଲି କହିଲେ । ପରକୁ ସତ ହାଣ୍ଡି ଖୋଲିବାରୁ ତାହା ଭିତରୁ ଭସ୍ମ ବାହାରିଲା । ଏଥିରେ ରାଣୀମାନେ ଅପଦସ୍ତ ହେଲେ । ବ୍ରାହ୍ମଣଙ୍କ ବିଜୟ ହେବାରୁ ରାଜା ବୌଦ୍ଧମାନଙ୍କୁ ମାରିବା ପାଇଁ ଉଦ୍ୟମ କଲେ । ଯଥା—

"ଏମନ୍ତ ବୋଲି ବୌଦ୍ଧମାନଙ୍କର ରାଜା ମୁଣ୍ଡ ଛେଦିବା ବେଳକୁ ବୌଦ୍ଧମାନେ ରାଜାଙ୍କୁ ଶାପ ଦେଇ ପର୍ବତ ଗୁମ୍ଫାମାନଙ୍କରୁ ବାହାର ହୋଇ ଅରଣ୍ୟକୁ ଗଲେ ।" ଅନ୍ୟ ପାଞ୍ଜି ଅନୁସାରେ "ଏ ରାଜା ବୌଦ୍ଧମାନଙ୍କୁ ମାରି ଉଚ୍ଛନ୍ନ କରିଦେଲେ ।" ବ୍ରାହ୍ମଣମାନଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦକ ଏହି କିମ୍ବଦନ୍ତୀରେ ରାଜରାଜଦେବଙ୍କ ରାଜତ୍ୱରେ ଧଉଳୀ, ଅଗରଗଡ଼ ପ୍ରଭୃତି ପର୍ବତର ଗୁମ୍ଫାମାନଙ୍କରେ ବାସକରୁଥିବା ସର୍ବଜ୍ଞ

ସିଦ୍ଧ ବୌଦ୍ଧମାନେ ରାଜାଙ୍କ ଦ୍ୱାରା ନିର୍ଯାତିତ ହୋଇ ଅରଣ୍ୟ ମଧ୍ୟକୁ ପଳାଇ ଯାଇଥିବା ସତ୍ୟ ନିଶ୍ଚିତ ଅଟେ । ଚୋଳଗଙ୍ଗଙ୍କ ଦ୍ୱାରା ଧଉଳୀ ପାହାଡ଼ର ପୃଷ୍ଠଦେଶରେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ଓ ତାଙ୍କ ପୁତ୍ରଙ୍କ ଦ୍ୱାରା ଧଉଳୀ ପାହାଡ଼ରୁ ସିଦ୍ଧ ବୌଦ୍ଧମାନଙ୍କ ବିତାଡ଼ନ ଫଳରେ ଅଶୋକଙ୍କ ରାଜତ୍ୱ କାଳରୁ ଏକ ପ୍ରସିଦ୍ଧ ବୌଦ୍ଧକେନ୍ଦ୍ର ରୂପେ ଏହାର ଯେଉଁ ଖ୍ୟାତି ଓ ଗୌରବ ଥିଲା, ଚିରକାଳ ପାଇଁ ତାହାର ଅବସାନ ଘଟିଲା । ପରବର୍ତ୍ତୀ ଯୁଗରେ ଏଠାର ଗୁମ୍ଫାଗୁଡ଼ିକରେ ହିନ୍ଦୁ ସଂପ୍ରଦାୟର ଯୋଗୀ ଓ ବୈରାଗୀମାନେ ଉକ୍ତ ଧର୍ମାଚରଣ କରୁଥିବାର ଜଣାଯାଏ ।

ଧଉଳୀ ପରି ଅଗରଡ଼ ପର୍ବତର ଠିକ୍ ପୂର୍ବକୁ ରେଳଲାଇନ ପାଖେ ଦୟାନଦୀ କୂଳରେ 'କପିଳେଶ୍ୱର' ମହାଦେବଙ୍କର ବିମାନ ଓ ଜଗମୋହନ ବିଶିଷ୍ଟ ଏକ ମନ୍ଦିର ହିପୁଟ ଉଚ୍ଚତା ବିଶିଷ୍ଟ ପୀଠୋପରି ଦଣ୍ଡାୟମାନ । ଏହାର ପୃଷ୍ଠଦେଶେ ପୂର୍ବ, ପଶ୍ଚିମ ଓ ଦକ୍ଷିଣରେ ଦ୍ୱାର ଥିବା ମାଙ୍କଡ଼ା ପଥରରେ ତିଆରି ଏକ ବେଢା ଅଛି । ଈଶାନ୍ୟ କୋଣର ଏକ ମନ୍ଦିରରେ ଅଷ୍ଟଭୁଜା ଏକ ଚାମୁଣ୍ଡା ମୂର୍ତ୍ତି ପୂଜିତ ହେଉଛନ୍ତି । ବୌଦ୍ଧପୀଠ ଅଗରଡ଼ର ମାହାତ୍ମ୍ୟ କ୍ଷୁର୍ଣ୍ଣ କରିବା ପାଇଁ ଏହି ମନ୍ଦିରଟି ଗଙ୍ଗ ରାଜତ୍ୱରେ ନିର୍ମିତ ହୋଇଥିବା ସୁନିଶ୍ଚିତ । ସେହିପରି ଯମୁନା ଝାଡ଼ପଡ଼ା ଗ୍ରାମରେ ଅତି ଚମତ୍କାର କାରୁକାର୍ଯ୍ୟ ଖଚିତ, ବିମାନ ଓ ଜଗମୋହନ ବିଶିଷ୍ଟ ଏବଂ ପୃଷ୍ଠଦେଶ ମାଙ୍କଡ଼ା ପଥରର ବେଢା ପ୍ରାଚୀର ବେଷ୍ଟିତ 'ବଣିକେଶ୍ୱର' ମନ୍ଦିର ନିର୍ମିତ ହୋଇଥିଲା । ମାଦଳ ପାଞ୍ଜି ଅନୁସାରେ ଏହି ମନ୍ଦିରର ପୂର୍ବ ନାମ 'ସାମଳେଶ୍ୱର' ଥିବାରୁ ଚୋଳଗଙ୍ଗଙ୍କ ରାଣୀ ସାମଳା ମହାଦେବୀ ଏହା ନିର୍ମାଣ କରିଥିବା ଆପାତତଃ ସ୍ୱୀକାର କରିହେବ ।

## ଧଉଳୀ ଗଡ଼ର ପତନ—

ତ୍ରୟୋଦଶ ଶତାବ୍ଦୀର ପ୍ରଥମ ବର୍ଷରୁ ବଙ୍ଗଳାରେ ମୁସଲମାନ ଆଧିପତ୍ୟ ପ୍ରତିଷ୍ଠା ଓ ତୋଗଲକ ବଂଶୀୟ ପ୍ରବଳ ପ୍ରତାପ ସୁଲତାନ ଫିରୋଜ ସାହଙ୍କ ଦ୍ୱାରା ୧୩୬୧ ଖ୍ରୀଷ୍ଟାବ୍ଦରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର

ଆକ୍ରମଣ ପାଇଁ ଅଭିଯାନ ଯୋଗୁଁ ବଙ୍ଗଦେଶରୁ ପୁରୀକୁ ଆସିଥିବା ଜଗନ୍ନାଥ ସଡ଼କ ଦୁଇପାଖରେ ଥିବା ପ୍ରାଚୀନ ଦୁର୍ଗସବୁ ସୁଦୃଢ଼ କରାଗଲା । ମୋଗଲ ସେନାର ଘନ ଘନ ପୁରୀ ଆକ୍ରମଣର ପ୍ରତିରୋଧ ପାଇଁ ପ୍ରାଚୀନ ଶିଶୁପାଳ ଦୁର୍ଗରେ ଆଖପାଖରେ ଝାଡ଼ପଡ଼ା, ବରଗଡ଼, ନୂଆପଲ୍ଲୀ, କପିଳପ୍ରସାଦ, ଓମୁଣ୍ଡୁମା, ଧଉଳୀ, ପିପିଲି, ରଥୀପୁର ପ୍ରଭୃତି ସ୍ଥାନରେ ଛୋଟ ଛୋଟ ଗଡ଼ ସବୁ ତିଆରି ହୋଇ ବଂଶାନୁକ୍ରମେ ବହୁ ପାଇକ (ପଦାତିକ)ଙ୍କ ଉପରେ ସେଗୁଡ଼ିକ ରକ୍ଷାର ଭାର ନ୍ୟସ୍ତ ହୋଇଥିଲା । କଟକର ଦୁର୍ଦ୍ଦାନ୍ତ ନାଏବ ନାଜିମ ମହମ୍ମଦ ତକି ଖାଁ ଗଜପତି ରାମଚନ୍ଦ୍ର ଦେବ (ହାଫିଜ୍)ଙ୍କ ଆଠ ଥରରେ ୧୭୩୧ ଖ୍ରୀଷ୍ଟାବ୍ଦରେ ତାଙ୍କର ରାଜଧାନୀ ଖୋର୍ଦ୍ଧା ଆକ୍ରମଣ କରିବା ଉଦ୍ଦେଶ୍ୟରେ କଟକରୁ ବହୁ ସୈନ୍ୟ ଚଳାଇ ପ୍ରଥମେ ସବୁଠାରୁ ସୁଦୃଢ ଶିଶୁପାଳ ଗଡ଼କୁ ଖୋଳତାଡ଼ ପକାଇଲେ । ତତ୍ପରେ ଧଉଳୀ ଗଡ଼ ଓ ରଥୀପୁର ଗଡ଼କୁ ଆକ୍ରମଣ କରି ଦଖଲ କରିଗଲେ । (୩୪)

ତକି ଖାଁ ଜଗନ୍ନାଥ ସଡ଼କରେ ବାରମ୍ବାର ଫୌଜ ଚଳାଇ ପିପିଲିର ବହୁ ହିନ୍ଦୁକୀର୍ତ୍ତି ଧ୍ୱଂସ କରି ସେଠାରେ ଏକ ମସ୍‌ଜିଦ୍ ନିର୍ମାଣ କରିଥିବା ପିପିଲିରୁ ପ୍ରାପ୍ତ ତାଙ୍କର ଏକ ପାର୍ସୀ ଲେଖରୁ ଜଣାଯାଏ । ୧୭୩୪ରେ ତକି ଖାଁଙ୍କ ମୃତ୍ୟୁ ଘଟିଥିଲା । ତେଣୁ ୧୭୩୧ରୁ ୧୭୩୪ ମଧ୍ୟରେ ତକି ଖାଁ ଶିଶୁପାଳ ଓ ପିପିଲି ମଧ୍ୟରେ ଘନ ଘନ ଯୁଦ୍ଧଯାତ୍ରା କରିବା ଫଳରେ ଧଉଳୀ ଗଡ଼ କ୍ଷତବିକ୍ଷତ ହୋଇଥିବା ସମ୍ଭବ ସମ୍ଭବପର । ଏହା ଫଳରେ ଧଉଳୀର ସାମରିକ ଗୁରୁତ୍ୱ ମଧ୍ୟ ହ୍ରାସପାଇ ଗଲା ଏବଂ ଏ ଅଞ୍ଚଳର ଲୋକେ ପ୍ରାଣଭୟରେ ଇତସ୍ତତଃ ପଳାଇଗଲେ । ଜନଶୂନ୍ୟ ପାର୍ବତ୍ୟଭୂ ଧଉଳୀ ପାହାଡ଼ର ବୃକ୍ଷଚାରି ଜଙ୍ଗଲରେ ଢାଙ୍କି ହୋଇଗଲା । ୧୮୩୭ରେ ମାର୍କହାମ କିଟୋଙ୍କ ପରିଦର୍ଶନ ସମୟକୁ ଏହା ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ରଜନ୍ତୁଙ୍କ ବାସଭୂମିରେ ପରିଣତ ହୋଇଥିଲା ଏବଂ ଧଉଳୀ ଗଡ଼ର କିମ୍ବଦନ୍ତୀ ସୁଦ୍ଧା ନ ଥିଲା ।

---

(୩୪) ମୋ ପ୍ରଣୀତ 'ଖୋର୍ଦ୍ଧା ଇତିହାସ' ପୃ ୧୮୩ ଦ୍ରଷ୍ଟବ୍ୟ ।

# ପଞ୍ଚମ ଅଧ୍ୟାୟ

## ଧଉଳିସ୍ଥ ଅଶୋକ ରାଜତ୍ୱର ଏକାଦଶ ଅନୁଶାସନ ଏବଂ ଅନ୍ୟ ଅନୁଶାସନ-ସମୂହର ଆଲୋଚନା

ଅଦ୍ୟାବଧି ଛଅଟି ସ୍ଥାନରେ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଚତୁର୍ଦ୍ଦଶ ଅନୁଶାସନ ଆବିଷ୍କୃତ ହୋଇଅଛି । ସେଗୁଡ଼ିକ ଯଥାକ୍ରମେ ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଗତ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ସାହାବାଜ୍‌ଗଡ଼ୀ (କପର୍ଦ୍ଦିଗିରି), ଓମାନସହରା, ଉତ୍ତରପ୍ରଦେଶର ସାହାରାନପୁର ଜିଲ୍ଲାର କାଲସୀ, ଗୁଜରାଟ ଅନ୍ତର୍ଗତ ଗିର୍ଣ୍ଣାର (ଗିରିନଗରେ) ଓ ଓଡ଼ିଶାର ଧଉଳୀ ଓ ଯୌଗଡ଼ ଠାରେ ବିଦ୍ୟମାନ । ଦେଶଭେଦରେ ଲେଖଗୁଡ଼ିକର ଆକାର ପ୍ରକାର, ସେଗୁଡ଼ିକରେ ବ୍ୟବହୃତ ବର୍ଣ୍ଣମାଳା ଓ ଭାଷାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ପ୍ରଥମ ଦଶଟି ଅନୁଶାସନ ଉପରିଲିଖିତ ଛଅଟି ସ୍ଥାନରେ ସମ୍ପୂର୍ଣ୍ଣ ଭାବରେ ମିଳେ । ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅନୁଶାସନ, ଓଡ଼ିଶାର ଧଉଳୀ ଓ ଯୌଗଡ଼ ବ୍ୟତୀତ ଅନ୍ୟ ଚାରୋଟି ସ୍ଥାନରେ ଦେଖାଯାଏ । ଚତୁର୍ଦ୍ଦଶ ଅନୁଶାସନ ମାନସହରା ବ୍ୟତୀତ ଅନ୍ୟ ପାଞ୍ଚଟି ସ୍ଥାନରେ ଲିଖିତ ହୋଇଅଛି । ଉକ୍ତ ସାଧାରଣ ଅନୁଶାସନ ଗୁଡ଼ିକ ବ୍ୟତୀତ ଧଉଳୀ ଓ ଯୌଗଡ଼ ଠାରେ ନୂତନ ବିଜିତ କଳିଙ୍ଗ ରାଜ୍ୟର ସୁଶାସନ ନିମିତ୍ତ ଦୁଇଟି ସ୍ୱତନ୍ତ୍ର କଳିଙ୍ଗାନୁଶାସନ ଖୋଦିତ ହୋଇଅଛି । ଉଭୟସ୍ଥଳ ଖୋଦିତ ଲେଖ ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ଥିଲେ ମଧ୍ୟ ଧଉଳୀର କଳିଙ୍ଗାନୁଶାସନ ଅପେକ୍ଷାକୃତ ସ୍ପଷ୍ଟ ଓ ଅଶୋକ ଯୁଗରେ କଳିଙ୍ଗର ଇତିହାସ ଆଲୋଚନା ପାଇଁ ଅତ୍ୟନ୍ତ ଉପାଦେୟ ।

## ଧଉଳି ଅନୁଶାସନର ଆବିଷ୍କାର —

ସାର୍ଦ୍ଧ ଦୁଇସହସ୍ର ଦୁଇଶହ ବର୍ଷ ପୂର୍ବେ ଲିଖିତ ଏହି ଅନୁଶାସନ ସମୂହ ବର୍ଣ୍ଣମାଳାର ସମ୍ପୂର୍ଣ୍ଣ ପରିବର୍ତ୍ତନ ଯୋଗୁଁ ଏହି ଦେଶର ଜନସାଧାରଣଙ୍କ କଥା ଦୂରେ ଥାଉ; ବହୁ ଜ୍ଞାନୀ ପଣ୍ଡିତମାନଙ୍କ ପକ୍ଷେ ମଧ୍ୟ ଅବୋଧ୍ୟ ହୋଇଗଲା । ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ ଯୁଗରେ ଧଉଳି ପାହାଡ଼ର ଅନୁଶାସନ ସମୂହ ଉପରେ ଖୋଦିତ ହସ୍ତୀ ମହାଭାରତ ବର୍ଣ୍ଣିତ ଅଶ୍ୱତ୍ଥାମା ହସ୍ତୀ ନାମରେ ଆଖ୍ୟାତ ହେବାରୁ ଏହା କ୍ରମଶଃ ହିନ୍ଦୁମାନଙ୍କର ମଧ୍ୟ ଏକ ପୂଜ୍ୟ ବସ୍ତୁ ରୂପେ ପରିଗଣିତ ହେଲା । ତେଣୁ ପ୍ରତିବର୍ଷ ରଜସଂକ୍ରାନ୍ତି ଉପଲକ୍ଷେ ତିନଦିନ ବ୍ୟାପୀ ଯାତ୍ରା ସମୟରେ ସମବେତ ଯାତ୍ରୀମାନଙ୍କ ମଧ୍ୟରୁ ନିଜ ନିଜର ପାପ କ୍ଷାଳନ ଆଶାରେ କେହି କେହି ହସ୍ତୀ ମୁଣ୍ଡକୁ ସ୍ପର୍ଶ କରି ଓ ଅନ୍ୟମାନେ ଦୂରରୁ ନମସ୍କାର କରି ଚାଲିଯାଆନ୍ତି ।

ହସ୍ତୀ ତଳକୁ ଖୋଳାଯାଇଥିବା ଅନୁଶାସନ ଗୁଡ଼ିକ ପାଠକରିବା ସମସ୍ତଙ୍କ ପକ୍ଷେ ଅସମ୍ଭବ ହୋଇପଡ଼ିବାରୁ ଲୋକଙ୍କର ଧାରଣା ହୋଇଗଲା ଯେ, ଏଥିରେ ପାହାଡ଼ର କୌଣସି ସ୍ଥାନରେ ଗୁପ୍ତଧନ ନିଖାତ ଥିବାର ବର୍ଣ୍ଣିତ ହୋଇଅଛି ଏବଂ ଯେଉଁ ବ୍ୟକ୍ତି ଏହା ପାଠ କରିବାକୁ ସମର୍ଥ ହେବ ସେ ଭୂମି ନିଖାତ ଧନ ଲାଭ କରିପାରିବ । କିନ୍ତୁ ଏହି ଗୁପ୍ତଧନ ଲାଭକରିବା ସୌଭାଗ୍ୟ କୌଣସି ଭାରତବାସୀଙ୍କର ଘଟିନାହିଁ । ସାତ ସମୁଦ୍ର ତେର ନଈ ପାରହୋଇ ଏ ଦେଶକୁ ଆସିଥିବା ଉତ୍ସାହ ସମ୍ପନ୍ନ, ସତ୍ୟାନୁସନ୍ଧିତ୍ସୁ, ଆପକୋଦ୍ୟୁକର୍ମୀ କେତେକ ଇଂରେଜ ମନୀଷୀ ପ୍ରଥମେ ଏହି ଗୁପ୍ତଧନର ସନ୍ଧାନ ପାଇଥିଲେ । ସେମାନଙ୍କ ମଧ୍ୟରେ କଲିକତାରେ ଅବସ୍ଥିତ **Lieutenant Markham Kittoe** ନାମକ ଇଂରେଜ ସେନାପତିଙ୍କ ନାମ ସର୍ବାଗ୍ରଗଣ୍ୟ ।

ଓଡ଼ିଶାର ପ୍ରତ୍ନତତ୍ତ୍ୱ ଅନୁସନ୍ଧାନ କରିବା ପାଇଁ ତାଙ୍କର କିପରି ପ୍ରବଳ ଆଗ୍ରହ ଥିଲା, ତାହା ନିମ୍ନୋକ୍ତ ବିବରଣ ଦ୍ୱାରା ପ୍ରମାଣିତ ହୁଏ । ୧୮୩୭ ମସିହା ନଭେମ୍ବର ମାସରେ ବଙ୍ଗ ସରକାର ତାଙ୍କୁ କଲିକତାରୁ

ଫୌଜ ସହ ଘୁମୁସର ଅଞ୍ଚଳକୁ ବନ୍ଧ ମେଳ ଦମନ କରିବାକୁ ପଠାଇ-ଥିଲେ । ସେ ଯିବା ବାଟରେ ଅବସର ସମୟରେ ଯାଜପୁର, ଛତିଆ, ଚଉଦ୍ୱାର, କଟକ, ଗୁଜଚଚପୁର (ଆଠଗଡ଼) ଓ ବୈଦ୍ୟେଶ୍ୱର ପ୍ରଭୃତି ସ୍ଥାନରେ ଥିବା ପ୍ରାଚୀନ କୀର୍ତ୍ତିଗୁଡ଼ିକର ସଂକ୍ଷିପ୍ତ ବିବରଣ ସ୍ୱହସ୍ତ ଅଙ୍କିତ ଅତି ସୁନ୍ଦର ଚିତ୍ର ସହ ଏସିଆଟିକ ସୋସାଇଟି ପତ୍ରିକାରେ ପ୍ରକାଶ ପାଇଁ ପଠାଇଥିଲେ । ସେଗୁଡ଼ିକ ଐତିହାସିକ ଗବେଷଣା ପାଇଁ ଅତ୍ୟନ୍ତ ଉପାଦେୟ ।

ଅତ୍ୟନ୍ତ ଉତ୍ସାହସମ୍ପନ୍ନ, ସାହସୀ, ଧୈର୍ଯ୍ୟଶାଳୀ ଓ ଜ୍ଞାନପିପାସୁ କିଟୋ ସାହେବ ୧୮୩୭ ମସିହା ମାର୍ଚ୍ଚ ମାସରେ ନିଜ ଜୀବନକୁ ସଂକଟାପନ୍ନ କରି ବହୁ ବୃକ୍ଷଲତା, ଗୁଳ୍ମ ଓ କଣ୍ଟକମୟ ବେତସକୁଞ୍ଜ ଦ୍ୱାରା ଲୁକ୍କାୟିତ ଶ୍ୱାପଦସଂକୁଳ ଦୁର୍ଗମ ଧଉଳୀ ପାହାଡ଼ର ପ୍ରାଚୀନ କୀର୍ତ୍ତି ଓ ଏଠାରେ ଥିବା ଅଶୋକଙ୍କ ଅନୁଶାସନ ସମୂହ ଆବିଷ୍କାର କରିବାକୁ ସର୍ବପ୍ରଥମେ ସମର୍ଥ ହୋଇଥିଲେ ।

ଏଠାରେ ଅନୁସନ୍ଧାନ କାର୍ଯ୍ୟ କରୁଥିବା ସମୟରେ ଦୁଇଟି ଛୁଆ ସହ ଗୋଟିଏ ମାଈ ଭାଲୁ ହଠାତ୍ ତାଙ୍କୁ ଆକ୍ରମଣ କରିବା ପାଇଁ ଉଦ୍ୟତ ହେଲା । ସେ ମାଈ ଭାଲୁକୁ ଗୁଳିକରି ମାରିଦେଇ ପୁନର୍ବାର ନିର୍ଭୀକ ଭାବ ରେ ନିଜ କାର୍ଯ୍ୟରେ ଲାଗିପଡ଼ିଲେ । ସେ ଅକ୍ଳାନ୍ତ ପରିଶ୍ରମ କରି ଏକାନ୍ତ ନିଷ୍ଠା ଓ ଏକାଗ୍ରତା ସହକାରେ ଅଶ୍ୱତ୍ଥାମା ପାହାଡ଼ରେ ଖୋଦିତ ଅଶୋକଙ୍କ ଅନୁଶାସନ ସମୂହର ଏକ ପ୍ରତିଲିପି ସ୍ୱ ହସ୍ତରେ ଅଙ୍କନ ଓ ଧଉଳୀ ପାହାଡ଼ରେ ଥିବା ଗୁମ୍ଫା ଓ ମନ୍ଦିର ଗୁଡ଼ିକ ପରି-ଦର୍ଶନ ପୂର୍ବକ ସେଗୁଡ଼ିକର ଏକ ସଂକ୍ଷିପ୍ତ ବିବରଣ ପ୍ରସ୍ତୁତ କରି ଏବଂ ଧଉଳୀ ଅଞ୍ଚଳର ଏକ ନକ୍ସା କାଟି ତାହା ଏସିଆଟିକ ସୋସାଇଟି ପତ୍ରିକାରେ ପ୍ରକାଶ ପାଇଁ ଦେଇଥିଲେ । (୧)

---

(୧) Lt. Kittoe's letter dated the 2nd April, 1837 addressed to the Secretary, Asiatic Society,

( Contd )

## ଧଉଳି ଅନୁଶାସନର ପାଠୋଦ୍ଧାର—

ସମଗ୍ର ଭାରତରେ ଆବିଷ୍କୃତ ଅଶୋକ ଅନୁଶାସନ ସମୂହର ସର୍ବପ୍ରଥମ ପାଠୋଦ୍ଧାର କର୍ତ୍ତା ଚିରସ୍ମରଣୀୟ ଜେମସ୍ ପ୍ରିନ୍‌ସେପ୍ ସାହେବଙ୍କ ଅନୁରୋଧରେ କିଟୋ ପୂର୍ବବର୍ଷ ନିଜ ଦ୍ୱାରା ଅଙ୍କିତ ଧଉଳି ଅନୁଶାସନର ପ୍ରତିଲିପିକୁ ଉତ୍ତମଭାବରେ ମିଳାଇ ଭ୍ରମ ସଂଶୋଧନ କରିବା ଉଦ୍ଦେଶ୍ୟରେ ୧୮୩୮ ମାର୍ଚ୍ଚ ମାସ ଦ୍ୱିତୀୟ ସପ୍ତାହରେ ପୁନର୍ବାର ଧଉଳି ପାହାଡ଼ ପରିଦର୍ଶନ କରିଥିଲେ । ଏଥର ସେ ଅତ୍ୟନ୍ତ ମନଯୋଗ ସହକାରେ ଅକ୍ଷର ଗୁଡ଼ିକ ନିରୀକ୍ଷଣ କରିବା ସମୟରେ ତାଙ୍କ ଜୀବନ ସଂକଟାପନ୍ନ ହେଲେ ମଧ୍ୟ ସେ ସେଥିପ୍ରତି ଭ୍ରୂକ୍ଷେପ ନ କରି ସଂଶୋଧନ କାର୍ଯ୍ୟ ସମାପ୍ତ କରିଥିଲେ । ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ କିଟୋ ଏହି ଅସାଧ୍ୟ ସାଧନ କରିଥିବାରୁ ଧଉଳି ପାହାଡ଼ ପ୍ରତି ସମଗ୍ର ଜଗତର ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଏଥିପାଇଁ କିଟୋ ଧନ୍ୟବାଦାର୍ହ । ତାଙ୍କ ଉଚ୍ଚ ଆଦର୍ଶରୁ ବର୍ତ୍ତମାନ ଯୁଗର ପ୍ରତ୍ନତତ୍ତ୍ୱ ଅନୁସନ୍ଧିତ୍ସୁମାନେ ପ୍ରେରଣା ଲାଭ କରିବା

---

Calcutta reporting the discovery of the Dhauli Edicts of Asoka was noticed in the Proceedings of 3rd May, 1837.

In the Proceedings of the Asiatic Society of the 7th June, 1837, the following was noticed in connection with the activities of Lt Kittoe —

"Lieutenant Kittoe also forwarded copies of the principal inscription of the Old Lat character at Aswasthama near Dhoulee in Orissa with short account of the caves and temples discovered there by himself and a map of the place"

ଆଶାରେ ତାଙ୍କ ଦ୍ୱାରା ପ୍ରଦତ୍ତ ଇଂରାଜୀ ବିବରଣର ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା —

(ଏହି ଅନୁବାଦରେ କେବଳ 'ମୁଁ' ପ୍ରଥମ ପୁରୁଷ ସ୍ଥାନରେ ତୃତୀୟ ପୁରୁଷ 'ସେ' ବ୍ୟବହୃତ ହୋଇଅଛି) । "୧୮୩୮ ମାର୍ଚ୍ଚ ମାସ ୯ ତାରିଖ ଅପରବେଳା କଟକ ଭୁବନେଶ୍ୱର ପରିଦର୍ଶନ କରୁଥିବା ସମୟରେ ବର୍ଷା ଆରମ୍ଭ ହେଲା । ତଥାପି ସେ ଛତା ଧରି ଓ ପହରା ଚଳାଇ ଲିଙ୍ଗରାଜ ମନ୍ଦିର, ବିନ୍ଦୁସାଗର ଓ ତା' ପାଖେ ଥିବା ମନ୍ଦିର ଗୁଡ଼ିକର ଚିତ୍ର ଅଙ୍କନ କରିଥିଲେ । ବର୍ଷା ହେଉଥିବା ସତ୍ତ୍ୱେ ସେ ବିଶ୍ରାମ ନ ନେଇ ସନ୍ଧ୍ୟା ସମୟରେ କଟକ ଅଭିମୁଖରେ ଯାତ୍ରା କଲେ । ସାରା ରାତି ଝଡ଼ ଓ ବର୍ଷା ଲାଗିରହିଲେ ମଧ୍ୟ ସେ ବାଟରେ ନ ରହି ପରଦିନ ସକାଳ ୧୦ଟାରେ କଟକରେ ପହଞ୍ଚିଲେ । ଖରାପ ବାଟରେ ସବାରି ଆପଟିଆମାନଙ୍କ ବାରମ୍ବାର ଗୋଡ଼ ଖସିବାରୁ ସବାରି ଓଲଟି ହୋଇଯାଉଥିଲା । ତେଣୁ ସବାରି ଭିତରେ ତାଙ୍କ ଦେହ ମଧ୍ୟ ଉପରକୁ ଥରେ ଏପଟ ସେପଟ ବାଡ଼େଇ ହୋଇଯାଉଥିଲା । କଟକ ମୁକାମରେ ପହଞ୍ଚି ଡାକ ଖୋଲିବା ମାତ୍ରେ ଏସିଆଟିକ ସୋସାଇଟିର ସଂପାଦକ ପ୍ରିନ୍‌ସେପ୍ ସାହେବଙ୍କ ପତ୍ର ତାଙ୍କର ହସ୍ତଗତ ହେଲା । ଏଥିରେ 'ଧଉଳୀ' ଓ ଗିର୍ଣ୍ଣାର' ପାହାଡ଼ରେ ଲିଖିତ ଅଶୋକଙ୍କ ଅନୁଶାସନରେ ଗ୍ରୀକ୍ ରାଜା ଆଣ୍ଟିୟୋକସଙ୍କ ନାମ ପାଇଥିବା ସେ ଜଣାଇଥିଲେ ଏବଂ ତାଙ୍କ ଦ୍ୱାରା ପୂର୍ବ ବର୍ଷ (୧୮୩୭) ଗୃହୀତ ଧଉଳୀ ଅନୁଶାସନର ପ୍ରତିଲିପିର ଅକ୍ଷର ପରୀକ୍ଷା କରି ସଂଶୋଧନ କରିବା ନିମିତ୍ତ ତାଙ୍କୁ ପୁନର୍ବାର ଧଉଳୀ ପାହାଡ଼କୁ ଯିବାକୁ ଅନୁରୋଧ କରିଥିଲେ ।

ତହିଁ ପାଇଁ ସେ ୧୦ ତାରିଖ ସନ୍ଧ୍ୟା ୬ଘଟିକାରେ ଧଉଳୀ ଅଭି-ମୁଖରେ ଯାତ୍ରା କଲେ । ରାତି ପାହିଲା ପୂର୍ବରୁ ସେଠାରେ ପହଞ୍ଚିଥିଲେ ମଧ୍ୟ ପୂର୍ବବର୍ଷ ସେ ନ ମାରି ଛାଡ଼ିଦେଇଥିବା ଭାଲୁ ଛୁଆ ଦୁଇଟି ବଡ଼ ହୋଇ ଉପଦ୍ରବ କରୁଥିବାର ଶୁଣି ସୂର୍ଯ୍ୟୋଦୟ ପରେ ଅଶ୍ୱାରୋହୀମାନ

ପାହାଡ଼ ପାଖକୁ ଗଲେ । ସିଡ଼ି ବା ଘଡ଼ ଅଭାବରେ ସେ ଦୁଇଆଡ଼କୁ ଶାଖା ମେଲାଇଥିବା ଦୁଇଟି ମୋଟା ଡାଳ କଟାଇ ଆଣି ସେ ଦୁଇଟିକୁ ପାହାଡ଼ ଦେହକୁ ଆଉଜାଇ ଦେଲେ । ଦୋକେନଆ ଜାଗରେ ଚୋଡ଼ ଥୋଇ ସେ ଉପରକୁ ଉଠି ଅକ୍ଷର ଗୁଡ଼ିକ ନିରୀକ୍ଷଣ କଲେ ।

ସାଙ୍ଗରେ ଥିବା ଜଣେ ମୂଲିଆ ଦୁଇ ହାତରେ ଦୁଇ ଡାଳକୁ ଧରିଥାଏ । କଟୋ ତନ୍ମୟ ହୋଇ କାମରେ ଲାଗିଥିବା ସମୟରେ ମୂଲିଆଟି ଢୁଲାଇ ପଡ଼ିଲା । ମୂଲିଆ ହାତ ଛାଡ଼ିଦେବା ଫଳରେ ଡାଳ ଦୁଇଟି ଦୁଇପଟକୁ ଘୁଞ୍ଚିଯିବାରୁ କଟୋଙ୍କ ଗୋଡ଼ ଖସିଯାଇ ସେ ପାହାଡ଼ ତଳକୁ ଲେଉଟି ପଡ଼ିଲେ । କିନ୍ତୁ ସୌଭାଗ୍ୟକୁ ସେ ଭୂଇଁ ଉପରେ ଦୁଇ ହାତରେ ଜୋରରେ ଭରା ଦେଇଦେବାରୁ ତାଙ୍କର ମୁଣ୍ଡ ପିଚି ହୋଇନାହିଁ । କିନ୍ତୁ ତାଙ୍କ ଦେହସାକ ଖଣ୍ଡିଆ ହୋଇଗଲା ଓ ବଡ଼ ବାଧା ଲାଗିଲା । ଏହା ପରେ ସେ ଅଳ୍ପ ସମୟ ବିଶ୍ରାମ ନେଇ ପୁଣି କାମରେ ଲାଗିଗଲେ ଓ ସଂଶୋଧନ କାର୍ଯ୍ୟ ଶେଷକରି ସେ ସ୍ଥାନ ତ୍ୟାଗ କଲେ ।

ଆହତ ହୋଇ ମଧ୍ୟ ସେ ଉତ୍ତର ତରଫରେ ଥିବା ବଡ଼ ପାହାଡ଼ ଉପରେ ଚଢ଼ି ସେଠାରେ ଥିବା ସୁଡ଼ଙ୍ଗ ପରି ଗୁମ୍ଫାର ଗୁମ୍ଫା ସମ୍ପର୍କରେ ଜାଣିବା ପାଇଁ ତା' ଭିତରେ ପଶିଲେ । ଘୋର ଅନ୍ଧକାରରେ ହରଣ୍ଡି ହରଣ୍ଡି ସେ ୨୦।୩୦ ଗଜ ଯାଏଁ ଭିତରକୁ ପଶିଗଲେ । କିନ୍ତୁ ଅନ୍ଧାରୁଆ କନ୍ଦର ମଧ୍ୟରେ ଥିବା ଚେମଣି ଚଢ଼େଇ ସବୁ ଉଡ଼ିବାରୁ ଓ ସେଗୁଡ଼ିକର ମଳ ଗଦାରୁ ବାହାରୁଥିବା ଦୁର୍ଗନ୍ଧରେ ନାକ ଫାଟି-ଯିବାରୁ ସେ ଅଧିକ ଦୂର ଅଗ୍ରସର ନ ହୋଇ ପଦାକୁ ଚାଲିଆସିଲେ । ବାହାରକୁ ଆସି ସେ କେତୋଟି ଚେମେଣି ଧରିନେଇଥିଲେ । ଧଉଳି ଯାତ୍ରାରେ ଏତେ କଷ୍ଟ ପାଇଲେ ମଧ୍ୟ ନିଜର ଲକ୍ଷ୍ୟ ସିଦ୍ଧ ହୋଇଥିବାରୁ ସେ ସନ୍ତୁଷ୍ଟ ଚିତ୍ତରେ ଫେରି ସନ୍ଧ୍ୟା ୭ଟା ବେଳକୁ କଟକରେ ପହଞ୍ଚିଲେ । (୨)

(୨) J. A. S. Bengal, 1837, Vol. VII.

## ପ୍ରିନ୍‌ସେପଙ୍କ ପରବର୍ତ୍ତୀ ଆଲୋଚକଗଣ—

ପ୍ରିନ୍‌ସେପ ସାହେବଙ୍କ ପାଠୋଦ୍ଧାର ପରେ ସଂସ୍କୃତ ସାହିତ୍ୟରେ ପ୍ରଗାଢ଼ ପାଣ୍ଡିତ୍ୟ ଅର୍ଜନ କରିଥିବା Wilson ଏହାର ଏକ ଅନୁବାଦ ପ୍ରକାଶ କରିଥିଲେ । ଉଭୟ ପ୍ରିନ୍‌ସେପ୍ ଓ ଉଇଲସନ୍‌ଙ୍କ ଅନୁବାଦ ତୁଳନାତ୍ମକ ଆଲୋଚନା ପାଇଁ ପ୍ରସିଦ୍ଧ ଐତିହାସିକ ରାଜା ରାଜେନ୍ଦ୍ରଲାଲ ମିତ୍ରଙ୍କ ପୁସ୍ତକରେ ସନ୍ନିବିଷ୍ଟ ହୋଇଅଛି । (୩) 'ବରନୋଫ' ନାମକ ଅନ୍ୟ ଜଣେ ପାଶ୍ଚାତ୍ୟ ପଣ୍ଡିତ ଅଶୋକାନୁଶାସନ ସମୂହ ସମ୍ବନ୍ଧରେ ମଧ୍ୟ ଆଲୋଚନା କରିଥିଲେ । ଗତ ଶତାବ୍ଦୀର ଶ୍ରେଷ୍ଠ ପ୍ରତ୍ନତତ୍ତ୍ୱ ଗବେଷକ ଆଲେକ୍‌ଜାଣ୍ଡର କନିଙ୍ଗହାମ, ପ୍ରିନ୍‌ସେପ୍, ଉଇଲସନ ଓ 'ବରନୋଫ' ପଣ୍ଡିତ ଦ୍ୱୟଙ୍କ ଅନୁବାଦକୁ ଭିତ୍ତିକରି ୧୮୭୯ରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ସ୍ୱ ଗ୍ରନ୍ଥରେ ପ୍ରକାଶ କରିଥିଲେ । (୪)

ସ୍ୱତନ୍ତ୍ର କଳିଙ୍ଗାନୁଶାସନ ଦୁଇଟିର ସଂଶୋଧିତ ଅନୁବାଦ ବରନୋଫ (Burnouf) ଓ କର୍ଣ୍ଣ (Kern) ପ୍ରକାଶ କରିଥିଲେ । (୫) ବର୍ଜେସ୍ (Burgess)ଙ୍କ ଦ୍ୱାରା ପ୍ରସ୍ତୁତ ଛାପ ପାଠକରି ଫରାସୀ ପଣ୍ଡିତ Senart ମଧ୍ୟ ଏ ସମ୍ପର୍କରେ ଆଲୋଚନା କରିଥିଲେ । (୬) ବୁହ୍‌ଲର

---

(୩) 'Antiquities of Orissa', Vol. II,

(୪) Corpus Inscriptionum Indicarum, Vol. I, 'Inscriptions of Asoka' by A. Cunningham. ଏହି ମୂଲ୍ୟବାନ ଗ୍ରନ୍ଥ ଦୁର୍ଲ୍ଲଭ ହେବାରୁ ୧୯୬୧ରେ ବାରଣସୀର 'Indological Book House'ଙ୍କ ଦ୍ୱାରା ପରିମାର୍ଜିତ ହୋଇ ମୁଦ୍ରିତ ହୋଇଅଛି ।

(୫) କର୍ଣ୍ଣଙ୍କ ଅନୁବାଦ J. R. A. S. Vol. XII, 1880, p. 379-394.

(୬) Indian Antiquary.

(Buhler) ନାମକ ପ୍ରସିଦ୍ଧ ଜର୍ମାନ ପଣ୍ଡିତ ଜର୍ମାନ ଓ ଇଂରେଜ ଉଭୟ ଭାଷାରେ ଧଉଳୀ ଅନୁଶାସନ ସମ୍ବନ୍ଧରେ ଆଲୋକପାତ କରି-ଥିଲେ । (୭) କେନ୍ଦ୍ର ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇ ହୁଲଜ୍ ନାମକ ଜର୍ମାନ୍ ପ୍ରତ୍ନତତ୍ତ୍ୱବିତ୍ ଅଶୋକ ଅନୁଶାସନ ସମୂହର ମୂଳ ଓ ଅନୁବାଦ ୧୯୨୫ରେ ନିଜ ଦ୍ୱାରା ସଂପାଦିତ ବୃହତ୍ ପୁସ୍ତକରେ ପ୍ରକାଶ କରିଥିଲେ । (୮) ଏ. ସି. ଉଲନର ନାମକ ପାଶ୍ଚାତ୍ୟ ଗବେଷକ ଦୁଇଟି କ୍ଷୁଦ୍ର ପୁସ୍ତକରେ ଅଶୋକ ଅନୁଶାସନ ଓ ତତ୍‌ସଂପର୍କରେ ଟିପ୍ପଣୀ ପ୍ରକାଶ କରିଥିଲେ । (୯)

ଅଶୋକ ଓ ତାଙ୍କର ଅନୁଶାସନ ସମୂହ ସମ୍ବନ୍ଧରେ ଆଲୋଚନା କରିଥିବା ଭାରତୀୟ ମନୀଷୀମାନଙ୍କ ମଧ୍ୟରେ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ନାମ ଉଲ୍ଲେଖଯୋଗ୍ୟ— ପାଟଣାର ଅଧ୍ୟାପକ ସ୍ୱର୍ଗତଃ ମହାମହୋପାଧ୍ୟାୟ ପଣ୍ଡିତ ରାମାବତାର ଶର୍ମା ସୁବିସ୍ତୃତ ମୁଖବନ୍ଧ, ପାଠଭେଦ, ପାଦଟୀକା, ଇଂରେଜୀ ଓ ସଂସ୍କୃତ ଅନୁବାଦ ସହ ଅଶୋକ ଅନୁଶାସନ ସମୂହ ସ୍ୱତନ୍ତ୍ରରେ ପ୍ରକାଶ କରିଥିଲେ । (୧୦) ପ୍ରସିଦ୍ଧ ଐତିହାସିକ ସ୍ୱର୍ଗତଃ ଦେବଦତ୍ତ ରାମକୃଷ୍ଣ ଭଣ୍ଡାରକରଙ୍କ ଦ୍ୱାରା ଇଂରେଜୀ ଭାଷାରେ ଲିଖିତ 'ଅଶୋକ' (୧୧) ପୁସ୍ତକ ଓ ସ୍ୱର୍ଗତଃ ଅଧ୍ୟାପକ ରାଧାକୁମୁଦ ମୁଖାର୍ଜୀ କୃତ 'ଅଶୋକ' (୧୨) ଗ୍ରନ୍ଥରେ 'ଧଉଳୀ ଅନୁଶାସନ' ସମ୍ପୂର୍ଣ୍ଣ ଆଲୋଚିତ

---

(୭) A. S. S. I., I. p. 114, ff

(୮) 'Corpus Inscriptionum Indicarum', 'Vol. I, by E Hultzsch, 1925.

(୯) 'Asoka, text and glossory' parts I & II, by A. C. Woolner, 1924.

(୧୦) 'ପ୍ରିୟଦର୍ଶୀ ପ୍ରଶସ୍ତୟଃ'

(୧୧) କଲିକତା ବିଶ୍ୱବିଦ୍ୟାଳୟ ଦ୍ୱାରା ୧୯୨୫ରେ ପ୍ରକାଶିତ ।

(୧୨) 'Asoka' by Prof. R. K. Mookerji.

ହୋଇଅଛି । ପ୍ରସିଦ୍ଧ ଲିପିତତ୍ତ୍ୱବିତ୍ ଡକ୍ଟର ଶ୍ରୀ ଦୀନେଶଚନ୍ଦ୍ର ସର-କାରଙ୍କ ଦ୍ୱାରା ଇଂରେଜୀରେ ସଂକଳିତ ଭାରତର 'ବଶିଷ୍ଟ ଲେଖମାଳା', (୧୩) ଓ କଲିକତା ବିଶ୍ୱବିଦ୍ୟାଳୟର ସ୍ୱନାମଧନ୍ୟ ପାଲି ଅଧ୍ୟାପକ ୰ ବେଣୀମାଧବ ବରୁଆଙ୍କ ରଚିତ ଇଂରେଜୀ ପୁସ୍ତକ 'ଅଶୋକ ଓ ତାଙ୍କ ଲେଖମାଳା' (୧୪) ଗ୍ରନ୍ଥଦ୍ୱୟ 'ଧଉଳୀ ଅନୁଶାସନ' ସଂପର୍କରେ ଆଲୋଚନା କରିବା ପାଇଁ ଅତ୍ୟନ୍ତ ଉପାଦେୟ । ଏ ସମସ୍ତ ଗ୍ରନ୍ଥ ମଧ୍ୟରୁ ମହାମହୋପାଧ୍ୟାୟ ଶର୍ମାଙ୍କ 'ସଂସ୍କୃତାନୁବାଦ' ଓ ଅଧ୍ୟାପକ ବରୁଆଙ୍କ 'ମୂଳ ପାଠ' ମୋ ଦ୍ୱାରା ସର୍ବୋତ୍କୃଷ୍ଟ ବିବେଚିତ ହେବାରୁ ଉକ୍ତ ଗ୍ରନ୍ଥରେ ସନ୍ନିବିଷ୍ଟ ହୋଇଅଛି । (୧୫)

## ଧଉଳୀ ଅନୁଶାସନର ଅବସ୍ଥିତି –

'ଅଶ୍ୱତ୍ଥାମା' ନାମରେ ବର୍ତ୍ତମାନ ଲୋକମୁଖରେ ପ୍ରସିଦ୍ଧି ଲାଭ କରିଥିବା ହସ୍ତୀମୂର୍ତ୍ତିର ନିମ୍ନଭାଗରେ ପ୍ରାୟ ୧୫ ଫୁଟ ଲମ୍ବ ଓ ୧୦ ଫୁଟ ପ୍ରସ୍ଥ ବିଶିଷ୍ଟ କୂର୍ମପୃଷ୍ଠାକାର ଈଷତ୍ ସମତଳ ଶୈଳଖଣ୍ଡରେ ଅଶୋକ ଅନୁଶାସନ ଗୁଡ଼ିକ ଖୋଦିତ ହୋଇଅଛି । ଖୋଦନର ସୁବିଧା ପାଇଁ ଏହାକୁ ତିନୋଟି କ୍ଷେତ୍ରରେ ବିଭକ୍ତ କରାଯାଇଅଛି ଏବଂ ପ୍ରତି ଅନୁ-ଶାସନର ତଳକୁ ସମାପ୍ତି ସୂଚକ ଏକ କ୍ଷୁଦ୍ର ରେଖା ଦେଖାଯାଏ ।

---

(୧୩) 'Select Inscriptions of India', Vol. I, Published by the Calcutta University, 1942

(୧୪) ୧୯୪୬ରେ ପ୍ରକାଶିତ 'Asoka and his inscriptions', Parts I & II.

(୧୫) ଓଡ଼ିଆ ଭାଷାରେ ସର୍ବପ୍ରଥମେ ମୋ ଦ୍ୱାରା ୧୯୩୫ ମସିହାରେ 'ଅଶୋକ ପ୍ରଶସ୍ତି ବା ଧଉଳୀ ଅନୁଶାସନ' ଗୁଡ଼ିକର ମୂଳ, ସଂସ୍କୃତାନୁବାଦ ଓ ଓଡ଼ିଆ ଅନୁବାଦ ସହ ଏକ ଦୀର୍ଘ ପ୍ରବନ୍ଧ 'ସହକାର', ପଞ୍ଚଦଶ ଭାଗ, ୮ମ, ୯ମ, ୧୦ମ ଓ ୧୧ଶ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ମହାମହୋ-ପାଧ୍ୟାୟ ଶର୍ମାଙ୍କ ପୁସ୍ତକ ଏହାର ପ୍ରଧାନ ଅବଲମ୍ବନ ଥିଲା ।

| | | | | |
|---|---|---|---|---|
| ମଧ୍ୟମ କ୍ଷେତ୍ର— | ପ୍ରଥମ ଅନୁଶାସନ | | ୪ ଧାଡ଼ି | ଉପର ଅଂଶ ନଷ୍ଟ ହୋଇଯାଇଛି |
| ,, | ଦ୍ୱିତୀୟ | ,, | ୪ ଧାଡ଼ି | |
| ,, | ତୃତୀୟ | ,, | ୩ ଧାଡ଼ି | |
| ,, | ଚତୁର୍ଥ | ,, | ୮ ଧାଡ଼ି | |
| ,, | ପଞ୍ଚମ | ,, | ୮ ଧାଡ଼ି | |
| ,, | ଷଷ୍ଠ | ,, | ୭ ଧାଡ଼ି | |
| ଦକ୍ଷିଣ କ୍ଷେତ୍ର— | ସପ୍ତମ ଅନୁଶାସନ | | ୨ ଧାଡ଼ି | |
| | ଅଷ୍ଟମ | ,, | ୩ ଧାଡ଼ି | |
| | ନବମ | ,, | ୭ ଧାଡ଼ି | ବହୁ ସ୍ଥାନରେ ଭଗ୍ନ । |
| | ଦଶମ | ,, | ୪ ଧାଡ଼ି | ,, |
| | ଚତୁର୍ଦ୍ଦଶ | ,, | ୩ ଧାଡ଼ି | ମଝିରେ ଓ ଦକ୍ଷିଣ ପାଖେ ବହୁ ଅକ୍ଷର ନଷ୍ଟ । |

**ପ୍ରଥମ (ଉତ୍ତର) କ୍ଷେତ୍ର—** ଏଥିରେ ୨୭ ଧାଡ଼ି ବିଶିଷ୍ଟ ଯାର୍ଦ୍ଧ ପ୍ରଥମ କଳିଙ୍ଗ ଅନୁଶାସନ ଉତ୍କୀର୍ଣ୍ଣ ହୋଇଅଛି । ଅକ୍ଷର ଗୁଡ଼ିକ ଅପେକ୍ଷାକୃତ ଭଲ ଅବସ୍ଥାରେ ଅଛି । ଏହି ତିନୋଟି କ୍ଷେତ୍ରର ତଳକୁ ସରଳ ରେଖାଙ୍କିତ ଏକ କ୍ଷେତ୍ର ମଧ୍ୟରେ ୧୧ ଧାଡ଼ି ବିଶିଷ୍ଟ ଦ୍ୱିତୀୟ କଳିଙ୍ଗାନୁଶାସନ ଉତ୍କୀର୍ଣ୍ଣ ହୋଇଅଛି । ଏହାର ପ୍ରଥମ ତିନଧାଡ଼ିରେ ବହୁତ ଅକ୍ଷର ନଷ୍ଟ ହୋଇଯାଇଅଛି ।

ସମଗ୍ର ଶୈଳଖଣ୍ଡକୁ ସୂର୍ଯ୍ୟାତପ, ବର୍ଷାସାର, ଶିଶିରପାତ ଓ ପବନାଘାତରୁ ରକ୍ଷା କରିବା ପାଇଁ ଏହା ସମ୍ମୁଖରେ ଏକ କାଷ୍ଠମଣ୍ଡପ ତିଆରି ହୋଇଥିବା, ଏହା ଗୃହପଟେ ଖୋଦିତ ଚିହ୍ନରୁ ଜଣାଯାଏ । କିନ୍ତୁ କାଳକ୍ରମେ ଏହା ନଷ୍ଟ ହୋଇଯିବାରୁ ବହୁତ ଅକ୍ଷର ଖରା କାକର ପାଣି ପବନ ଖାଇ କ୍ରମଶଃ ନଷ୍ଟ ଓ ଦୁଷ୍ପାଠ୍ୟ ହୋଇଗଲା । କେନ୍ଦ୍ର ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଓଡ଼ିଶାର ଏହି ପ୍ରାଚୀନତମ ଶିଳାଲେଖର ସୁରକ୍ଷା ପାଇଁ ଏହା ଆଗରେ ଗୋଟିଏ ଶିଳାମଣ୍ଡପ ନିର୍ମାଣ କରିଛନ୍ତି ।

## ଧଉଳୀସ୍ଥ ଶୈଳାନୁଶାସନ ସମୂହର ଖୋଦନ ସମୟ—

ଧଉଳୀରେ ଥିବା ଏକାଦଶ ଶୈଳାନୁଶାସନ ଓ ଦୁଇଟି କଳିଙ୍ଗାନୁଶାସନ ଖୋଦନ ସମୟରେ ଉତ୍କୀର୍ଣ୍ଣ ହୋଇଥିବା 'ଧର୍ମଲିପି' ପାଠରୁ ଜଣାଯାଏ । ତାଙ୍କର ଚତୁର୍ଥ ଶୈଳାନୁଶାସନରୁ ଜଣାଯାଏ ଯେ, ତାଙ୍କ ରାଜ୍ୟାଭିଷେକର ଦ୍ୱାଦଶ ବର୍ଷରେ ସାମ୍ରାଜ୍ୟର ସର୍ବତ୍ର 'ଧର୍ମଲିପି' ଖୋଦନ ଆରମ୍ଭ ହୋଇଥିଲା । ଯଥା— "ଦ୍ୱାଦଶବର୍ଷାଭିଷିକ୍ତେନ ଦେବାନାଂପ୍ରିୟେଣ ପ୍ରିୟଦର୍ଶିନା ରାଜ୍ଞା ଲେଖିତମ୍" ।

ତାଙ୍କର ପଞ୍ଚମ ଶୈଳାନୁଶାସନରେ ରାଜ୍ୟାଭିଷେକର ତ୍ରୟୋଦଶ ବର୍ଷରେ 'ଧର୍ମମହାମାତ୍ର' ସଂଜ୍ଞକ ନୂତନ କର୍ମଚାରୀ ଗୋଷ୍ଠୀର ନିଯୁକ୍ତି ବିଷୟ ବର୍ଣ୍ଣିତ ହୋଇଛି । ଯଥା— 'ତ୍ରୟୋଦଶାଭିଷିକ୍ତେନମୟା ଧର୍ମମହାମାତ୍ରାଃ କୃତାସ୍ତେ ସର୍ବପାଷଣ୍ଡେଷୁ ବ୍ୟାପୃତାଃ ।' ତେଣୁ ଏହା ଉକ୍ତ ବର୍ଷ ଖୋଦିତ ହୋଇଥିଲା । ଏହାର ଶେଷରେ ସେ ଉକ୍ତ ଧର୍ମଲିପିର ଚିରସ୍ଥାୟିତ୍ୱ କାମନା କରି ପ୍ରଜାମାନଙ୍କୁ ତଦନୁଯାୟୀ କାର୍ଯ୍ୟ କରିବା ପାଇଁ ଅନୁରୋଧ କରିଛନ୍ତି । ଯଥା— "ଏତସ୍ମୈ ଅର୍ଥାୟ ଇୟଂ ଧର୍ମଲିପି ଲେଖିତା ଚିରସ୍ଥିତିକା ଭବତୁ । ତଥା ମେ ପ୍ରଜା ଅନୁବର୍ତ୍ତନ୍ତାମ୍ ।"

ତେଣୁ ପ୍ରଥମ ପାଞ୍ଚଟି ଅନୁଶାସନ ସର୍ବପ୍ରଥମେ ରାଜତ୍ୱର ଦ୍ୱାଦଶ ଓ ତ୍ରୟୋଦଶ ବର୍ଷ ବା ଖ୍ରୀ: ପୂ: ୨୫୮ ଓ ୨୫୭ ଅବ୍ଦରେ ଉତ୍କୀର୍ଣ୍ଣ ହୋଇଥିଲା । ଏହାର କିଛିଦିନ ପରେ ଉତ୍କୀର୍ଣ୍ଣ ଷଷ୍ଠ ଶୈଳାନୁଶାସନ ଶେଷରେ ସେ ଧର୍ମଲିପିର ସ୍ଥାୟିତ୍ୱ କାମନା ପୂର୍ବକ ନିଜର ପୁତ୍ର ପୌତ୍ରମାନଙ୍କୁ ତାଙ୍କ ପରି ପରିଶ୍ରମରେ ବ୍ରତୀ ହେବାପାଇଁ ଉପଦେଶ ଦେଇଛନ୍ତି । ଯଥା— "ଇୟଂ ଧର୍ମଲିପିର୍ଲେଖିତା ଚିରସ୍ଥିତିକା ଭବତୁ । ତଥା ଚ ମେ ପୁତ୍ରାଃ ପ୍ରପୌତ୍ରାଃ ପରାକ୍ରମନ୍ତୁ" । ପରବର୍ତ୍ତୀ ସପ୍ତମ, ଅଷ୍ଟମ ନବମ ଓ ଦଶମ ଶୈଳାନୁଶାସନ ଚାରୋଟି ଏକସମୟରେ ଉତ୍କୀର୍ଣ୍ଣ ହୋଇଥିଲା ।

ତାଙ୍କର ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଶୈଳାନୁଶାସନସମୂହ ଧଉଳୀ ଓ ଯୌଗଡ଼ ପର୍ବତ ବ୍ୟତୀତ ଅନ୍ୟ ପାଞ୍ଚଟି ସୀମାନ୍ତବର୍ତ୍ତୀ ରାଜ୍ୟର ପର୍ବତରେ ଲିପିବଦ୍ଧ ହୋଇଅଛି । ତ୍ରୟୋଦଶ ଅନୁଶାସନରେ ବର୍ଣ୍ଣିତ କଳିଙ୍ଗ ଯୁଦ୍ଧ ବୃତ୍ତାନ୍ତ ସ୍ୱାଧୀନତା ହରାଇ ସର୍ବଦା ଅସନ୍ତୁଷ୍ଟ ଥିବା କଳିଙ୍ଗବାସୀଙ୍କୁ ଉତ୍ତ୍ୟକ୍ତ କରିବା ଆଶଙ୍କାରେ କଳିଙ୍ଗରେ ପ୍ରଚାରିତ ନ ହୋଇ ଭାରତର ଅନ୍ୟତ୍ର ପ୍ରଚାରିତ ହୋଇଛି ।

ସାତଟିଯାକ ଶୈଳରେ ଖୋଦିତ ଚତୁର୍ଦ୍ଦଶ ଅନୁଶାସନଟି ଉପସଂହାର ସ୍ୱରୂପ ଥିବାରୁ ଏଥିରେ ଧର୍ମଲିପି ଗୁଡ଼ିକର ଆକାରରେ ପାର୍ଥକ୍ୟ, ଅତୀତ ଓ ଭବିଷ୍ୟତରେ ଅନେକ ଲିପିର ଖୋଦନ, ଖୋଦିତ ଧର୍ମଲିପି ସମୂହରେ ଲିପିକାର ପ୍ରମାଦ ଯୋଗୁ କେତେକ ଅସମ୍ପୂର୍ଣ୍ଣ ଭାବରେ ଖୋଦିତ ଓ କେତେକ ସନ୍ଦେହୋତ୍ପାଦକ ହୋଇଥିବାର ଉଲ୍ଲେଖ ହୋଇଅଛି । ଯଥା— "ଇଥ କିଂଚିଦସମାପ୍ତଂ ଲିଖିତମସ-ଦୃଶଂ ବା ସଂଶୟକାରଣଂ ବା ଅଲୋଚୟିତୁ ଲିପିକରାପରାଧେନ ବା" । (୧୭) ଏହା ତାଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷାନ୍ତେ ବା ଖ୍ରୀ.ପୂ: ୨୫୬ରେ ଉତ୍କୀର୍ଣ୍ଣ ହୋଇଥିବା ଅଧ୍ୟାପକ ଶ୍ରୀ ବରୁଆ ମତପ୍ରକାଶ କରିଛନ୍ତି । ଅତଏବ ତିନିବର୍ଷ ମଧ୍ୟରେ ଧଉଳୀରେ ଏକାଦଶଟି ଶୈଳାନୁଶାସନ ଖୋଦିତ ହୋଇଥିଲା ।

## କଳିଙ୍ଗାନୁଶାସନ ଦ୍ୱୟର କାଳ ନିର୍ଣ୍ଣୟ—

ଏହି ଶୈଳର ବାମପାର୍ଶ୍ୱରେ ଥିବା ଅଳ୍ପ ସ୍ଥାନରେ ଏବଂ ଏକାଦଶଟି ଧର୍ମଲିପିର ନିମ୍ନଭାଗରେ କଟାଯାଇଥିବା ଗାର ମଧ୍ୟରେ ଥିବା

---

(୧୭) କବି ଓ ଲେଖକମାନେ ଗ୍ରନ୍ଥ ଶେଷରେ ଲିପିକାର ପ୍ରମାଦ ପଠ ଦୃଷ୍ଟି ନ ଦେବାପାଇଁ ଚିରକାଳ ଏପରି ଅନୁରୋଧ କରିଆସିଛନ୍ତି—

"ଭୀମସ୍ୟାପି ରଣେ ଭଙ୍ଗଃ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧ ମଶୁଦ୍ଧଂ ସ୍ୟାତ୍ ମମ ଦୋଷଃ ନ ଦୀୟତେ ।"

"ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ । ଲେଖନକାର ଦୋଷ ନ ଧରିବ" ॥

ସ୍ଥାନରେ କଳିଙ୍ଗାନୁଶାସନ ଦ୍ୱୟ ଉତ୍କୀର୍ଣ୍ଣ ହୋଇଥିବାରୁ ଏ ଦୁଇଟି ଯେ ପରବର୍ତ୍ତୀ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏଥିରେ ଖୋଦନର ସମୟ ଲିଖିତ ହୋଇ ନ ଥିବାରୁ ଅନ୍ତର୍ନିହିତ ପ୍ରମାଣ ବଳରେ ଡକ୍ଟର ବରୁଆ ଏଗୁଡ଼ିକ ରାଜତ୍ୱର ସପ୍ତବିଂଶତି ବର୍ଷ ପରେ ଲିପିବଦ୍ଧ ହୋଇଥିବାର ସ୍ଥିର କରିଛନ୍ତି । କାରଣ ତାଙ୍କର ରାଜତ୍ୱର ସପ୍ତବିଂଶତି ବର୍ଷରେ ଖୋଦିତ ସପ୍ତମ ସ୍ତମ୍ଭଲେଖରେ ପ୍ରଥମେ କୁମାରମାନଙ୍କ ଦାନ ବିଷୟର ଉଲ୍ଲେଖ ଦେଖାଯାଏ । ଦ୍ୱିଖଣ୍ଡ କଳିଙ୍ଗାନୁଶାସନ ଲେଖା ହେଲାବେଳକୁ ତୋଷଳୀ ତକ୍ଷଶୀଳା ଓ ଉଜ୍ଜୟିନୀରେ ପ୍ରାପ୍ତବୟସ୍କ କୁମାରମାନଙ୍କ ହସ୍ତରେ ଶାସନଭାର ନ୍ୟସ୍ତ ହୋଇଥିବାରୁ ଏହାଦ୍ୱାରା ଅଶୋକଙ୍କ ପ୍ରୌଢ଼ାବସ୍ଥା ସୂଚିତ ହେଉଅଛି । ତେଣୁ ନିର୍ଦ୍ଦିଷ୍ଟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ଡକ୍ଟର ବରୁଆଙ୍କ ମତ ଗ୍ରହଣୀୟ । ତଦନୁଯାୟୀ ଅନୁମାନିକ ଖ୍ରୀ: ପୂ: ୨୪୩ ଅବ୍ଦରେ କଳିଙ୍ଗାନୁଶାସନ ଦ୍ୱୟ ଉତ୍କୀର୍ଣ୍ଣ ହୋଇଥିଲା ।

"For the first time in *P: E:* VII engraved in the 27th year of *Abhisheka*, we read of charities of his sons who typified the princes of the blood *devi-kumālas*). The separate Rock Edicts, on the other hand, represent three of the *Kumāras* as his Viceroys, stationed at Tosali, Takhasilā and Ujeni. Presumably these Kumāra Viceroys were appointed from among his grown up sons."

× × ×

"These considerations can not but lead us to the conclusion that the two separate Rock Edicts were promulgated here later than P: E: VII. There is, however, no means as yet to ascertain the exact date of their engraving.' (୧୭)

---

(୧୭) Barua — 'Asoka', Part II, p. 18.

ଏହି ଶୈଳାନୁଶାସନ ସମୂହ ଓ କଳିଙ୍ଗାନୁଶାସନ ଦ୍ୱୟର ବିଶେଷ ଐତିହାସିକ ଗୁରୁତ୍ୱ ଥିବାରୁ ସେଗୁଡ଼ିକ ସମ୍ବନ୍ଧରେ ବିଶଦ ଆଲୋଚନା କରାଗଲା ।

## ପ୍ରଥମ ଅନୁଶାସନ —

ପ୍ରଥମ ଅନୁଶାସନରେ ବୌଦ୍ଧଧର୍ମର ମୁଖ୍ୟ ତତ୍ତ୍ୱ 'ଅହିଂସା ନୀତି'ର ପ୍ରଚାର ପାଇଁ ଯଜ୍ଞ ପ୍ରଭୃତି କାର୍ଯ୍ୟରେ ଜୀବବଧ, ମାଦକଦ୍ରବ୍ୟ ସେବନ, ମତ୍ସ୍ୟମାଂସାଦି ଭକ୍ଷଣ, ଉନ୍ମତ୍ତତା, ଦ୍ୱନ୍ଦ୍ୱ ଓ ବ୍ୟଭିଚାରକୁ ପ୍ରଶ୍ରୟ ଦେଉଥିବା 'ସମାଜ' (ମେଳା, ମହୋତ୍ସବ)ର ଅନୁଷ୍ଠାନ ନିଷିଦ୍ଧ ହୋଇଥିଲା ।

ବୈଦିକ ଯୁଗରୁ ଯଜ୍ଞ କାର୍ଯ୍ୟରେ ଓ ଦେବତାଙ୍କ ସମ୍ମୁଖରେ ସମର୍ପଣ (ବଳିଦାନ) ଉଦ୍ଦେଶ୍ୟରେ ଜୀବବଧ ବ୍ରାହ୍ମଣ୍ୟଶାସ୍ତ୍ରସମ୍ମତ ଥିଲା । ମେଳା, ମହୋତ୍ସବ ସମୟରେ ମଧ୍ୟ ବହୁ ଜୀବକୁ ହତ୍ୟା କରାଯାଉଥିଲା । ରାଜା, ରାଜପୁରୁଷ ଓ ଧନାଢ୍ୟ ବ୍ୟକ୍ତିମାନଙ୍କ ବ୍ୟଞ୍ଜନ ନିମିତ୍ତ ବର୍ଷର ଅଧିକାଂଶ ଦିନ ସହସ୍ର ସହସ୍ର ଜୀବ ନିହତ ହେଉଥିଲେ । ଉକ୍ତ ଅନୁଶାସନରୁ ଜଣାଯାଏ ଯେ, ଅଶୋକ ବୌଦ୍ଧଧର୍ମ ଗ୍ରହଣ କରିବା ପୂର୍ବରୁ ତାଙ୍କର ରନ୍ଧନ ଗୃହରେ ବ୍ୟଞ୍ଜନ ପ୍ରସ୍ତୁତ କରିବା ପାଇଁ ସହସ୍ର ସହସ୍ର ଜୀବଙ୍କୁ ହତ୍ୟା କରାଯାଉଥିଲା । କିନ୍ତୁ ସେ ବୌଦ୍ଧଧର୍ମର ଅହିଂସା ନୀତିରେ ଦୀକ୍ଷିତ ହୋଇ ଏହି ଧର୍ମଲିପି ପ୍ରଚାର କରିବା ସମୟରେ ତାହା ବନ୍ଦ କରାଯାଇ ତାଙ୍କ ପାକଶାଳାରେ ତିନୋଟି ମାତ୍ର ଜୀବଙ୍କୁ (ଦୁଇଟି ମୟୂର ଓ ଗୋଟିଏ ମୃଗ) ବଧ କରାଯାଉଥିଲା । ଭବିଷ୍ୟତରେ ଏହା ମଧ୍ୟ ବନ୍ଦ କରିବା ପାଇଁ ସେ ଘୋଷଣା କରିଥିଲେ ।

ଆଦର୍ଶ ଉପଦେଶ ଠାରୁ ଅଧିକ ଫଳପ୍ରଦ (**Example is better than precept**)— ଏହି ସୂକ୍ତିର ସାର୍ଥକତା ସେ ନିଜ ଜୀବନରେ ପୂର୍ଣ୍ଣମାତ୍ରାରେ ପ୍ରତିପାଦନ କରିଥିଲେ । ଏହା ତାଙ୍କର ବୌଦ୍ଧଧର୍ମ ପ୍ରତି ପ୍ରଗାଢ଼ ଅନୁରକ୍ତି ଓ ନିଷ୍ଠାର ପରିଚୟ ଦିଏ । ଜୀବ-

ମାନଙ୍କୁ ଅନାଲମ୍ଭ (ନ ମାରିବା) ଓ ଅବିହିଂସା (କୌଣସି ପ୍ରକାର କଷ୍ଟ ନ ଦେବା) ପାଇଁ ସେ ତାଙ୍କର ଧର୍ମଲିପି ଗୁଡ଼ିକରେ ବାରମ୍ବାର ପ୍ରଚାର କରିଛନ୍ତି । ଏହା କଲେ କପରି ଐହିକ ଓ ପାରତ୍ରିକ ସୁଖ ଲାଭ ହେବ ତାହା ପୁନଃ ପୁନଃ ବୁଝାଇଛନ୍ତି । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ଅହିଂସା ନୀତିକୁ ଅଧିକ କଠୋର ଭାବରେ କାର୍ଯ୍ୟରେ ପରିଣତ କରିଥିଲେ । ରାଜ୍ୟର ସର୍ବାଞ୍ଚଳରେ ଧର୍ମମହାମାତ୍ର ନାମକ ଉଚ୍ଚ ରାଜକର୍ମଚାରୀମାନେ ରାଜାଜ୍ଞା କପରି କାର୍ଯ୍ୟରେ ପ୍ରତିପାଳିତ ହେବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ ।

ତାଙ୍କ ରାଜ୍ୟାଭିଷେକର ଷଡ଼୍‌ବିଂଶତି ବର୍ଷରେ ତାଙ୍କର ପଞ୍ଚମ ସ୍ତମ୍ଭଲେଖରେ ନିମ୍ନଲିଖିତ ୨୫ଟି ଜୀବ ଅବଧ୍ୟ ବୋଲି ଘୋଷଣା କରିଥିଲେ । ଯଥା - ଶୁଆ, ସାରୀ, ଅରୁଣ (ପାରାବତ) ଚକ୍ରବାକ (ଚକୁଆ), ହଂସ, ନାନ୍ଦୀମୁଖ, ଗେଲାଟ, ଜାତୁକା (ବାଦୁଡ଼ି) ଅମ୍ବା ପିପୀଲିକା (ରାଣୀପିମ୍ପୁଡ଼ି), ଦଣ୍ଡୀ (ମତ୍ସ୍ୟବିଶେଷ), ଅନସ୍ଥିକ ମତ୍ସ୍ୟ (ଅସ୍ଥିହୀନ ମତ୍ସ୍ୟ – ଚିଙ୍ଗୁଡ଼ି, କୋଚିଆ ପ୍ରଭୃତି), ଜୀବଂଜୀବ (ଚକୋର), ଗୋ କୁକ୍‌କୁଟକ (ପାଣି କୁକୁଡ଼ା), ଶକୁଳ (ଶେଉଳ ମାଛ), ଝିଙ୍କ, ଶଲ୍ୟ (ଝିଙ୍କ), ପର୍ଣ୍ଣଶଶ (ଗୁଣ୍ଡୁଚି ମୂଷା) ସୃମର (ମୃଗବିଶେଷ, ଷଣ୍ଡକ ଓ କପିଣ୍ଡ (ମର୍କଟ), ପୃଷତ (ମୃଗବିଶେଷ, ଶ୍ୱେତ କପୋତ ଓ ଗ୍ରାମ କପୋତ ଏବଂ ଆହାର ପାଇଁ ବ୍ୟବହୃତ ନ ଥିବା ଚତୁଷ୍ପଦ ଜୀବସମୂହ ।

ଗର୍ଭବତୀ ବା ଦୁଗ୍ଧବତୀ ଅଜକା (ମାଈ ଛେଳି) ଏଡକା (ମେଣ୍ଢୀ) ଓ ମାଈ ବରାହ ପ୍ରଭୃତି ଅବଧ୍ୟ । ସେଗୁଡ଼ିକର ଛୁଆ ସବୁ ଛଅମାସ ହେବା ପର୍ଯ୍ୟନ୍ତ ମାରିପାରିବେ ନାହିଁ, କୁକୁଡ଼ା କଟା ହେବେ ନାହିଁ, ଜୀବଯୁକ୍ତ ତୁଷା (ତଷ) ଜଳାଯିବ ନାହିଁ । ଜଙ୍ଗଲ ପୋଡ଼ିବା ଦ୍ୱାରା ଜୀବମାନେ କଷ୍ଟ ପାଆନ୍ତି ଓ ଅନେକ ଜୀବ ମରିଯାନ୍ତି; ତେଣୁ ଏହା କରିବା ନିଷିଦ୍ଧ । ଗୋଟିଏ ଜୀବ ମାରି ଅନ୍ୟ ଜୀବ ପୋଷିବ ନାହିଁ । କାର୍ତ୍ତିକ ତିନ ପୂର୍ଣ୍ଣିମା (ପ୍ରତି ଚତୁର୍ମାସ୍ୟାର ଶେଷ ପୂର୍ଣ୍ଣିମା), ପୌଷ ପୂର୍ଣ୍ଣିମା, ଚତୁର୍ଦ୍ଦଶୀ, ପଞ୍ଚଦଶୀ (ପୂର୍ଣ୍ଣିମା) ଓ ପ୍ରତିପଦ୍— ଏହି

ଅନେକଦିନ ଓ ଉପବାସ ଦିନମାନଙ୍କରେ ମାଛ ମରାହେବ ନାହିଁ ବା ବିକାଯିବ ନାହିଁ । ଏହି ଦିବସମାନଙ୍କରେ ହାତୀ ଖେଦା ହେବ ନାହିଁ, କେଉଟମାନେ ମାଛ ପ୍ରଭୃତି ମାରିବେ ନାହିଁ । କୃଷ୍ଣ ଓ ଶୁକ୍ଲପକ୍ଷର ଅଷ୍ଟମୀ, ଚତୁର୍ଦ୍ଦଶୀ, ପଞ୍ଚଦଶୀ (ପୂର୍ଣ୍ଣିମା)ରେ ତିଷ୍ୟ (ପୁଷ୍ୟା) ଓ ପୁନର୍ବସୁ ନକ୍ଷତ୍ରଯୁକ୍ତ ଦିନମାନଙ୍କରେ, ତିନି ଚାତୁର୍ମାସ୍ୟର ଶେଷ ପୂର୍ଣ୍ଣିମାରେ ଓ ପର୍ବ ଦିବସମାନଙ୍କରେ ବଳଦ ଓ ଷଣ୍ଢ ଲଗୁଯିବ ନାହିଁ । ଅଣ୍ଡିଆ ଛେଳି, ଏଡ଼କ (ମେଣ୍ଢା) ଶୂକର (ଘୁଷୁରି) ପ୍ରଭୃତି ଯେଉଁ ଜନ୍ତୁମାନେ ଲଗୁଯାନ୍ତି, ସେମାନେ ମଧ୍ୟ ଲଗୁ ହେବେ ନାହିଁ । ତିଷ୍ୟ (ପୁଷ୍ୟ) ଓ ପୁନର୍ବସୁ ନକ୍ଷତ୍ରଯୁକ୍ତ ଦିନମାନଙ୍କରେ ଘୋଡ଼ା, ଗାଈ ପ୍ରଭୃତି ଲଗୁଯିବେ ନାହିଁ ।

ଅଶୋକ ଏହି ଅନୁଶାସନ ପ୍ରଚାର ଫଳରେ ଯଜ୍ଞାଦି କାର୍ଯ୍ୟରେ ଓ ଦେବତାଙ୍କୁ ବଳି ଦେବାପାଇଁ ଜୀବବଧକୁ ଉତ୍ସାହିତ କରୁଥିବା ବ୍ରାହ୍ମଣମାନଙ୍କର ବିରାଗ ଭାଜନ ହୋଇଥିବେ । କୈବର୍ତ୍ତ ପ୍ରଭୃତି ଯେଉଁ ଜାତିର ଲୋକେ ଜୀବବଧ ଦ୍ୱାରା ଜୀବିକାର୍ଜ୍ଜନ କରୁଥିଲେ, ସେମାନଙ୍କ ପ୍ରତି ଏହି ରାଜାଦେଶ କଷ୍ଟକାରକ ହୋଇଥିବ । ମତ୍ସ୍ୟମାଂସପ୍ରିୟ ସାଧାରଣ ଲୋକେ ଏଥିରେ ଅସନ୍ତୋଷ ପ୍ରକାଶ କରିଥିବେ । କିନ୍ତୁ ଦେବପ୍ରିୟ ସେମାନଙ୍କ ରୋଷ ଓ ଅସନ୍ତୋଷ ପ୍ରତି ଭ୍ରୂକ୍ଷେପ ନ କରି ବୁଦ୍ଧଙ୍କ ଅହିଂସା ନୀତିକୁ ସମସ୍ତ ଶକ୍ତି ଓ ସାମର୍ଥ୍ୟ ସହକାରେ କାର୍ଯ୍ୟରେ ପରିଣତ କରିଥିଲେ । ସେ ଏତିକିରେ ସନ୍ତୋଷ ଲାଭ ନ କରି ଦ୍ୱିପଦ, ଚତୁଷ୍ପଦ, ପକ୍ଷୀ, ଜଳଚରପ୍ରଭୃତି ପ୍ରତ୍ୟେକ ପ୍ରକାର ଜୀବର ପ୍ରାଣରକ୍ଷା ଓ ସେମାନଙ୍କ ଅନ୍ୟାନ୍ୟ ବହୁପ୍ରକାର କଲ୍ୟାଣ ସାଧନ କରିଥିବା ତାଙ୍କର ଦ୍ୱିତୀୟ ସ୍ତମ୍ଭଲେଖରୁ ଜଣାପଡ଼େ । ସର୍ବଭୂତରେ ଏପରି ଦୟା କେବଳ ତତ୍ତ୍ୱଦର୍ଶୀ ମୁନିଋଷିମାନଙ୍କ ଠାରେ ପରିଲକ୍ଷିତ ହୁଏ । ଅଶୋକ ବିଶାଳ ସାମ୍ରାଜ୍ୟର ବହୁ ଦାୟିତ୍ୱପୂର୍ଣ୍ଣ ଶାସନ କାର୍ଯ୍ୟ ପରିଚାଳନ ଓ ଗୃହସ୍ଥାଶ୍ରମର ଘୋର ଜଞ୍ଜାଳ ମଧ୍ୟରେ କାଳଯାପନ କରି ମଧ୍ୟ ଦେବ-ସୁଲଭ ଅହିଂସା ନୀତିର ପ୍ରଚାର ଓ ପ୍ରୟୋଗ ଦ୍ୱାରା ବିଶ୍ୱବରେଣ୍ୟ ହୋଇପାରିଥିଲେ ।

ଉକ୍ତ ଅନୁଶାସନରେ ଅଶୋକ ସମସାମୟିକ ବହୁ ଦୋଷଯୁକ୍ତ ସମାଜ (ମେଳା ମହୋତ୍ସବ) ପ୍ରଭୃତିର ନିନ୍ଦାବାଦ କରି 'ଧର୍ମସମାଜ' ବା 'ସାଧୁସମାଜ'ର ଅନୁଷ୍ଠାନ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ରାମାୟଣ, ମହାଭାରତ ଓ ବିଭିନ୍ନ ପୁରାଣରେ ସେଯୁଗରେ ଅନୁଷ୍ଠିତ ସମାଜର ବିଶେଷ ବିବରଣୀ ଦିଆଯାଇଛି । ସେଥିରୁ ଜଣାଯାଏ ଯେ, ସାଧାରଣତଃ ନଦୀ କୂଳ ବା ବିସ୍ତୀର୍ଣ୍ଣ ପ୍ରାନ୍ତରରେ ନିର୍ମିତ ରଙ୍ଗମଞ୍ଚ ବା ରାଜପ୍ରାସାଦ ଅନ୍ତର୍ଗତ ସୁରକ୍ଷିତ ଅଞ୍ଚଳ ମଧ୍ୟରେ ରାଜା, ମହାରାଜା, ରାଜପୁରୁଷମାନେ ଶୁଭଦିନ ମାନଙ୍କରେ ଏପରି ସମାଜର ବ୍ୟବସ୍ଥା କରୁଥିଲେ । ଏହି ଉଦ୍ଦେଶ୍ୟରେ ବିଶାଳ ଗୁମ୍ଫାମଣ୍ଡପ (ଗୁମୁଡ଼ିଆ), ଘର, ମଞ୍ଚା ପ୍ରଭୃତି ନିର୍ମିତ ହୋଇଥିଲା ।

ବିରାଟ ଚନ୍ଦ୍ରାତପ ତଳେ ସିଂହାସନ ବା ପଲଙ୍କ ଉପରେ ବସି ରାଜା ଓ ରାଜପୁରୁଷମାନେ ଏହା ଦର୍ଶନ କରୁଥିଲେ । ଏଥିରେ କୁସ୍ତିକସରତ, ମଲ୍ଲଯୁଦ୍ଧ, ହସ୍ତୀଯୁଦ୍ଧ, ମହିଷ ଯୁଦ୍ଧ, ବରାହ ଯୁଦ୍ଧ, ମେଷ ଯୁଦ୍ଧ ଓ କୁକୁଡ଼ଯୁଦ୍ଧ ପ୍ରଭୃତି ମଧ୍ୟ ପ୍ରଦର୍ଶିତ ହେଉଥିଲା । ମଦ୍ୟପାୟୀ ବୀରମାନେ ମଲ୍ଲଯୁଦ୍ଧ ଓ ସନ୍ତରଣ ଇତ୍ୟାଦିରେ ପ୍ରବୃତ୍ତ ହେଉଥିଲେ । ମଦ୍ୟପ ବୀରମାନେ ହିତାହିତ ଜ୍ଞାନଶୂନ୍ୟ ହୋଇ ଉନ୍ମତ୍ତାବସ୍ଥାରେ ବୃଷଭ, ବ୍ୟାଘ୍ର, ସିଂହ ପ୍ରଭୃତି ପଶୁମାନଙ୍କ ସହିତ ଯୁଦ୍ଧ କରୁଥିଲେ । କ୍ରୀଡ଼ା ବେଳେ ସେମାନେ ମଦ୍ୟମାଂସ ପ୍ରଭୃତି ଭକ୍ଷଣ କରୁଥିଲେ । ଏପରି ସମାଜରେ ବହୁ ଲୋକଙ୍କ ପାଇଁ ଖାଦ୍ୟପେୟର ମଧ୍ୟ ବ୍ୟବସ୍ଥା କରାଯାଉଥିଲା । ସେଥିରେ ମିଷ୍ଟାନ୍ନ ସହ ନାନାପ୍ରକାର ମାଂସ ଓ ମଦ୍ୟରେ ପ୍ରସ୍ତୁତ ବ୍ୟଞ୍ଜନ ପରିବେଷିତ ହେଉଥିଲା । ସେଥିପାଇଁ ବହୁ ଜୀବଙ୍କୁ ବଧ କରାଯାଉଥିଲା । ଏପରି ସମାଜ କରିବା ପାଇଁ ବହୁ ଅର୍ଥ ବ୍ୟୟିତ ହେଉଥିଲା ।

ରାମାୟଣରେ ଉଲ୍ଲେଖ ଅଛି ଯେ, "ଉତ୍ସବଶ୍ଚ ସମାଜଶ୍ଚ ବର୍ଦ୍ଧନେ ରାଷ୍ଟ୍ରବର୍ଦ୍ଧନମ୍" ଅର୍ଥାତ୍ ଉତ୍ସବ ଓ ସମାଜ ବୃଦ୍ଧିଲାଭ କଲେ ରାଷ୍ଟ୍ରର ଲୋକପ୍ରିୟତା ବୃଦ୍ଧିଲାଭ କରେ । ମହାଭାରତରୁ ଜଣାଯାଏ ଯେ,

କୌରବ ଓ ପାଣ୍ଡବମାନଙ୍କ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ ନିଜ ଶିଷ୍ୟ ଭୀମ, ଅର୍ଜୁନ, କର୍ଣ୍ଣ, ଦୁର୍ଯ୍ୟୋଧନ ପ୍ରଭୃତି ବୀରମାନଙ୍କ ଅସ୍ତ୍ରପରୀକ୍ଷା ସମୟରେ ଏକ ସମାଜ କରିଥିଲେ । ଦ୍ରୌପଦୀଙ୍କ ସ୍ୱୟମ୍ବର ବେଳେ ଏକ ସମାଜ ଅନୁଷ୍ଠିତ ହୋଇଥିଲା । ହରିବଂଶରୁ ଜଣାଯାଏ ଯେ, କଂସ ବଳଦେବକୃ-ଷ୍ଣଙ୍କ ଉଦ୍ଦେଶ୍ୟରେ ଗୋଟିଏ ସମାଜ କରିଥିଲେ । ସେଥିରେ ଖାଦ୍ୟ ପାଇଁ ଶତାଧିକ ପ୍ରକାର ମାଂସ ବ୍ୟବହୃତ ହୋଇଥିଲା । ସେହି ଗ୍ରନ୍ଥରୁ ମଧ୍ୟ ଜଣାଯାଏ ଯେ, ଏପରି ଏକ 'ସମାଜ'ରେ ଯୋଗଦେଇଥିବା କାଦମ୍ବରୀ ପାନରେ ଉନ୍ମତ୍ତ ଯାଦବମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରି ପ୍ରାଣ ହରାଇଥିଲେ ।

ବୌଦ୍ଧଜାତକରୁ ଜଣାଯାଏ ଯେ, ବୁଦ୍ଧଙ୍କ ସମୟରେ ନର୍ତ୍ତକ ଓ ଗାୟକ ଦଳ ଗ୍ରାମେ ଗ୍ରାମେ ବୁଲି 'ସମାଜ' କରୁଥିଲେ । ସାଧାରଣତଃ ଏହା ରାଜା, ରାଜକର୍ମଚାରୀ ବା ଧନାଢ୍ୟ ବ୍ୟକ୍ତି ପ୍ରଭୃତିଙ୍କ ଧନ ବ୍ୟୟରେ ଲୋକମାନଙ୍କ ମନୋରଞ୍ଜନ ପାଇଁ ଅନୁଷ୍ଠିତ ହେଉଥିଲା । ବୌଦ୍ଧଗ୍ରନ୍ଥ 'ଦୀଘନିକାୟ' ପ୍ରଦତ୍ତ ସମାଜ ବର୍ଣ୍ଣନାରୁ ଜଣାଯାଏ ଯେ, ଏଥିରେ ମଲ୍ଲଯୁଦ୍ଧ, ହସ୍ତୀଯୁଦ୍ଧ, ମହିଷ ଯୁଦ୍ଧ, ବରାହ ଯୁଦ୍ଧ, ମେଷଯୁଦ୍ଧ ଓ ଗ୍ରୁଟଯୁଦ୍ଧ ପ୍ରଭୃତି ପ୍ରଦର୍ଶିତ ହୋଇଥିଲା । ଏହା ଦେଖିବା ପାଇଁ ରାଜପ୍ରାସାଦର ବହୁ ବିଶିଷ୍ଟ ବ୍ୟକ୍ତି ସମବେତ ହେଉଥିଲେ । ସେମାନଙ୍କ ଭୋଜନ ପାଇଁ ବହୁସଂଖ୍ୟକ ମୃଗ, ସମ୍ବର, ମେଷ, ଛାଗଳ ପ୍ରଭୃତି ଜୀବ ମରାଯାଉଥିଲେ । କିନ୍ତୁ ବୌଦ୍ଧଧର୍ମର ପ୍ରଥମ ଓ ପ୍ରଧାନ ମତ 'ଅହିଂସା' ହୋଇଥିବାରୁ ଉକ୍ତ ଗ୍ରନ୍ଥରେ ଏପରି ସମାଜର ଘୋର ନିନ୍ଦା କରାଯାଇଛି ।

ଅଶୋକ ଏବଂ ପ୍ରଚଳିତ ରୀତିରେ ସମାଜ ନ କରିବା ପାଇଁ ପ୍ରଥମ ଅନୁଶାସନରେ ନିର୍ଦ୍ଦେଶ ଦେଇଛନ୍ତି । କାରଣ ଏପରି ସମାଜ ଇହ-ଲୋକରେ ଅମଙ୍ଗଳଜନକ ଓ ପରଲୋକରେ ମୁକ୍ତିର ପ୍ରତିବନ୍ଧକ । ମହାପୁରୁଷ ବୁଦ୍ଧଦେବ ରାଜକୁଳରେ ଜନ୍ମ ହୋଇ ସମସ୍ତ ସୁଖ ସମ୍ଭୋଗ ପରିତ୍ୟାଗ କରିଥିଲେ । ନୃତ୍ୟ, ଗୀତ, ବାଦ୍ୟ ଓ ଲୋକପ୍ରଚଳିତ ସମାଜ ତାଙ୍କୁ ତୁଚ୍ଛ ବୋଧ ହେଉଥିଲା । ତାଙ୍କ ମତରେ, ସଂସାରରେ

ବିମଳାନନ୍ଦ ଭୋଗ କରିବା ପାଇଁ ଅହିଂସା, ମିତାଚାରିତା, ମିତବ୍ୟୟିତା, ସଂଯମ, ହୃଦୟଶୁଦ୍ଧି ସର୍ବାଦୌ ଆବଶ୍ୟକ ।

ବୌଦ୍ଧଗ୍ରନ୍ଥ 'ବିନୟପିଟକ'ରେ ଲେଖା ହୋଇଛି ଯେ, କେତେକ ଭିକ୍ଷୁ ସଂସାରୀ ଲୋକଙ୍କ ପରି କୌଣସି ଦିନ ଉଚ୍ଚାର୍ଭାବରେ ସମାଜ କରିଥିବାରୁ ସେମାନଙ୍କୁ ବହୁତ ଲାଞ୍ଛନା ଓ ଅପମାନ ସହ୍ୟ କରିବାକୁ ପଡ଼ିଥିଲା । ଅନ୍ୟତ୍ର ବର୍ଣ୍ଣିତ ଅଛି ଯେ, ବୌଦ୍ଧ ଭିକ୍ଷୁମାନେ ପ୍ରତ୍ୟହ ସ୍ନାନାଦି ଶୌଚ-କ୍ରିୟା ବିଧିମତେ ସମ୍ପାଦନ କରି, ସାଧାରଣ ଖାଦ୍ୟ ଖାଇ ଧର୍ମଚର୍ଚ୍ଚାରେ କାଳଯାପନ କରୁଥିଲେ । ଏପରି ସମାଜ ବୌଦ୍ଧଗ୍ରନ୍ଥ ସମୂହରେ ବିଶେଷ ପ୍ରଶଂସିତ ହୋଇଅଛି ।

ଦେବପ୍ରିୟ ଅଶୋକ ପୂର୍ବପ୍ରଚଳିତ ସମାଜର ସଂସ୍କାର ପାଇଁ ବ୍ରତୀ ହୋଇ ଏପରି ଧର୍ମସମାଜ କରିବା ପାଇଁ ସମଗ୍ର ଭାରତବାସୀ ପ୍ରଜା-ମାନଙ୍କୁ ଉପଦେଶ ଦେଇଥିଲେ । ତାଙ୍କ ଦ୍ୱାରା ସମର୍ଥିତ ଧର୍ମସମାଜରେ ମଦ୍ୟପାନ, ମାଂସ, ମତ୍ସ୍ୟାଦି ଭକ୍ଷଣ ଓ ଉଚ୍ଛୃଙ୍ଖଳତାର ସ୍ଥାନ ନ ଥିଲା । ଏଥିରେ ଶତ ଶତ ଜୀବବଧ ଦ୍ୱାରା ମନୁଷ୍ୟର ରାକ୍ଷସ ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ଆଦୌ ସୁଯୋଗ ନ ଥିଲା । ଏହାର ଅନୁଷ୍ଠାନ ଦ୍ୱାରା ଲୋକେ ବିମଳାନନ୍ଦ ଲାଭ ଓ ଆତ୍ମାର ଶାନ୍ତିବିଧାନ ହେଉଥିବାରୁ ଏହା ଇହ ଓ ପରକାଳକୁ ମୁକ୍ତିର ଦ୍ୱାର ଖୋଲିଦେଉଥିଲା ।

ସାଧାରଣତଃ ଧର୍ମସମାଜ ଶ୍ରେଷ୍ଠ ଶ୍ରେଷ୍ଠ ପାହାଡ଼ର ପାଦଦେଶରେ ଥିବା ସମତଳଭୂମି ବା ନଦୀକୂଳରେ ଅନୁଷ୍ଠିତ ହେଉଥିଲା । ଦୟାନଦୀ ତୀରରେ ଅବସ୍ଥିତ ଧଉଳୀ ପାହାଡ଼ର ଏହି ଉଭୟବିଧ ସୁବିଧା ଥିବାରୁ ଏହା ଧର୍ମସମାଜର ଅନୁଷ୍ଠାନ ପାଇଁ ଏକାନ୍ତ ଉପଯୁକ୍ତ ଥିଲା ।

## ଦ୍ୱିତୀୟ ଅନୁଶାସନ—

ତାଙ୍କର ଦ୍ୱିତୀୟ ଅନୁଶାସନରୁ ଜଣାଯାଏ ଯେ, ସେ ତାଙ୍କ ସାମ୍ରାଜ୍ୟରେ ଓ ସାମ୍ରାଜ୍ୟ ସୀମାରେ ଥିବା ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର ଓ କେରଳପୁତ୍ର [(ଆଧୁନିକ ତାମିଲନାଡ଼ୁ ଓ କେରଳ ପ୍ରଦେଶଦ୍ୱୟ),

ତାମ୍ରପର୍ଣ୍ଣୀ (ଲଙ୍କାଦ୍ୱୀପ), ସୁଦୂର ସିରଆ ରାଜ୍ୟର ଯବନ (ଗ୍ରୀକ୍) ସମ୍ରାଟ ଅନ୍ତିୟୋକ (Antiochos Theos) ଓ ତାଙ୍କର ଅଧୀନସ୍ଥ ମିଶର, ମାସିଡୋନିଆ ପ୍ରଭୃତି ରାଜ୍ୟଗୁଡ଼ିକରେ ଦୁଇପ୍ରକାର ଚିକିତ୍ସା ପ୍ରଣାଳୀ— ମନୁଷ୍ୟ ଚିକିତ୍ସା ଓ ପଶୁଚିକିତ୍ସା ପ୍ରଚଳନ କରିଥିଲେ । ଯେଉଁ ଯେଉଁ ସ୍ଥାନରେ ଉଭୟବିଧ ଚିକିତ୍ସା ପାଇଁ ଆବଶ୍ୟକ ଚେରମୂଳ, ଫଳ ପ୍ରଭୃତି ଅଭାବ ଅନୁଭୂତ ହେଉଥିଲା, ସେଠିକୁ ଔଷଧ ବୃକ୍ଷସବୁ ପଠା-ଯାଇ ଭେଷଜ ଉଦ୍ୟାନମାନ ନିର୍ମିତ ହେଉଥିଲା ।

ଏହି ଅନୁଶାସନରୁ ଆଉ ମଧ୍ୟ ଜଣାଯାଏ ଯେ, ଅଶୋକଙ୍କ ଆଦେଶରେ ପଶୁ ଓ ମନୁଷ୍ୟମାନଙ୍କ ଉପଭୋଗ ନିମିତ୍ତ ପଥପାର୍ଶ୍ୱରେ ବଟ, ଅଶ୍ୱତ୍ଥ, ଆମ୍ର, ପନସ, ଜମ୍ବୁ ପ୍ରଭୃତି ବହୁ ବୃକ୍ଷ ରୋପିତ ଓ କୂପ ତଡ଼ାଗାଦି ଖନିତ ହୋଇଥିଲା ।

ପ୍ରାଚୀନ କାଳରେ ଭାରତ ସମଗ୍ର ପୃଥିବୀରେ ଚିକିତ୍ସା ପ୍ରଣାଳୀ ର ଶୀର୍ଷସ୍ଥାନ ଅଧିକାର କରିଥିଲା । ମହାଭାରତ ଶାନ୍ତିପର୍ବର ରାଜଧର୍ମ ପ୍ରକରଣରେ ସମସ୍ତ ପ୍ରକାର ଔଷଧି ମୂଳ ଓ ଫଳ ବିଶେଷ ଭାବରେ ସଂଗ୍ରହ କରିବା ରାଜଧର୍ମ ରୂପେ ବିବେଚିତ ହେଉଥିଲା । ଯଥା,—

"ଔଷଧାନି ଚ ସର୍ବାଣି ମୂଳାନି ଚ ଫଳାନି ଚ
ଚତୁର୍ବିଧାଂଶ୍ଚ ବୈଦ୍ୟାନ୍ ବୈ ସଂଗୃହ୍ଣୀୟାଦ୍ ବିଶେଷତଃ ।।"

ମହାନୁଭବ ପ୍ରଜାବତ୍ସଳ ଅଶୋକ ଏହି ରାଜଧର୍ମ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଐତିହାସିକ ସ୍ମିଥ୍‌ଙ୍କ ମତରେ, ସେ ସମୟରେ ପୃଥିବୀର ଅନ୍ୟାନ୍ୟ ସଭ୍ୟ ଦେଶ ମିଶର, ଗ୍ରୀସ୍, ରୋମ୍, ଚୀନ୍ ପ୍ରଭୃ-ତିରେ ମନୁଷ୍ୟ ଚିକିତ୍ସା ପ୍ରଚଳିତ ଥିଲା । କିନ୍ତୁ ଭାରତ ବାହାରେ ଅନ୍ୟ କୌଣସି ସଭ୍ୟ ଦେଶରେ ପଶୁଚିକିତ୍ସା ପ୍ରଚଳିତ ଥିବାର ଜଣାଯାଏ ନାହିଁ । ଅଶୋକ ମନୁଷ୍ୟ ଚିକିତ୍ସା ସହ ପଶୁ ଚିକିତ୍ସାର ପ୍ରଚଳନ ଓ ଉନ୍ନତି ସାଧନ କରି ସମଗ୍ର ପୃଥିବୀର ଚିକିତ୍ସା ପ୍ରଣାଳୀରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ ।

ଅଶୋକ କଳିଙ୍ଗ ରାଜଧାନୀ ତୋଷଳୀ ନିକଟବର୍ତ୍ତୀ ଧଉଳି ପାହାଡ଼ରେ ଏକ ଭେଷଜଉଦ୍ୟାନ ନିର୍ମାଣ କରିଥିବା ଜଣାଯାଏ । ତୃତୀୟ ଶତାବ୍ଦୀରେ ରଚିତ 'ଗଣ୍ଡବ୍ୟୂହ' ନାମକ ଏକ ପ୍ରସିଦ୍ଧ ବୌଦ୍ଧ ଗ୍ରନ୍ଥରେ ସୁରଭ (ଧଉଳୀ) ପାହାଡ଼ ଶିଖରରେ ଥିବା ଭେଷଜ ଉପବନର ଉଲ୍ଲେଖ ଦେଖାଯାଏ । ୧୮୩୭ରେ ମାରଖାମ କଟୋ ସାହେବ ସର୍ବ-ପ୍ରଥମେ ଧଉଳୀରେ ଅଶୋକ ଅନୁଶାସନ ଆବିଷ୍କାର କରିବା ସମୟରେ ଅଶ୍ୱତ୍ଥାମା ପାହାଡ଼ର ଦକ୍ଷିଣ ପାଖରେ ଥିବା ଗୁମ୍ଫା ଗୁଡ଼ିକର ବୈଦ୍ୟଙ୍କ ଖଳ ରୂପେ ବ୍ୟବହୃତ କୁଣ୍ଡମାନ ଖୋଳା ହୋଇଥିବାର ଦେଖିଥିଲେ । ତେଣୁ ଏହା ନିକଟରେ ଏକ ଔଷଧାଳୟ ଥିବାର ସେ ଅନୁମାନ କରିଥିଲେ । ଦ୍ୱିତୀୟ ଅନୁଶାସନର ବର୍ଣ୍ଣନା ଦୃଷ୍ଟିରୁ ତାଙ୍କର ଏହି ଅନୁମାନର ଯଥାର୍ଥତା ପ୍ରତିପାଦିତ ହୁଏ ।

ତୃତୀୟ ଅନୁଶାସନ —

ତୃତୀୟ ଅନୁଶାସନରୁ ଜଣାଯାଏ ଯେ, ଅଶୋକ ରାଜ୍ୟାଭିଷେକର ଦ୍ୱାଦଶ ବର୍ଷରେ ଅର୍ଥାତ୍ ଖ୍ରୀ: ପୂ: ୨୫୮ ଅବ୍ଦରେ ପ୍ରାଦେଶିକ, ଯୁକ୍ତ, ରଜୁକ ପ୍ରଭୃତି ରାଜକର୍ମଚାରୀମାନଙ୍କୁ ପ୍ରତି ପାଞ୍ଚ ବର୍ଷରେ ଥରେ ଅନୁସନ୍ଧାନ ବା ଭ୍ରମଣରେ ଯିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହି ଭ୍ରମଣ ସମୟରେ ଅନ୍ୟ ଶାସନ ସମ୍ବନ୍ଧୀୟ କାର୍ଯ୍ୟ କରିବା ସାଙ୍ଗ ସଙ୍ଗେ ଲୋକ-ମାନଙ୍କୁ ନିମ୍ନୋକ୍ତ ପ୍ରକାରେ ଧର୍ମଶିକ୍ଷା ଦେଉଥିଲେ । ଯଥା— "ମାତା ପିତା, ମିତ୍ର, ଜ୍ଞାତି, ବ୍ରାହ୍ମଣ ଓ ଶ୍ରମଣମାନଙ୍କ ସେବାଶୁଶ୍ରୂଷା ସାଧୁକାର୍ଯ୍ୟ, ଦାନ, ଜୀବପ୍ରତି ଅହିଂସା, ଅଳ୍ପବ୍ୟୟିତା, ଅଳ୍ପସଞ୍ଚୟ, ଅଭାବ ସାଧୁ-କାର୍ଯ୍ୟ ।" ଏହି ରାଜାଜ୍ଞା ଯଥୋଚିତ ଭାବରେ ପ୍ରତିପାଳନ କରିବା ପାଇଁ ପରିଷଦ (ମନ୍ତ୍ରୀସଭା) 'ଯୁକ୍ତ' ଓ 'ଗଣନ' ପ୍ରଭୃତି ରାଜକର୍ମଚାରୀ ମାନଙ୍କୁ ଆଦେଶ ପ୍ରଦାନ କରୁଥିଲେ ।

ମହାଭାରତ ଶାନ୍ତି ପର୍ବର ରାଜଧର୍ମ ପ୍ରବଚନରେ ମାତା, ପିତା, ଆଚାର୍ଯ୍ୟ, ଗୁରୁ ଓ ଆଶ୍ରମବାସୀମାନଙ୍କର ଶୁଶ୍ରୂଷା ରାଜଧର୍ମ ରୂପେ ବର୍ଣ୍ଣିତ

ହୋଇଅଛି । (୧୮) ଅଶୋକ ପରମସୌଗତ ଥିବାରୁ ବୈଦିକ ଧର୍ମ ରକ୍ଷକ ବ୍ରାହ୍ମଣଙ୍କ ସହିତ ବୌଦ୍ଧ ମତ ପ୍ରଚାରକ ଶ୍ରମଣଙ୍କୁ ସମାନ ସ୍ଥାନ ଦେଇ ସେମାନଙ୍କ ସେବା ଶୁଶ୍ରୂଷା କର୍ତ୍ତବ୍ୟ ବୋଲି ଧର୍ମଲିପିରେ ଘୋଷଣା କରିଥିଲେ ।

ଚତୁର୍ଥ ଅନୁଶାସନ —

ଅଶୋକଙ୍କ ଚତୁର୍ଥ ଧର୍ମଲିପିରୁ ଜଣାଯାଏ ଯେ, ବୌଦ୍ଧଧର୍ମ ପ୍ରତି ଜନସାଧାରଣଙ୍କ ଆକୃଷ୍ଟ କରିବା ପାଇଁ ଭେରୀଘୋଷ, ଧର୍ମଘୋଷ, ବିମାନ ପ୍ରଦର୍ଶନ, ବହୁ ହସ୍ତୀର ଚିତ୍ର, ଅଗ୍ନିସ୍କନ୍ଧ (ନାନା ପ୍ରକାର ବାଣ) ଏବଂ ଅନେକ ସୁନ୍ଦର ରୂପ ବା ମୂର୍ତ୍ତି ଓ ଚିତ୍ରସବୁ ପ୍ରଦର୍ଶିତ ହେଉଥିଲା । ଜାତକ ପ୍ରଭୃତି ବର୍ଣ୍ଣନାରୁ ଜଣାଯାଏ, ରାଜା ଧର୍ମଘୋଷକଙ୍କୁ ନାନାଳଙ୍କାର ମଣ୍ଡିତ ହସ୍ତୀ ପୃଷ୍ଠରେ ବସାଇ ଧର୍ମକଥା ଘୋଷଣା କରାଉଥିଲେ । (୧୯)

'ପରମଥ ଜୋତିକା' ନାମକ ଅନ୍ୟ ଏକ ବୌଦ୍ଧ ଗ୍ରନ୍ଥରୁ ଜଣାଯାଏ ଯେ, ଧର୍ମ ଘୋଷକମାନେ ଗାଁରୁ ଗାଁ; ସହରରୁ ସହର ବୁଲି ଧର୍ମକଥା ଶୁଣାଉଥିଲେ । (୨୦) ଜାତକରେ ମଧ୍ୟ ଧର୍ମ ପ୍ରଚାର ପାଇଁ ବିମାନ, ଆକାଶବିମାନ ପ୍ରଭୃତିର ପ୍ରଦର୍ଶନ ବର୍ଣ୍ଣିତ ହୋଇଛି । (୨୧) 'ସୁମଙ୍ଗଳବିଳାସିନୀ' ନାମକ ବୌଦ୍ଧ ଗ୍ରନ୍ଥରେ ଧର୍ମ ପ୍ରଚାରପାଇଁ ବହୁହସ୍ତୀ ଓ ଦିବ୍ୟ ରୂପମାନ ପ୍ରଦର୍ଶନର ଉଲ୍ଲେଖ ଦେଖାଯାଏ । (୨୨)

---

(୧୮) "ମାତାପିତ୍ରୋଶ୍ଚ ଶୁଶ୍ରୂଷା କର୍ତ୍ତବ୍ୟା ସର୍ବବାସିଭିଃ
ଆଗ୍ନେୟଂ ଗୁରୁଶୁଶ୍ରୂଷା ତଥୈବାଶ୍ରମବାସିନାମ୍" (ମହାଭାରତ)

(୧୯) "ରାଜା ଧମ୍ମଘୋସକଂ ଅଲଂକତ ହତ୍ଥି ପିଟ୍ଠିଂ ଆରୋପେତ୍ୱା
ଘୋସଣଂ କାରେତି"

(୨୦) "ଧମ୍ମଘୋସକା ହୁତ୍ୱା ଗାମ ଗାମଂ ନଗରନଗରଂ ବିଚରନ୍ତସାମୋ"

(୨୧) "ବିମାନଂଦସ୍ସା" "ଆକାଶବିମାନା ନିଦସେତ୍ୱା"

(୨୨) "ହତ୍ଥୀନଂ ପସପ ଦସ୍ସନଂ ଦିବ୍ବାନି ପି ରୂପାନି ପସସନ୍ତା

'ମିଳନ୍ଦ ପାହ୍ନ' ନାମକ ପ୍ରାଚୀନ ବୌଦ୍ଧ ଧର୍ମରେ 'ଧମ୍ମଭେରୀ'ର ଓ 'ବନସୁପିଟକେ'ରେ 'ଅଗ୍ନିଖନ୍ଧ'ର ଉଲ୍ଲେଖ ଦେଖାଯାଏ । ଭେରୀ-ବାଦନ ଶୁଣିବା ପାଇଁ ସମବେତ ଜନତାକୁ ଧର୍ମକଥା ଶୁଣାଇବା 'ଭେରୀ ଘୋଷ' ଓ ଉକ୍ତ ଭେରୀ 'ଧର୍ମଃଭେରୀ' ନାମରେ ଆଖ୍ୟାତ ହୋଇଅଛି । ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ, ଅଶୋକ ବୌଦ୍ଧଧର୍ମ ପ୍ରଚାର ପାଇଁ ବୌଦ୍ଧଗ୍ରନ୍ଥ ବର୍ଣ୍ଣିତ ସମସ୍ତ ଉପାୟ ଅବଲମ୍ବନ କରିଥିଲେ ।

ତାଙ୍କର ପ୍ରବଳ ପ୍ରଚାର ଫଳରେ ଜୀବବଧ ଓ ପ୍ରାଣୀହିଂସା ହ୍ରାସ ଲାଭ କରିଥିବାରୁ ଏବଂ ଜ୍ଞାତିକୁଟୁମ୍ବମାନଙ୍କ ପ୍ରତି ଆଦର, ବ୍ରାହ୍ମଣ ଶ୍ରମଣମାନଙ୍କ ପ୍ରତି ଭକ୍ତି, ମାତାପିତାଙ୍କ ଶୁଶ୍ରୂଷା, ବୃଦ୍ଧ ବା ଗୁରୁଜନ-ମାନଙ୍କ ସେବା ବୃଦ୍ଧିଲାଭ କରିଥିବାରୁ ସେ ବିଶେଷ ଆତ୍ମପ୍ରସାଦ ଲାଭ କରିଛନ୍ତି । ବୌଦ୍ଧଧର୍ମର ଏହି ଅଭୂତପୂର୍ବ ପ୍ରଚାରକୁ ସେ ଅଧିକ ବ୍ୟାପକ କରିବା ପାଇଁ ପ୍ରତିଜ୍ଞା କରିଛନ୍ତି । ତାଙ୍କର ଏହି ଧର୍ମାଚରଣ (ଧର୍ମ ପ୍ରଚାର) ତାଙ୍କ ପୁଅ, ନାତି ଓ ପଣନାତିମାନେ ଯାବତ୍‌କଳ୍ପ ଅକ୍ଷୁର୍ଣ୍ଣ ରଖିବେ ବୋଲି ସେ ଆଶା ପୋଷଣ କରିଛନ୍ତି । ସୁତରାଂ ଏହି ଅନୁ-ଶାସନରେ ତାଙ୍କର ପ୍ରଗାଢ଼ ବୌଦ୍ଧଧର୍ମ ପ୍ରୀତି ଏବଂ ଏହାର ପ୍ରସାର ପାଇଁ ତାଙ୍କର ସମସ୍ତ ଶକ୍ତିର ବିନିଯୋଗ ପ୍ରକଟିତ ହୋଇଅଛି ।

**ପଞ୍ଚମ ଅନୁଶାସନ —**

ଅଶୋକଙ୍କ ପଞ୍ଚମ ଧର୍ମଲିପିରୁ ଜଣାଯାଏ ଯେ, ସେ ରାଜ୍ୟା-ଭିଷେକର ତ୍ରୟୋଦଶ ବର୍ଷରେ (ଖ୍ରୀ. ପୂ. ୨୫୭) ବୌଦ୍ଧଧର୍ମର ପ୍ରଚାର, ଶ୍ରୀବୃଦ୍ଧି ସାଧନ, ଉକ୍ତ ଧର୍ମାବଲମ୍ବୀମାନଙ୍କ ହିତ ବିଧାନ ଏବଂ ସୁଖ ବୃଦ୍ଧି ନିମିତ୍ତ 'ଧର୍ମ ମହାମାତ୍ର' ଓ 'ଧର୍ମଯୁକ୍ତ' ନାମକ ଦୁଇ ପ୍ରକାର ନୂତନ କର୍ମଚାରୀ ଗୋଷ୍ଠୀ ନିଯୁକ୍ତ କରିଥିଲେ । ଏଥିପୂର୍ବରୁ ତାଙ୍କ ଅଧୀନରେ 'ମହାମାତ୍ର' ଓ 'ଯୁକ୍ତ' ସଞ୍ଜ୍ଞକ ବହୁ କର୍ମଚାରୀ ଥିଲେ । କିନ୍ତୁ ବୌଦ୍ଧଧର୍ମର ଅଭିବୃଦ୍ଧି ନିମିତ୍ତ ଏହି ଦୁଇ ସ୍ୱତନ୍ତ୍ର କର୍ମଚାରୀ ଗୋଷ୍ଠୀର ସୃଷ୍ଟି ହୋଇଥିଲା । ସାଧାରଣତଃ ଧାର୍ମିକ, ଦାନଶୀଳ, ତତ୍ତ୍ୱଜ୍ଞ, ପ୍ରାପ୍ତ-

ବସ୍ତୁସ୍ଥ ଓ ଅଦ୍ଧକ୍ଷ କର୍ମଚାରୀମାନେ ଉକ୍ତ ଦୁଇ ପଦରେ ଅଧିଷ୍ଠିତ ହୋଇଥିଲେ । ସେମାନେ ପୁରୁଷ ଓ ସ୍ତ୍ରୀ ଲୋକମାନଙ୍କୁ ପୃଥକ୍ ପୃଥକ୍ ଭାବରେ ଧର୍ମଶିକ୍ଷା ଦେଉଥିଲେ ।

ଅଶୋକଙ୍କ ସାମ୍ରାଜ୍ୟର ସୀମାନ୍ତବର୍ତ୍ତୀ (ଅପରାନ୍ତ) ଯୋନ (ଯବନ) କାମ୍ବୋଜ, ଗାନ୍ଧାର ପ୍ରଭୃତି ରାଜ୍ୟ ଗୁଡ଼ିକରେ ବୌଦ୍ଧଧର୍ମର ପ୍ରଚାର ପ୍ରସାର କରିବା ଦାୟିତ୍ୱ ଏହି ସ୍ୱତନ୍ତ୍ର କର୍ମଚାରୀମାନଙ୍କ ଉପରେ ନ୍ୟସ୍ତ ଥିଲା । ଅଶୋକଙ୍କ ପୂର୍ବରୁ ଆଫଗାନିସ୍ଥାନ, ବେଲୁଚିସ୍ଥାନ ପ୍ରଭୃତି ଅଞ୍ଚଳରେ ଗ୍ରୀକ୍ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିବାରୁ ଉକ୍ତ ଭୂଖଣ୍ଡ ଯୋନ ବା 'ଯବନ' ରାଜ୍ୟ ନାମରେ ଅଭିହିତ ହେଉଥିଲା । ବର୍ତ୍ତମାନ ଅବିଭକ୍ତ ପଞ୍ଜାବ ଓ କାଶ୍ମୀରର ଅଧିକାଂଶ କମ୍ବୋଜ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ପଞ୍ଜାବର ପଶ୍ଚିମାଂଶ ଗାନ୍ଧାର ନାମରେ ପରିଚିତ ଥିଲା । 'ତକ୍ଷଶୀଳା' ଗାନ୍ଧାର ରାଜ୍ୟର ରାଜଧାନୀ ଥିଲା । ଗାନ୍ଧାର ରାଜ୍ୟର 'ସାହବାଜ ଗଡ଼ି' (କପର୍ଦ୍ଦିଗିରି) ଓ କମ୍ବୋଜ ରାଜ୍ୟର 'ମାନସହରା' ଠାରେ ଅଶୋକଙ୍କ ଚତୁର୍ଦ୍ଦଶ ଶୈଳାନୁଶାସନ ବିଦ୍ୟମାନ ।

ଶ୍ରୀମାଳପୁର ପାଦଦେଶବର୍ତ୍ତୀ 'ଅପରାନ୍ତ' 'ନାଭକ'-ରାଜ୍ୟ ଆଧୁନିକ ଡେରାଡୁନ ଅଞ୍ଚଳରେ ଅବସ୍ଥିତ । ଏଠାରେ କଳସୀ ନାମକ ସ୍ଥାନରେ ଅଶୋକଙ୍କ ଚତୁର୍ଦ୍ଦଶ ଶୈଳାନୁଶାସନ ଖୋଦିତ ହୋଇଥିଲା । ନୂତନ ବିଜିତ କଳିଙ୍ଗ ରାଜ୍ୟ 'ଅପରାନ୍ତ' ବା ଅଶୋକଙ୍କ ସାମ୍ରାଜ୍ୟର ସୀମାନ୍ତବର୍ତ୍ତୀ ରାଜ୍ୟ ରୂପେ ବିବେଚିତ ହେଉଥିଲା । ଏଠାରେ ମଧ୍ୟ ଧଉଳୀ ଓ ଯୌଗଡ଼ରେ ଅଶୋକଙ୍କ ଶୈଳାନୁଶାସନ ଉତ୍କୀର୍ଣ୍ଣ ହୋଇଥିଲା । କଳିଙ୍ଗ ରାଜ୍ୟରେ 'ଧର୍ମମହାମାତ୍ର' ଓ 'ଧର୍ମଯୁକ୍ତ' ପ୍ରଭୃତି ସ୍ୱତନ୍ତ୍ର କର୍ମଚାରୀମାନଙ୍କ ବିଶେଷ ଉଦ୍ୟମ ଫଳରେ ବୌଦ୍ଧଧର୍ମ ପ୍ରଚାର କ୍ଷିପ୍ରତର ହୋଇଥିବା ସ୍ଥିର କରାଯାଇ ପାରେ ।

**ଷଷ୍ଠ ଅନୁଶାସନ –**

ଷଷ୍ଠ 'ଧର୍ମଲିପି'ରୁ ଜଣାଯାଏ ଯେ ପୂର୍ବରୁ ଅନୁସୃତ ରାଜାଙ୍କ କାର୍ଯ୍ୟାଳୟରେ ପ୍ରଜାବର୍ଗଙ୍କ ଅବସ୍ଥା ସମ୍ବନ୍ଧରେ ସମ୍ବାଦ ସଂଗ୍ରହ ବ୍ୟବସ୍ଥା

ଉଦ୍ୟମ ମନ୍ଥର ଓ ବିଳମ୍ବିତ ଥିବାରୁ ସେ ଏହାକୁ ଉଦ୍ୟମ କ୍ଷିପ୍ର କରିବା ପାଇଁ ସେ କୌଣସି ସ୍ଥାନ, ସମୟ ବା ଅବସ୍ଥାରେ ନିଜେ ସମସ୍ତ ସମ୍ବାଦ ସଂଗ୍ରହର ବ୍ୟବସ୍ଥା ଚଳାଇଥିଲେ । ସେ ଘୋଷଣା କରିଥିଲେ ଯେ ସମ୍ବାଦବାହକ ରାଜଦୂତମାନେ ତାଙ୍କୁ ଭୋଜନଶାଳା, ରାଣୀହଂସପୁର ବା ଅନ୍ତଃପୁର, ବିଶ୍ରାମକକ୍ଷ, ସ୍ନାନାଗାର, ବ୍ୟାୟାମଗୃହ, ଉଦ୍ୟାନ, ଯେ କୌଣସି ସ୍ଥାନରେ ଥିଲେ ମଧ୍ୟ ଅବାଧରେ ପ୍ରଜାମାନଙ୍କ ହାଲଚାଲ ଜଣାଇ ପାରିବେ । 'ଦାୟକ' ଓ 'ଶ୍ରାବକ' ପ୍ରଭୃତି କର୍ମଚାରୀମାନେ ତାଙ୍କର ମୌଖିକ ଆଦେଶାନୁସାରେ କାର୍ଯ୍ୟାନୁଷ୍ଠାନ କରି ତାଙ୍କୁ ଜଣାଇବେ । 'ପରିଷଦ' ବା ମନ୍ତ୍ରୀ ସଭାର ସଭ୍ୟମାନେ ତାଙ୍କ ସହିତ ସର୍ବତ୍ର ବା 'ସବୁ ସ୍ଥାନରେ' ଓ ସର୍ବକାଳ (ସବୁ ସମୟରେ) ରାଜ୍ୟ ଶାସନ ସଂକ୍ରାନ୍ତ ସମସ୍ତ ବିଷୟରେ ଆଲୋଚନା କରି ପାରିବେ । କାରଣ କାର୍ଯ୍ୟ ତତ୍ପରତା ଓ କର୍ତ୍ତବ୍ୟ ପାଳନ ଦ୍ୱାରା ହିଁ ପ୍ରଜାବର୍ଗଙ୍କ ମଙ୍ଗଳ ସାଧନ ସମ୍ଭବପର । ଏହି ଧର୍ମଲିପିର ଶେଷ ଆଡ଼କୁ ସେ ଲେଖିଛନ୍ତି "ମୋର ଯାବତୀୟ କାର୍ଯ୍ୟର ଲକ୍ଷ୍ୟ ପରୋପକାର ସାଧନ । ଲୋକମାନଙ୍କ ଋଣରୁ ମୁକ୍ତିଲାଭ, ସେମାନଙ୍କୁ ଇହକାଳରେ ସୁଖ ଓ ପରକାଳରେ ଶାନ୍ତି ପ୍ରଦାନ ମୋର ପ୍ରତ୍ୟେକ କାର୍ଯ୍ୟର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟରେ ଲିଖିତ ଏହି ଧର୍ମଲିପି ଚିରସ୍ଥାୟୀ ହେଉ । ମୋର ପୁତ୍ର ନାତିମାନେ ଏହିପରି ପରହିତବ୍ରତୀ ହୁଅନ୍ତୁ ।

ଏହି ଉଚ୍ଚ 'ରାଜାଦର୍ଶ' ଯୋଗୁଁ ଅଶୋକ ପ୍ରାଚୀନ ଭାରତର ଜଣେ ପ୍ରଖ୍ୟାତ ଓ 'ପୁଣ୍ୟଶ୍ଳୋକ' ନରପତି ରୂପେ ଚିରସ୍ମରଣୀୟ ।

## ସପ୍ତମ ଅନୁଶାସନ —

ସପ୍ତମ ଅନୁଶାସନରେ ଦେବପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ 'ସର୍ବଧ ସମନ୍ୱୟ' ନୀତି ଘୋଷିତ ହୋଇଛି । ସର୍ବ ପାଷଣ୍ଡାଃ (୨୩) ବା ବିଭିନ୍ନ ଧର୍ମାବଲମ୍ବୀମାନେ ସୁଖଶାନ୍ତିରେ ବସବାସ କରି ସ୍ୱ ସ୍ୱ ଧର୍ମାଚରଣ କରିବା ପାଇଁ ସେ ଏଥିରେ ଘୋଷଣା କରିଛନ୍ତି ।

## ଅଷ୍ଟମ ଅନୁଶାସନ—

ଅଷ୍ଟମ ଅନୁଶାସନରୁ ଜଣାଯାଏ ଯେ, ଅଶୋକ ପୂର୍ବବର୍ତ୍ତମାନ କାଳରୁ ରାଜାମାନଙ୍କ ଦ୍ୱାରା ଅନୁଷ୍ଠିତ ମୃଗୟା, ବିହାରଯାତ୍ରା ପ୍ରଭୃତି ବିହାର ଯାତ୍ରା ପରିତ୍ୟାଗ କରି ରାଜ୍ୟାଭିଷେକର ଦଶମ ବର୍ଷରେ ସମ୍ବୁଦ୍ଧ ହେବା ପରେ **ଧର୍ମଯାତ୍ରା** ଆରମ୍ଭ କରିଥିଲେ । ରାମାୟଣ, ମହାଭାରତ ଓ ବୌଦ୍ଧ ଗ୍ରନ୍ଥମାନଙ୍କରେ ମୃଗୟାର ବର୍ଣ୍ଣନା ମିଳେ । ଅଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ଓ ପିତା ବିନ୍ଦୁସାର ମଧ୍ୟ ରାମାୟଣ ଓ ମହାଭାରତ ବର୍ଣ୍ଣିତ ନରପତିମାନଙ୍କ ପରି ବିହାର ଯାତ୍ରା ବା ମୃଗୟାରେ ବହିର୍ଗତ ହେଉଥିଲେ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ମୃଗୟା ସମ୍ବନ୍ଧୀୟ ବିଧିବିଧାନ ବର୍ଣ୍ଣିତ ହୋଇଅଛି । ବିହାର ଯାତ୍ରାରେ ବିଭିନ୍ନ ଜୀବବଧ, ମାଦକ ଦ୍ରବ୍ୟ ସେବନ ଓ ନାରୀସମ୍ଭୋଗ ଦୁର୍ନୀତି ପ୍ରଚାରର ପ୍ରଶସ୍ତ ଲାଭ କରୁଥିବାରୁ ସମ୍ବୁଦ୍ଧ ଅଶୋକ ଏହା ସମ୍ପୂର୍ଣ୍ଣ ରୂପେ ପରିତ୍ୟାଗ କରିଥିଲେ । ସେ ଏହା ପରିବର୍ତ୍ତରେ ସର୍ବପ୍ରଥମେ 'ଧର୍ମଯାତ୍ରା' ପ୍ରବର୍ତ୍ତନ କରିଥିଲେ । ସେ ଧର୍ମଯାତ୍ରାରେ ବହିର୍ଗତ ହୋଇ ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ଦର୍ଶନ ଓ ଦାନ, ବୃଦ୍ଧମାନଙ୍କ ଦର୍ଶନ ଓ ସେମାନଙ୍କ ମଧ୍ୟରେ ସ୍ୱର୍ଣ୍ଣମୁଦ୍ରା ବଣ୍ଟନ ଓ ଗ୍ରାମ୍ୟ ଲୋକମାନଙ୍କ ଦର୍ଶନ ପୂର୍ବକ ସେମାନଙ୍କୁ ଧର୍ମୋପଦେଶ ପ୍ରଦାନ ଓ ସେମାନଙ୍କ ସହିତ ଧର୍ମାଲୋଚନା ଇତ୍ୟାଦିରେ କାଳାତିପାତ କରି ଗଭୀର ସନ୍ତୋଷ ଲାଭ କରୁଥିଲେ । ଏହି ଧର୍ମଲିପି ଶେଷରେ ସେ ଲେଖିଛନ୍ତି ଯେ (ପୂର୍ବବର୍ତ୍ତୀ ରାଜାମାନଙ୍କ ଠାରୁ) ତାଙ୍କର ଭାଗ୍ୟ ଅନ୍ୟ ପ୍ରକାର ଥିବାରୁ ଧର୍ମଯାତ୍ରା ତାଙ୍କ ପକ୍ଷେ "ଭୂୟୋ ଅଭିରାମର୍ଭବତି" ବା ପରମ ସୌଭାଗ୍ୟର ବିଷୟ ଥିଲା ।

---

(୨୩) 'ପାଷଣ୍ଡ' — ଧର୍ମାବଲମ୍ବୀ । କଳିଙ୍ଗ ଚକ୍ରବର୍ତ୍ତୀ ଜୈନ ସମ୍ରାଟ୍ ଶ୍ରୀ ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଲେଖରେ ମଧ୍ୟ ଏହି ଅର୍ଥରେ ଉକ୍ତ ପଦର ବ୍ୟବହାର ଦେଖାଯାଏ । ଯଥା "ସବପାଷଣ୍ଡପୂଜକୋ, ସବଦେବାୟତନ ସଂସ୍କାରକାରକୋ" × × ×

## ନବମ ଅନୁଶାସନ—

ନବମ ଅନୁଶାସନରେ ଅଶୋକ ତାଙ୍କ ସମୟରେ ସମାଜରେ ପ୍ରଚଳିତ 'ମଙ୍ଗଳ' କାର୍ଯ୍ୟ ସମୂହ (ଉପବାସ, ପୂଜା, ହୋମ, ଧାରଣା ପ୍ରଭୃତି) 'ସ୍ୱଳ୍ପଫଳ' ବୋଲି ଘୋଷଣା କରି 'ମହାଫଳ' 'ଧର୍ମମଙ୍ଗଳ' କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ସେକାଳରେ ଲୋକେ ରୋଗାକ୍ରମଣ ନିମନ୍ତ୍ରଣ, ପୁତ୍ର-କନ୍ୟାମାନଙ୍କ ବିବାହ, ସନ୍ତାନୋତ୍ପତ୍ତି ଓ ଗର୍ଭାଧାନ, ବିଦେଶଯାତ୍ରା ସମୟରେ ବିଶେଷତଃ ସନ୍ତାନବତୀ ମାତାମାନେ ସ୍ୱ ପୁତ୍ର-କନ୍ୟାମାନଙ୍କ ଆୟୁଃଆରୋଗ୍ୟ ଓ ଶ୍ରୀବୃଦ୍ଧି କାମନା କରି ନାନାପ୍ରକାର ମଙ୍ଗଳ କାର୍ଯ୍ୟ କରୁଥିଲେ । ଏ ସମସ୍ତ ମଙ୍ଗଳ କାର୍ଯ୍ୟ ଅଳ୍ପ ଫଳପ୍ରଦ ଥିବାରୁ ବହୁ ଫଳପ୍ରଦ ଧର୍ମ, ମଙ୍ଗଳ ଅର୍ଥାତ୍ ଦାସଭୃତ୍ୟମାନଙ୍କ ପ୍ରତି ସଦୟ ବ୍ୟବହାର,ଗୁରୁଜନମାନଙ୍କୁ ଭକ୍ତି,ଅହିଂସନ,ଶ୍ରମଣ ଓ ବ୍ରାହ୍ମଣ-ମାନଙ୍କୁ ଦାନ ପ୍ରଭୃତି ଅବଶ୍ୟ କରଣୀୟ ବୋଲି ଘୋଷିତ ହୋଇଅଛି । ଏ ସମସ୍ତ ଓ ଅନ୍ୟାନ୍ୟ ଧର୍ମ ମଙ୍ଗଳ ସମ୍ବନ୍ଧରେ ପିତା, ପୁତ୍ର, ଭ୍ରାତା, ସ୍ୱାମୀ, ମିତ୍ର ଓ ପ୍ରତିବେଶୀମାନେ ଶିକ୍ଷା ଦେବାପାଇଁ ଅନୁରୋଧ କରା-ଯାଇଛି । ଅଶୋକଙ୍କ ମତରେ ନିର୍ଦ୍ଦିଷ୍ଟ କାଳରେ ଅନୁଷ୍ଠିତ 'ମଙ୍ଗଳ' ସମୂହ ଦ୍ୱାରା ଆଶାନୁରୂପ ଫଳପ୍ରାପ୍ତି ସଂଶୟାତ୍ମକ, କିନ୍ତୁ କାଳାକାଳ ବିବେଚନା ନ ଥାଇ କରାଯାଉଥିବା ଧର୍ମ ମଙ୍ଗଳ ଦ୍ୱାରା ଫଳପ୍ରାପ୍ତି ଧ୍ରୁବ । ଏହା-ଦ୍ୱାରା ଐହିକ ସୁଖ ଓ ପରକାଳରେ ଅନନ୍ତ ପୁଣ୍ୟ ଲାଭ ହୁଏ ।

ଏହି ଧର୍ମଲିପିରେ ଦେବପ୍ରିୟ ପ୍ରାଚୀନ ଧର୍ମଶାସ୍ତ୍ରାନୁମୋଦିତ ଓ ନିର୍ଦ୍ଦିଷ୍ଟ କାଳରେ ଅନୁଷ୍ଠିତ ବ୍ରତ, ପୂଜା, ହୋମ, ଉପବାସ, ପ୍ରାୟଶ୍ଚିତ୍ତ ପ୍ରଭୃତିର ଉପାଦେୟତା ଓ ଫଳପ୍ରଦତା ଅସ୍ୱୀକାର କରି ବୌଦ୍ଧଧର୍ମ ସମ୍ମତ 'ଧର୍ମ ମଙ୍ଗଳ' ସମୂହର ଉତ୍କର୍ଷ, ଉପାଦେୟତା ଓ 'ମହାଫଳତ୍ୱ' ପ୍ରଚାର କରିଛନ୍ତି । ଏଥିରେ ମଧ୍ୟ ସେ ଯୁଗରେ ପ୍ରଚଳିତ ଦାସତ୍ୱ ପ୍ରଥାର ନିନ୍ଦାବାଦ କରାଯାଇଛି ।

### ଦଶମ ଅନୁଶାସନ –

ଦଶମ ଅନୁଶାସନରେ ଅଶୋକଙ୍କ ଯଶୋଲିପ୍ସା କିପରି ଚରିତାର୍ଥ ହେବ ତାହାର ଉଲ୍ଲେଖ କରାଯାଇଛି । ଯେତେ ମହତ୍‌ଲୋକ ହେଲେ ମଧ୍ୟ ଯଶୋଲିପ୍ସା ଅଳ୍ପାଧିକ ପରିମାଣରେ ତାହାର ହୃଦୟକୁ ଅଧିକାର କରିଥାଏ । ତେଣୁ ଇଂରେଜୀରେ ଏକ ପ୍ରବଚନ ଅଛି — "The last weakness of man is for fame". ଅଶୋକ ମଧ୍ୟ ତାଙ୍କର ଏହି ଦୁର୍ବଳତା କଥାକୁ ସ୍ୱୀକାର କରିଛନ୍ତି । କିନ୍ତୁ ସେ ଲେଖିଛନ୍ତି ପ୍ରଜାବର୍ଗଙ୍କ ଐହିକ ଓ ପାରତ୍ରିକ ସୁଖଲାଭ ଦ୍ୱାରା ଯଦି ତାଙ୍କର ଯଶୋଲିପ୍ସା ସଫଳ ହୋଇପାରିବ ତେବେ ସେ ସେଥିପାଇଁ ତାଙ୍କର ସମସ୍ତ ଶକ୍ତି ଓ ସମସ୍ତ ନିୟୋଗ କରିବା ପାଇଁ ସର୍ବଦା ପ୍ରସ୍ତୁତ ଅଛନ୍ତି । କିନ୍ତୁ ତାଙ୍କର ଶକ୍ତି ସୀମାବଦ୍ଧ । ତେଣୁ ସେ ପ୍ରକୃତ ପୁଞ୍ଜିକୁ ଅନୁରୋଧ କରିଛନ୍ତି ଯେ, କ୍ଷୁଦ୍ର ଓ ମହତ୍ ସକଳ ପ୍ରଜାଙ୍କର ପ୍ରଗାଢ଼ ପରିଶ୍ରମ ଓ ଏକାନ୍ତ ନିଷ୍ଠା ବିନା କେବଳ ତାଙ୍କର ବିପୁଳ ପ୍ରୟାସ ଦ୍ୱାରା ପ୍ରଜାବର୍ଗଙ୍କ ଐହିକ ଓ ପାରତ୍ରିକ ସୁଖଲାଭ କାମନା ପୂର୍ଣ୍ଣ ହେବନାହିଁ । ଏହି ଧର୍ମଲିପିରେ ପ୍ରଜାବତ୍ସଳ ଦେବପ୍ରିୟଙ୍କର ନିଜର କୋଟି କୋଟି ପ୍ରଜାଙ୍କୁ ଆନ୍ତରିକ ଓ ମର୍ମସ୍ପର୍ଶୀ ନିବେଦନ ପ୍ରକଟିତ ହୋଇଅଛି ।

### ଏକାଦଶ ଅନୁଶାସନ – *

ଏକାଦଶ ଅନୁଶାସନରେ 'ଧର୍ମଦାନ'ର ମହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । 'ବିଦ୍ୟାଦାନ' ପରି 'ଧର୍ମଦାନ' ଅତି ମହତ୍ । ବୌଦ୍ଧ ଧର୍ମକୁ

* ଧଉଳି ପାହାଡରେ ଅଶୋକଙ୍କ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅନୁଶାସନ ଖୋଦିତ ହୋଇ ନ ଥିଲେ ମଧ୍ୟ ଅଶୋକ ଯୁଗୀୟ ଓଡ଼ିଶାର ଇତିହାସ ଜାଣିବା ପାଇଁ ତ୍ରୟୋଦଶ ଅନୁଶାସନର ଏକାନ୍ତ ଗୁରୁତ୍ୱ ଥିବାରୁ ଏହି ତିନୋଟି ସମ୍ବନ୍ଧରେ ଏଠାରେ ଆଲୋଚନା କରାଗଲା ।

ବିଭିନ୍ନ ମତ ସମ୍ବନ୍ଧରେ ଲୋକମାନଙ୍କୁ ଶିକ୍ଷା ଦେଇ ସେମାନଙ୍କ ମଧ୍ୟରେ ଧର୍ମ ସମ୍ବନ୍ଧୀୟ ଐକ୍ୟ ସ୍ଥାପନ 'ଧର୍ମଦାନ'ର ଲକ୍ଷ୍ୟ ରୂପେ ଗୃହୀତ ହୋଇଛି । ଅଶୋକଙ୍କ ମତରେ ଏହା ସାଧୁ ଏହା କର୍ତ୍ତବ୍ୟ, ଏହା ଇହଲୋକରେ ପରମ ସୁଖ ଓ ପରଲୋକରେ ଅନନ୍ତ ପୁଣ୍ୟ ପ୍ରଦାନ କରେ ।

## ଦ୍ୱାଦଶ ଅନୁଶାସନ —

ଦ୍ୱାଦଶ ଅନୁଶାସନରେ ଅଶୋକଙ୍କ 'ସର୍ବଧର୍ମ ସମନ୍ୱୟ' ମତ ଘୋଷିତ ହୋଇଅଛି । ସେ ଲେଖିଛନ୍ତି "ଦେବପ୍ରିୟ ପ୍ରିୟଦର୍ଶୀ ନାନାବିଧ ଦାନ ଓ ବିବିଧ ପ୍ରକାର ସମ୍ମାନ ପ୍ରଦର୍ଶନ ଦ୍ୱାରା ସର୍ବଧର୍ମାବଲମ୍ବୀ ପରିବ୍ରାଜକ (ସନ୍ନ୍ୟାସୀ) ଓ ଗୃହସ୍ଥମାନଙ୍କ ସନ୍ତୋଷବିଧାନ କରୁଛନ୍ତି । ସେ ସର୍ବଧର୍ମର ଶ୍ରୀବୃଦ୍ଧି କାମନା କରନ୍ତି । ଏହାର ପ୍ରଧାନ ଉପାୟ ବାକ୍ ସଂଯମ । କାରଣ ସାମାନ୍ୟ ସାମାନ୍ୟ ବିଷୟରେ ନିଜ ଧର୍ମର ମହାତ୍ମ୍ୟ ବର୍ଣ୍ଣନା ଓ ପର ଧର୍ମର ନିନ୍ଦା ଦ୍ୱାରା ଆତ୍ମସମ୍ମାନ ଓ ଜ୍ଞାନର ଅଭାବ ପରିଲକ୍ଷିତ ହୁଏ । କେତେକ ବିଶେଷତ୍ୱ ଯୋଗୁଁ ପ୍ରତ୍ୟେକ ଧର୍ମ ନାନାଭାବରେ ପ୍ରଶଂସାର୍ହ । ବାକ୍‌ସଂଯମ ଦ୍ୱାରା ସ୍ୱ ଧର୍ମର ଉନ୍ନତି ଓ ଉପକାର ସାଧିତ ହୁଏ । ଏହାର ବିପରୀତ ଆଚରଣ ଫଳେ ନିଜ ଧର୍ମର ପରଧର୍ମର କ୍ଷତି ଓ ପରଧର୍ମର ଅପକାର ସାଧିତ ହୁଏ । ଯେ ନିଜ ଧର୍ମ ପ୍ରତି ପ୍ରଗାଢ଼ ଅନୁରାଗ ଯୋଗୁଁ ନିଜ ଧର୍ମର ଗୌରବଜ୍ଞାନ ଓ ପରଧର୍ମର ନିନ୍ଦାବାଦ କରେ, ସେ ନିଜ ଧର୍ମର ଘୋର ଅନିଷ୍ଟ ସାଧନ କରେ । ସର୍ବଧର୍ମ ପ୍ରତି ମୈତ୍ରୀ ଭାବ ପ୍ରଦର୍ଶନ ଉତ୍କୃଷ୍ଟ କାର୍ଯ୍ୟ । ଅନ୍ୟ ଧର୍ମାବଲମ୍ବୀଙ୍କ ଠାରୁ ତାଙ୍କ ଧର୍ମ ବିଷୟ ଶୁଣ ଓ ତାଙ୍କୁ ନିଜ ଧର୍ମ ବିଷୟରେ ଅନେକ କଥା ଶୁଣାଅ । ତାଙ୍କର ଇଚ୍ଛା ସକଳ ଧର୍ମାବଲମ୍ବୀ ଲୋକ ବିଦ୍ୱାନ ଓ ସୁଖୀ ହୁଅନ୍ତୁ ।"

ଅଶୋକଙ୍କ ରାଜତ୍ୱ କାଳରେ ଭାରତରେ ବ୍ରାହ୍ମଣ୍ୟ ଧର୍ମ, ବୌଦ୍ଧ ଧର୍ମ ଓ ଜୈନ ଧର୍ମ — ଏହି ତିନୋଟି ପ୍ରଧାନ ଧର୍ମ ଥିଲା । ସେ ନିଜର କାର୍ଯ୍ୟକଳାପ ଦ୍ୱାରା ଏହି ତିନି ଧର୍ମ-ସମ୍ପ୍ରଦାୟ ମଧ୍ୟରେ ସଦ୍ଭାବ ଓ

ମୈତ୍ରୀ ପ୍ରତିଷ୍ଠା ପାଇଁ ଯତ୍ନପରୋନାସ୍ତି ଉଦ୍ୟମ କରିଥିଲେ । ସେ ସମୟରେ ବ୍ରାହ୍ମଣ୍ୟ ଧର୍ମର ଗୁରୁ ଓ ବୌଦ୍ଧଧର୍ମ ପ୍ରଚାରକ ଶ୍ରମଣମାନଙ୍କ ମଧ୍ୟରେ କେତେକ ପରିମାଣରେ ବିଦ୍ୱେଷ ଭାବ ଥିଲା । ଏହା ଦୂର କରିବା ପାଇଁ ଅଶୋକ ତାଙ୍କର ବିଭିନ୍ନ ଧର୍ମଲିପିରେ, ଯଥା - ତୃତୀୟରେ ବ୍ରାହ୍ମଣ ଓ ଶ୍ରମଣମାନଙ୍କ ସେବା ଶୁଶ୍ରୂଷା, ଚତୁର୍ଥରେ ସେମାନଙ୍କୁ ଭକ୍ତି ପ୍ରଦର୍ଶନ, ପଞ୍ଚମରେ ବ୍ରାହ୍ମଣମାନଙ୍କ ହିତ ସୁଖବୃଦ୍ଧି, ଅଷ୍ଟମରେ ଶ୍ରମଣ ଓ ବ୍ରାହ୍ମଣମାନଙ୍କ ଦର୍ଶନ ଓ ସେମାନଙ୍କୁ ଦାନ, ନବମ ଓ ଏକାଦଶରେ ସେମାନଙ୍କୁ ଦାନର ମହତ୍ତ୍ୱ ବାରମ୍ବାର ପ୍ରଚାର କରିଥିଲେ ।

ସେ ବୌଦ୍ଧ ହେଲେ ମଧ୍ୟ ବୈଦିକ ଧର୍ମର ରକ୍ଷକ ବ୍ରାହ୍ମଣମାନଙ୍କୁ ଯଥୋଚିତ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ଦାନ ଦ୍ୱାରା ସେ-ମାନଙ୍କ ଅର୍ଥାଭାବ ଦୂର କରିବା ପାଇଁ ସର୍ବଦା ଚେଷ୍ଟିତ ଥିଲେ ଓ ସେମାନଙ୍କ ହିତ ସାଧନ ତାଙ୍କର କାମ୍ୟ ଥିଲା । ସେ ଜୈନଧର୍ମାବଲମ୍ବୀ 'ଆଜୀବକ' ନାମକ ସନ୍ନ୍ୟାସୀମାନଙ୍କ ନିବାସ ନିମିତ୍ତ ବିହାର ପ୍ରଦେଶସ୍ଥ ଗୟାଜିଲ୍ଲାର 'ବାରବାର' ପର୍ବତରେ 'ନ୍ୟଗ୍ରୋଧ ଗୁହା', 'ଖଲତିକଗୁହା' ଓ 'ସୁପ୍ରିୟଗୁହା' ନାମକ ତିନୋଟି ଗୁହା ଖୋଳାଇ ଥିବା ପ୍ରତ୍ୟେକ ଗୁହାରେ ଥିବା ଅଶୋକ ଲିପିରୁ ଜଣାଯାଏ । ତେଣୁ ଅଶୋକ ବୈଦିକ ଧର୍ମ ଓ ଜୈନ ଧର୍ମାବଲମ୍ବୀମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ବିଭିନ୍ନ ଉପାୟ ଅବଲମ୍ବନ କରିଥିଲେ । ତାଙ୍କର ଧର୍ମନୀତି ସପ୍ତମ ଅନୁଶାସନର ପ୍ରାରମ୍ଭରେ ଘୋଷିତ ହୋଇଅଛି । ଯଥା— "ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଇଚ୍ଛା କରନ୍ତି ସର୍ବତ୍ର ସକଳ ଧର୍ମାବଲମ୍ବୀ ସୁଖ ଶାନ୍ତିରେ ବାସ କରନ୍ତୁ ।" ସେ ବଳ ପ୍ରୟୋଗ ଦ୍ୱାରା ବୌଦ୍ଧଧର୍ମ ପ୍ରଚାର କରିବା ପାଇଁ ଉଦ୍ୟମ କରି ନ ଥିଲେ । ସେ ଦୟା, ଦାକ୍ଷିଣ୍ୟ, ବଦାନ୍ୟତା, କ୍ଷମା ଓ ଅସାଧାରଣ ମହାନୁଭବତା ପ୍ରଦର୍ଶନ କରି ଶାକ୍ୟମୁନିଙ୍କ ଧର୍ମ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରିଥିଲେ ।

## ତ୍ରୟୋଦଶ ଅନୁଶାସନ—

କଳିଙ୍ଗ ଯୁଦ୍ଧର ଘୋର ବର୍ବରତାମୟ ନରହତ୍ୟା ଓ ଧ୍ୱଂସଲୀଳା ଦର୍ଶନରେ ଅନୁତାପାନଳରେ ଦଗ୍ଧ ହୋଇ ଦେବପ୍ରିୟ ପ୍ରିୟଦର୍ଶୀ

ସମଗ୍ର ପୃଥିବୀରେ 'ଧର୍ମ ବିଜୟ' ବା ବୌଦ୍ଧଧର୍ମର ଅହିଂସା ମତର ପ୍ରଚାର ପାଇଁ କପରି ନିଜର ସମସ୍ତ ଶକ୍ତି, ସାମର୍ଥ୍ୟ ଓ ସମସ୍ତ ବିନିଯୋଗ କରିଥିଲେ ତାହା ତାଙ୍କର ତ୍ରୟୋଦଶ ଅନୁଶାସନରେ ମର୍ମସ୍ପର୍ଶୀ ଭାଷାରେ ବର୍ଣ୍ଣିତ ହୋଇଅଛି ।

ନୂତନ ବିଜିତ ବିଦ୍ରୋହଭାବାପନ୍ନ କଳିଙ୍ଗବାସୀଙ୍କ ହୃଦୟରେ ଅଶାନ୍ତି ଓ ଅସନ୍ତୋଷ ସୃଷ୍ଟି କରିବା ଆଶଙ୍କାରେ ଅଶୋକ ନିଜର କଳିଙ୍ଗ ବିଜୟ ବୃତ୍ତାନ୍ତ ଧଉଳି ଓ ଯଉଗଡ଼ ପାହାଡ଼ ବ୍ୟତୀତ ଅନ୍ୟ ପାଞ୍ଚଟି ପାହାଡ଼ରେ ଉତ୍କୀର୍ଣ୍ଣ କରିଥିଲେ । ଏହା ତାଙ୍କର ଦୂରଦର୍ଶିତାର ପରିଚାୟକ । କାରଣ ସବୁ ଯୁଗରେ ଦିଗ୍‌ବିଜୟୀ ନରପତିଗଣ ସ୍ୱ ସ୍ୱ ବିଜୟ ସ୍ମୃତିକୁ ବିଜିତ ରାଜ୍ୟର ପ୍ରକୃତିପୁଞ୍ଜଙ୍କ ମନରେ ବଦ୍ଧମୂଳ କରିବା ପାଇଁ ତଥା ନିଜ ରାଜ୍ୟରେ ପ୍ରଚାର ନିମିତ୍ତ ବିଜୟ ସ୍ତମ୍ଭ, ବିଜୟ ପ୍ରାସାଦ ପ୍ରଭୃତି ନିର୍ମାଣ କରି ସେଥିରେ ନିଜର ବିଜୟ ପ୍ରଶସ୍ତିକୁ ଗର୍ବ-ବ୍ୟଞ୍ଜକ ଭାଷାରେ ଲିପିବଦ୍ଧ କରୁଥିଲେ । କିନ୍ତୁ ଦେବପ୍ରିୟ ଏହି ଚିରାଚରିତ ପ୍ରଥା ଅବଲମ୍ବନ ନ କରି କଳିଙ୍ଗ ବିଜୟ ଜନିତ ତାଙ୍କର ହୃଦୟର ଗଭୀର ଦୁଃଖ ଓ ଅନୁଶୋଚନା ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ସମଗ୍ର ଜଗତ ସମ୍ମୁଖରେ ପ୍ରଚାର କରିଥିଲେ ।

ଭୀଷଣ ରକ୍ତପାତ ଓ ନରହତ୍ୟା ଦ୍ୱାରା ସେ କଳିଙ୍ଗ ଦେଶକୁ ଜୟ କରିଥିବାରୁ ଏହି ବିଜୟକୁ ସେ ପ୍ରକୃତ ବିଜୟ ବୋଲି ମନେକରୁ ନ ଥିଲେ । ପରନ୍ତୁ ଏହା ପରେ 'ଧର୍ମ ବିଜୟ' ବା ବୌଦ୍ଧଧର୍ମ ପ୍ରଚାର ଦ୍ୱାରା ସମଗ୍ର ଜଗତରେ ସାର୍ବଜନୀନ ମୈତ୍ରୀ, ଅହିଂସା ଓ ଶାନ୍ତି ପ୍ରତିଷ୍ଠା ପୂର୍ବକ ଜନସମାଜକୁ ଐହିକ ଓ ପାରତ୍ରିକ ସୁଖ ପ୍ରଦାନ କରିବା ପାଇଁ ସେ ଯତ୍ନପରେଗନାସ୍ତ ଉଦ୍ୟମ ଚଳାଇଥିଲେ । ତାଙ୍କର ଏହି ଅଭୂତପୂର୍ବ 'ଧର୍ମବିଜୟ' ଜମ୍ବୁଦ୍ୱୀପ ଅନ୍ତର୍ଗତ ଭାରତ ମଧ୍ୟରେ ସୀମାବଦ୍ଧ ନ ଥିଲା । ତାଙ୍କ ଦ୍ୱାରା ସହସ୍ର ସହସ୍ର ଶ୍ରମଣ ଓ ଭିକ୍ଷୁ 'ଧର୍ମବିଜୟ'ର ବାର୍ତ୍ତା ପ୍ରଚାର ପାଇଁ ଭାରତ ବାହାରେ ଆଫଗାନିସ୍ଥାନ, ପାରସ୍ୟ ଓ ବହୁ ଦୂରବର୍ତ୍ତୀ ସିରିଆ, ମାସିଡନ, ମିଶର, ସାଇରିନ୍, ଏପିରସ୍ ପ୍ରଭୃତି ଗ୍ରୀକ୍ ରାଜ୍ୟମାନଙ୍କୁ ପ୍ରେରିତ ହୋଇଥିଲେ । ଏହି 'ଧର୍ମବିଜୟ' ଯୋଗୁଁ

ଦେବପ୍ରିୟ ପ୍ରିୟଦର୍ଶୀ ଆଜି ସମଗ୍ର ପୃଥିବୀର ଇତିହାସରେ, ଅମର, ଅଜର ଓ ଚିରସ୍ମରଣୀୟ ।

## ଚତୁର୍ଦ୍ଦଶ ଅନୁଶାସନ —

ଅଶୋକଙ୍କ ପୂର୍ବରୁ କୌଣସି ଭାରତୀୟ ନରପତି ପ୍ରସ୍ତର ଗାତ୍ରରେ ଶିଳାଫଳକରେ, ଗୁହା ମଧ୍ୟରେ ବା ବୃହତ୍ ଶୈଳଖଣ୍ଡରେ ପ୍ରଜାମାନଙ୍କ ମଧ୍ୟରେ ବହୁଳ ପ୍ରଚାର ଉଦ୍ଦେଶ୍ୟରେ ଏପରି ଶତ ଶତ ଲିପି ଖୋଦନ ପ୍ରଣାଳୀ କରି ନ ଥିଲେ । ତାଙ୍କର ଏହି ଅଭୂତପୂର୍ବ ଲିପିଖୋଦନ ଦ୍ୱାରା ସୁଦୂର ଉତ୍ତର-ପଶ୍ଚିମ ସୀମାନ୍ତବର୍ତ୍ତୀ କପର୍ଦ୍ଦଗିରି, ଉତ୍ତରରେ ଚିରତୁଷାରାଚ୍ଛନ୍ନ ହିମାଳୟର ପାଦଦେଶରେ ଅବସ୍ଥିତ 'କଲସୀ' ପର୍ବତ ଓ ଶାକ୍ୟମୁନିଙ୍କ ପବିତ୍ର ଜନ୍ମପୀଠ 'ଲୁମ୍ବିନୀ' ଗ୍ରାମ; ପୂର୍ବରେ ମହୋଦଧିର 'ତମାଳ-ତାଳୀ-ବନ-ରାଜି-ନୀଳା' ବେଳାଭୂମିର ପଶ୍ଚାତ୍ ଭାଗରେ ଅବସ୍ଥିତ 'ଧଉଳୀ ପର୍ବତ' ଓ ଯୌଗଡ଼ ପର୍ବତ; ପଶ୍ଚିମରେ ଆରବସାଗରର ଉତ୍ତାଳ-ତରଙ୍ଗ-ମାଳା ବିଧୌତ 'ସୁପାର' ପୋତାଶ୍ରୟ, ସୁଦୂର ଦକ୍ଷିଣ ପ୍ରାନ୍ତସ୍ଥିତ ସୁବର୍ଣ୍ଣଗିରି ଏକ ସର୍ବଭାରତୀୟ ଏକତା ସୂତ୍ରରେ ଆବଦ୍ଧ ହୋଇଥିଲା ।

ସେହି ସୁଦୂର ଅତୀତରେ ମୁଖ୍ୟତଃ ବ୍ରାହ୍ମୀବର୍ଣ୍ଣମାଳାରେ ଲିଖିତ ପାଲି (ପ୍ରାକୃତ) ଭାଷାକୁ ବିଭିନ୍ନ ଅଞ୍ଚଳର ଭାଷାଗତ ପାର୍ଥକ୍ୟ ସତ୍ତ୍ୱେ ବୌଦ୍ଧଧର୍ମ ପ୍ରଚାରର ମାଧ୍ୟମ ରୂପେ ପ୍ରୟୋଗ କରି ସେ ସମଗ୍ର ଭାରତବାସୀଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ବିପୁଳ ପ୍ରୟାସ କରିଥିଲେ । ତାଙ୍କର ଏହି ମହତ୍ କାର୍ଯ୍ୟଫଳରେ ସମଗ୍ର ଭାରତରେ ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ଜନଜାଗରଣ ଘଟିଥିଲା । ବିଭିନ୍ନ ପ୍ରାନ୍ତର ଭାଷାଗତ ଓ ଧର୍ମମତର ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ସମଗ୍ର ଭାରତର ଐତିହ୍ୟ, ପରଂପରା ଓ ସଂସ୍କୃତି ଯେ ମୌଳିକ ଐକ୍ୟ ଉପରେ ପ୍ରତିଷ୍ଠିତ; ସେ ତାଙ୍କର ଏହି ବିବିଧ କାର୍ଯ୍ୟକଳାପ ଦ୍ୱାରା ପ୍ରତିପାଦିତ କରିଥିଲେ । ସମଗ୍ର ଭାରତବର୍ଷର ସାଂସ୍କୃତିକ ଏକତାର ପ୍ରଥମ ଓ ମୁଖ୍ୟ ପ୍ରତିଷ୍ଠାତା ରୂପେ ଅଶୋକ ଭାରତବାସୀଙ୍କର ଚିରସ୍ମରଣୀୟ ।

# ଷଷ୍ଠ ଅଧ୍ୟାୟ

## ଧଉଳୀ ଅନୁଶାସନ

( ମୂଳ, ସଂସ୍କୃତ ଓ ଓଡ଼ିଆ ଅନୁବାଦ )

ତୋଷଲୀ ବା ଧଉଳୀ ଅଶୋକଙ୍କ ସମୟରେ ପ୍ରାକ୍ତନିକ ଉତ୍କଳ ବା ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା । ଧଉଳୀ ପାହାଡ଼ର ଅଶ୍ୱତ୍ଥାମା ନାମକ ପର୍ବତ ଖଣ୍ଡରେ ଅଶୋକଙ୍କର ଏକାଦଶ ଅନୁଶାସନ ଓ କଳିଙ୍ଗ ଅନୁଶାସନ ମୌର୍ଯ୍ୟଯୁଗର ବ୍ରାହ୍ମୀ ବର୍ଣ୍ଣମାଳାରେ ଖୋଦିତ ହୋଇଅଛି । ଗଞ୍ଜାମର ଋଷିକୁଲ୍ୟା ନିକଟବର୍ତ୍ତୀ ଆସିକା ନାମକ ସ୍ଥାନ ସମୀପରେ କଳିଙ୍ଗର ଅନ୍ୟତମ ନଗର ସମାପ ବା ଯୌଗଡ଼ ଅବସ୍ଥିତ ଥିଲା । ସେଠାରେ ମଧ୍ୟ ଧଉଳୀର ଏକାଦଶ ଅନୁଶାସନ ଖୋଦିତ ହୋଇଅଛି । କିନ୍ତୁ ସେଠାରେ ଥିବା କଳିଙ୍ଗ ଅନୁଶାସନ ଧଉଳୀର କଳିଙ୍ଗାନୁଶାସନ ଠାରୁ ସାମାନ୍ୟ ପୃଥକ୍ । ଓଡ଼ିଶାର ଶିକ୍ଷିତ ସମାଜର ଅବଗତି ନିମିତ୍ତ ଏହି ଅନୁଶାସନ ମାନଙ୍କର ମୂଳ ଓ ସ୍ୱର୍ଗତ ପଣ୍ଡିତ ମହାମହୋପାଧ୍ୟାୟ ସଦାଶିବ ଶର୍ମାଙ୍କ ପ୍ରଦତ୍ତ ସଂସ୍କୃତ ଅନୁବାଦ ଦିଆଗଲା । ସାଧାରଣଙ୍କର ଅବବୋଧ ନିମିତ୍ତ ସେଗୁଡ଼ିକର ଓଡ଼ିଆ ଅନୁବାଦ ମଧ୍ୟ ପ୍ରଦତ୍ତ ହେଲା ।

### ପ୍ରଥମ ଅନୁଶାସନ

—ମୂଳ —

(୧) ଇୟଂ ଧଂମଲିପି × × × ×* ସିପଟସି ଦେବାନଂ ପିଏଦସିନା ପିୟଦସିନା ଲିଖିତା ହିଦା ନା କିଛି ଜୀବଂ ଆଲଭିତୁ ପଜୋହିତ

---

* ଇୟଂ ଧଂମଲିପି ପରେ ୪ଟି ଅକ୍ଷର ପଢ଼ି ହେଉନାହିଁ । ଏହା ପର୍ବତର ନାମ, "ଖୁରଭସି" ହେବା ସମ୍ଭବପର ।

ବଯେ । (୨) ନୋପିଚ ସମାଜେ କଚବସ୍ୟେ । ବହୁକାଷ୍ଟ ଦୋସା ସମାଜସା ଦେବାନଂ ପ୍ରିସ୍ୟେ ପ୍ରପୁଦସୀ ଲଜା ଦଖତ । ଅଥିପିଚୁ ଏକତ୍ରିୟା ସମାଜ ସାଧୁମତା ଦେବାନାଂ ପିସ୍ୟସା ପିପୁଦସିନେ ଲଜନେ ।

ପୁଲେ ମହାନସସି ଦେବାନଂ ପିପୁସା (୩) ପିପ୍ୟଦସିଷା ଲଜନେ ଅନୁଦବସଂ ବହୁନ ପାନସହସାନ ଆଲଭିୟିଂସୁ ସୁପଥାୟେ । ସେ ଅଜ ଯଦା ଇୟଂ ଧଂମଲିପୀ ଲେଖିତା, ତଦା ତଂନ ପ୍ୟେବ ପାନାନ ଆଲ-ଭିୟଂତ । (୪) ଦୁବେ ମଜୁଲା ଏକେ ମିଗ, ସେ ପିଚ ମିଗେ ନୋଧୁବେ । ଏତାନ ପିଚ ତନ ପାନାନ ଛୋ ନୋ ଅଲଭିୟିସନ୍ତ ।

## — ସଂସ୍କୃତାନୁବାଦ —

ଇୟଂ ଧର୍ମଲିପି ଦେବାନାଂପ୍ରିୟେଣ ପ୍ରିୟଦର୍ଶିନା ଲେଖିତା ଇହ ନକଶ୍ଚିଜ୍ଜୀବ ଆଲଭ୍ୟ ପ୍ରହୋତବ୍ୟଃ । ନାପିଚ ସମାଜ (୧) କର୍ତ୍ତବ୍ୟା । ବହୁକାନ ହି ଦୋଷାନ୍ ସମାଜସ୍ୟ ଦେବାନାଂ ପ୍ରିୟ ପ୍ରିୟ-ଦର୍ଶୀ ରାଜା ପଶ୍ୟତ । ସନ୍ତ୍ୟାପି ତୈକେ ସମାଜାଃ (୨) ସାଧୁମତା ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞଃ ।

ପୂର୍ବ ମହାନସେ ଦେବାନଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞୋଽନୁଦିବସଂ ବହୂନ ପ୍ରାଣସହସ୍ରାଣ୍ୟାଲପ୍ସତ । ସୂପାର୍ଥାୟ ତଦଦ୍ୟାପି ଯଦା ଇୟଂ

---

(୧) ପ୍ରଥମ ସମାଜର ଅର୍ଥ— ମେଲା, ମହୋତ୍ସବ, ଭୋଜି । ଏଥିରେ ମଦ୍ୟ-ମାଂସାଦ ବ୍ୟବହୃତ ହୁଏ । ଏଥିପାଇଁ ଜୀବବଧ ଆବଶ୍ୟକ; ତେଣୁ ଏହା ଅକରଣୀୟ ।

(୨) ଦ୍ୱିତୀୟ ସମାଜର ଅର୍ଥ— ଧର୍ମସମାଜ ବା ସାଧୁ ବା ବୌଦ୍ଧ ଶ୍ରମଣ-ମାନଙ୍କର ଏକତ୍ର ସମାବେଶ । ଏଠାରେ କେବଳ ଧର୍ମଚର୍ଚ୍ଚା ହୁଏ । ଅଶୋକ ଏହି ସମାଜର ପକ୍ଷପାତୀ ।

ଧର୍ମଲିପି ଲେଖିତା ତଦାହସ୍ପ ଏବ ପ୍ରାଣାଃ ଆଲଭ୍ୟନ୍ତେ ଦ୍ୱୌ ମସ୍ପୁରବେକୋ ମୃଗଃ । ସୋପିଚ ମୃଗଃ ନ ଧ୍ରୁବଃ । ଏତେଂପିଚ ହସ୍ପଃ ପଶ୍ଚାତ୍ ପ୍ରାଣାଃ ନାଲପ୍ସ୍ୟନ୍ତେ ।

## — ଓଡ଼ିଆ ଅନୁବାଦ —

ଏହି ଧର୍ମଲିପି ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ)ଙ୍କ ଆଦେଶରେ ଲିଖିତ ହୋଇଅଛି । ଏଠାରେ ଯଜ୍ଞ ପାଇଁ କୌଣସି ଜୀବବଧ ହେବ ନାହିଁ । କୌଣସି ସମାଜ ଅନୁଷ୍ଠିତ ହେବ ନାହିଁ । କାରଣ ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ)ଙ୍କ ମତରେ ସମାଜର ବହୁତଗୁଡ଼ଏ ଦୋଷ ଅଛି । କିନ୍ତୁ କେତେଗୁଡ଼ଏ ସମାଜ ଲୋକହିତକର ଓ ସାଧୁଜନ-ସମାଦୃତ ।

ଏହି ଧର୍ମଲିପି ଲେଖା ହେବା ପୂର୍ବରୁ ଅଶୋକଙ୍କ ରନ୍ଧନ-ଶାଳାରେ ପ୍ରତ୍ୟହ ସହସ୍ର ସହସ୍ର ଜୀବ ହତ ହେଉଥିଲେ । ବର୍ତ୍ତମାନ ଏହି ଧର୍ମଲିପି ଲେଖା ହେବା ପରେ ସୂପ (ତରକାରି) ପାଇଁ କେବଳ ତିନୋଟି ଜୀବ ମରୁ ହେଉଅଛି — ଦୁଇଟି ମୟୂର ଓ ଗୋଟିଏ ମୃଗ । ମୃଗବଧ ମଧ୍ୟ ଅନିଶ୍ଚିତ । ଭବିଷ୍ୟତରେ ଏହି ତିନୋଟି ଜୀବ ମଧ୍ୟ ବଧ ହେବ ନାହିଁ ।

## ଦ୍ୱିତୀୟ ଅନୁଶାସନ

### — ମୂଳ —

(୧) ସବତ ବିଜିତସି ଦେବାନାଂ ପିୟସ ପିୟଦସିନେ ଲାଜନେ ଯୋଚ ଅଂତା, ଅଥା ଚୋଡ଼ା, ପଂଡ଼ିୟା, ସାତିୟପୁତୋ, କେଳଲପୁତୋ, ତଂବପନି ଅଂତିୟୁକ ନାମ ଯୋନ ଲାଜା, (୨) ଯେଚ ଅଂନେସୋ ଅଂତିୟୋକସ ସାମଂତା ଲାଜାନେ ସବତ ଦେବାନଂ ପିୟେନ ପିୟ-ଦସିନା ଲାଜନେ ଦୁବେ ଚିକିସକା କଟା, ମନୁଷଚିକିସା ଚ ପସୁଚିକିସା ଚ । ଓସଧାନି (୩) ମୁନିସୋପଗାନି ଚ ପସୁ ଓପଗାନି ଚ ଅତତ ନଥି ସବତ ହାଲାପିତା ଚ ଲୋପାପିତାଚ । ଏବମେଇ ମୂଳାନିଚ ଫଳାନିଚ

ଅତତା ନଥି ସବତା ହାଲାପିତା ଚ (୮) ଲୋପାପିତା ଚ । ମଗେସୁ ଲୁଖାନି ଚ ଲୋପାପିତାନି । ଉଦପାନାନି ଖାନାପିତାନି ପଟିଭୋଗାୟେ ପସୁ ମୁନିସାନଂ ।

— ସଂସ୍କୃତାନୁବାଦ —

ସର୍ବତ୍ର ବିଜିତେ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞୋ ଯେଚାନ୍ତା ଯଥା (ଚୋଡ଼ାଃ, ପାଣ୍ଡ୍ୟାଃ, ସତ୍ୟପୁତ୍ରାଃ, କେରଳପୁତ୍ରା) (୧) ତାମ୍ରପର୍ଣ୍ଣୀ ଅନ୍ତିୟୋକୋ (୨) ନାମ ଯବନରାଜୋ ଯେଚାନ୍ୟେ ତସ୍ୟାନ୍ତି-ୟୋକସ୍ୟ ସାମନ୍ତରାଜାନଃ ସର୍ବତ୍ର ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞୋ ଦ୍ୱେ ଚିକିତ୍ସେ କୃତେ, ମନୁଷ୍ୟଚିକିତ୍ସା ଚ ପଶୁଚିକିତ୍ସା ଚ । (୩) ମନୁଷ୍ୟୋପଗାନି ପଶ୍ୱୋପଗାନି ଚ ଯତ୍ର ଯତ୍ର ନ ସନ୍ତି ସର୍ବତ୍ର ହାରପିତାନି ଚ ରୋପିତାନି ଚ ।

---

(୧) ଉକ୍ତ ସୀମାନ୍ତ ରାଜ୍ୟମାନ ଅଶୋକଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନ ଥିଲା । ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର, କେରଳପୁତ୍ର ପ୍ରଭୃତି କାବେରୀ ନଦୀର ଦକ୍ଷିଣରେ ଥିବା ପ୍ରାଚୀନ ତାମିଲ ରାଜ୍ୟ; ତାମ୍ରପର୍ଣ୍ଣୀ—ଲଙ୍କା ।

(୨) ଯବନରାଜ ଅନ୍ତିୟୋକ—(**Antiochos Theos**) ଅନ୍ତିୟକସ ଥିଓସ ନାମକ ଗ୍ରୀକ୍ ରାଜା ଅଶୋକଙ୍କ ସମୟରେ ସିରିଆର ଶାସନକର୍ତ୍ତା ଥିଲେ । ସେ ଅଶୋକଙ୍କର ମିତ୍ରରାଜା ଥିଲେ । ସେ ସମୟରେ **Ptolemy Philadelphos** ମିଶର ଦେଶର, ମଗସ୍ (**Magas**) ସାଇରିନ୍ (**Cyrene**) ରାଜ୍ୟର, **Antigonos Gonatos** ମାସିଡ଼ୋନିଆର ଓ **Alexander** ଏପିରସ (**Epirus**) ରାଜ୍ୟର ଯଥାକ୍ରମେ ଶାସନକର୍ତ୍ତା ଥିଲେ ।

(୩) ସେହି ପ୍ରାଚୀନ ଯୁଗରେ ସୁଦ୍ଧା ଭାରତରେ ପଶୁଚିକିତ୍ସା ପ୍ରଣାଳୀ ପ୍ରଚଳିତ ଥିଲା । ଏହା ଭାରତରୁ ଗ୍ରୀକ୍‌ଶାସିତ ରାଜ୍ୟମାନଙ୍କରେ ପ୍ରଚଳିତ ହୋଇଥିଲା ।

ଏବମେବ ମୂଲାନି ଚ ଫଲାନି ଚ ଯତ ତତ ନ ସନ୍ତି ସବତ ହାରାପିତାନି ଚ ରୋପିତାନି ଚ । ମାଗେଷୁ ବୃଛା ରୋପିତା । ଉଦପାନାନି ଚ ଖାନପିତାନି, ଉପଭୋଗାୟ ପଶୁମନୁସାନଂ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ) ବିଜିତ ପ୍ରଦେଶମାନଙ୍କରେ ଓ ସୀମାନ୍ତରାଜ୍ୟ ଯଥା ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର, କେରଳପୁତ୍ର, ତାମ୍ରପର୍ଣ୍ଣୀ ପ୍ରଭୃତି ରାଜ୍ୟମାନଙ୍କରେ, ଯବନରାଜ ଅନ୍ତିୟୋକ ଓ ତାଙ୍କ ଅଧୀନସ୍ଥ ସାମନ୍ତ ନୃପତିମାନଙ୍କର ଦେଶମାନଙ୍କରେ ଦୁଇ ପ୍ରକାର ଚିକିତ୍ସାପ୍ରଣାଳୀ ପ୍ରଚଳନ କରିଛନ୍ତି — ମନୁଷ୍ୟଚିକିତ୍ସା ଓ ପଶୁଚିକିତ୍ସା । ଯେଉଁ ଯେଉଁ ସ୍ଥାନରେ ମନୁଷ୍ୟ ଓ ପଶୁଚିକିତ୍ସା ଉପଯୋଗୀ ଔଷଧ ନିମିତ୍ତ ଫଳମୂଳର ଅଭାବ ହେଉଛି, ସେଠାକୁ ଔଷଧ ବୃକ୍ଷମାନ ଅଣା ହୋଇ ରୋପିତ ହେଉଅଛି । ପଶୁ ଓ ମନୁଷ୍ୟମାନଙ୍କର ସୁଖ ଓ ସୁବିଧା ପାଇଁ ପଥ-ପାଶ୍ୱରେ ବୃକ୍ଷ ରୋପିତ ଓ କୂପ ଖୋଦିତ ହେଉଅଛି ।

## ତୃତୀୟ ଅନୁଶାସନ

### — ମୂଳ —

(୯) ଦେବାନଂ ପିୟେ ପିୟଦସି ଲାଜା ହେବଂ ଆହା, ଦୁବା-ଦସବସାଭିସିତେନ ମେ ଇୟଂ ଅନାପୟିତେ, ସବତ ବିଜିତସି ମମ ୟୁତା, ଲଜୁକେଚ ପାଦେସିକେ (୧୦) ପଚଂସୁ ପଂଚସୁ ବସେସୁ ଅନୁସୟାନଂ ନିଖମାବୁ । ଅଥା ଅଂନାୟେ ପିକଂମନେ ହେବଂ ଇମାୟେ ଧଂମାନୁସ-ଥିୟେ, ସାଧୁ ମାତାପିତିସୁ ସୁସୁସା; ମିତସଂଥୁତ (୧୧) ନାତିସୁ ଚ ବଂଭନ ସମନେହି ସାଧୁ ଦାନେ, ଜୀବେସୁ ଅନାଲଂଭେ ସାଧୁ, ଅପବୟତା ଅପଭଂଡ଼ତା ସାଧୁ, ପଲିସା ପିଚ, ଯୁତାନି ଆନପୟିସତି ହେତୁତେ ଚ ବିୟଂଜନ (ନତେଚ) ।

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଏବମାହ । ଦ୍ୱାଦଶବର୍ଷାଭିଷିକ୍ତେନ ମୟା ଇଦମାଜ୍ଞପ୍ତଂ ସର୍ବତ୍ର ବିଜିତେ ମମ 'ଯୁକ୍ତାଃ' 'ରଜ୍ଜୁକାଃ' 'ପ୍ରାଦେଶିକାଶ୍ଚ (୧) ପଞ୍ଚସୁ ପଞ୍ଚସୁ ବର୍ଷେଷୁ ଅନୁସଂଯାନ (୨) ନିଷ୍କ୍ରମନ୍ତୁ । ଏତସ୍ମୈ ଅର୍ଥାୟ ଅସ୍ୟୈ ଧର୍ମାନୁଶିଷ୍ଟ୍ୟୈ ଯଥା ଅନ୍ୟସ୍ମୈ ଅପି କର୍ମଣେ । ସାଧୁଃ ମାତାପିତ୍ରୋଃ ଶୁଶ୍ରୂଷା, ମିତ୍ରସଂସ୍ତୁତଜ୍ଞାତୀନାଂ ଚ ବ୍ରାହ୍ମଣଶ୍ରମଣାନାଂ ଚ ସାଧୁ ଦାନଂ । ଜୀବାନାମନାଲମ୍ଭଃ (୩) ସାଧୁଃ । ଅଳ୍ପବ୍ୟୟତା ଅଳ୍ପଭାଣ୍ଡତା (୪) ସାଧୁଃ । ପରିଷଦୋଽ (୫) ପି ଚ ଯୁକ୍ତାନ୍ 'ଗଣନେ' (୬) ଆଜ୍ଞାପୟିଷ୍ୟନ୍ତି ହେତୁତଶ୍ଚ ବ୍ୟଞ୍ଜନତଶ୍ଚ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ କହୁଛନ୍ତି – ରାଜ୍ୟାଭିଷେକର ଦ୍ୱାଦଶ ବର୍ଷ ପରେ ରାଜା ଆଦେଶ ଦେଇଥିଲେ ଯେ, ମୋର ବିଜିତ ସାମ୍ରାଜ୍ୟ ମଧ୍ୟରେ ସର୍ବତ୍ର 'ଯୁକ୍ତ' 'ରଜୁକ' ଓ 'ପ୍ରାଦେଶିକମାନେ ପ୍ରତି ପାଞ୍ଚ ବର୍ଷରେ ଧର୍ମାନୁଶାସନ (ଧର୍ମଶିକ୍ଷା) ନିମିତ୍ତ ଓ ଅନ୍ୟାନ୍ୟ କାର୍ଯ୍ୟୋପଲକ୍ଷରେ ଭ୍ରମଣ କରିବେ ।

ମାତା, ପିତା, ବନ୍ଧୁ, ଜ୍ଞାତିକୁଟୁମ୍ବ, ବ୍ରାହ୍ମଣ ଓ ଶ୍ରମଣମାନଙ୍କର ସେବା ଶୁଶ୍ରୂଷା ମଙ୍ଗଳ କାର୍ଯ୍ୟ । ଦାନ, ଜୀବଦୟା, ଅଳ୍ପବ୍ୟୟତା, ଅଳ୍ପଭାଣ୍ଡତା (ଅଳ୍ପ ସଞ୍ଚୟ) ଅଶେଷ ସାଧୁକାର୍ଯ୍ୟ । ପରିଷଦ (ମନ୍ତ୍ରୀସଭା) ଯୁକ୍ତ ଓ ଗଣନମାନଙ୍କୁ (ଧର୍ମର ହେତୁ) ଓ ବ୍ୟଞ୍ଜନ ରକ୍ଷା ନିମିତ୍ତ ଆଜ୍ଞା ପ୍ରଦାନ କରିବେ ।

---

(୧) 'ଯୁକ୍ତ', 'ରଜ୍ଜୁକ', 'ପ୍ରାଦେଶିକ' ପ୍ରଭୃତି ରାଜକର୍ମଚାରୀ — ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରେ ଏ ସମସ୍ତ ରାଜକର୍ମଚାରୀମାନଙ୍କର ନାମ ମିଳେ ।
(୨) ଅନୁସଂଯାନ — ପର୍ଯ୍ୟଟନ (୩) ଅନାଲମ୍ଭ — ଅହିଂସା (୪) ଅଳ୍ପଭାଣ୍ଡତା — ଅଳ୍ପ ସଞ୍ଚୟ (୫) ପରିଷଦ — ରାଜ୍ୟଶାସନ ନିମିତ୍ତ ଗଠିତ ମନ୍ତ୍ରୀସଭା (୬) ଗଣନ — ଏକ ପ୍ରକାର ରାଜକର୍ମଚାରୀ ।

# ଚତୁର୍ଥ ଅନୁଶାସନ

## — ମୂଳ —

(୧୨) ଅତିକଂତଂ, ଅଂତଲଂ ବହୂନି ବସସତାନି ବଢ଼ିତେବ ପାନାଲଂଭେ ବିହିସା ଚ ଭୂତାନାଂ, ନାତିସୁ ଅସଂପଟିପତି, ସମନବାଭନେସୁ ଅସଂପଟିପତି । (୧୩) ସେ ଅଜ ଦେବାନଂପିୟସ ପିୟଦସିନେ ଲାଜିନେ ଧଂମଚଲନେନ ଭେଲିଘୋସେ ଅହୋ ଧଂମଘୋସେ ବିମାନ ଦସନଂ (୧୪) ହଥୀନି ଅଗିକଂଧାନି ଅଂନାନି ଚ ଦିବ୍ୟାନି (୧୫) ଲୁପାନି ଦସୟିତୁ ମୁନିସାନଂ । ଅଦିସେ ବହୂହି ବସସତେହି ନୋ ହୂତ-ପୁଲୁବେ ତାଦିସେ ଲାଜିନେ (ଅଜାବତତେ ଦେବାନାଂ ପିୟସ ପିୟଦସିନେ ଲାଜିନେ) ଧମାନୁସଥିୟା ଅନାଲଂଭେ ପାନାନାଂ, ଅବିହିଂସା ଭୂତାନାଂ, ନାତିସୁ ସଂପଟିପତି, ବଂଭନ ସମନାନଂ ସଂପଟିପତି, ମାତାପିତୁ ସୁସୂସା, ବୁଢ଼ସୁସୂସା ଏଷ ଅଂନେ ଚ ବହୁବିଧେ (୧୬) ଧଂମ ଚଲନେ ବଢ଼ିୟେ ବଢ଼ୟିସତି ଚେବ ଦେବାନଂ ପିୟେ ପିୟଦସୀ ଲାଜା । (ଇମଂ) ଧଂମ ଚଲନଂ । ଇମଂ ପୁତାପି ଚ ନତି, ପନତିଚ ଦେବାନାଂ ପିୟଦସିନେ ଲାଜିନେ (୧୭) ପବଢ଼ୟିସଂତି, ସେବ ଧଂମଚଲନଂ, ଇମଂ ଆକପଂ ଧଂମସି ସୀଲସି ଚ ଚିଥିତୁ ଧଂମଂ ଅନୁସାସିସଂତି । ଏସହି ସେଥେ କଂମେ ଯା ଧଂମାନୁଶାସନ । ଧଂମ ଚଲନେ ପିଚୁ ନୋହୋତି ଅସୀଲସ । (୧୮) ସେଇ ମସ ଅଥସ ବୁଢ଼ୀ ଅହୀନି ଚ ସାଧୁ, ଏତାୟେ ଅଥାୟେ ଇୟଂ ଲିଖିତେ, ଇମସ ଅଥସ ବଢ଼ୀ ୟୁଜଂତୁ, ହୀନି ଚ ମା ଆଲୋଚୟିସୁ, (୧୯) ଦୁବାଦସ ବସାନି ଅଭିସିତସ ଦେବାନାଂ ପିୟସ ପିୟଦସିନେ ଲାଜିନେ ଯଂ × × × × × × ଲିଖିତେ ।

## — ସଂସ୍କୃତାନୁବାଦ —

ଅତିକ୍ରାନ୍ତମନ୍ତରଂ ବହୂନି ବର୍ଷଶତାନି ବର୍ଦ୍ଧିତ ଏବ ପ୍ରାଣାଲମ୍ଭୋ, ବିହିଂସା ଚ ଭୂତାନାଂ ଜ୍ଞାତୀନାମସମ୍ପ୍ରତିପତ୍ତିଃ, ଶ୍ରମଣବ୍ରାହ୍ମଣାନାମସମ୍ପ୍ରତିପତ୍ତିଃ । ତଦଦ୍ୟ ଦେବାନାଂପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞୋ ଧର୍ମ-

ଚରଣେନ ଭେରୀଘୋଷୋଽଥବା ଧର୍ମଘୋଷୋ ବିମାନଦର୍ଶନାନି ହସ୍ତିନୋଽଗ୍ନିସ୍କନ୍ଧା (୧) ଅନ୍ୟାନି ଚ ଦିବ୍ୟାନି ରୂପାଣି ଦର୍ଶୟିତ୍ୱା ଜନସ୍ୟ । ଯାଦୃଶଂ ବହୁଭିର୍ବର୍ଷଶତୈର୍ନ ଭୂତପୂର୍ବଂ ତାଦୃଶମଦ୍ୟ ବର୍ଦ୍ଧିତୋ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞୋ ଧର୍ମାନୁଶିଷ୍ଟ୍ୟା ଅନାରମ୍ଭଃ ପ୍ରାଣାନାମ-ବିହିଂସା ଭୂତାନାଂ ଜ୍ଞାତିଷୁ ସମ୍ପ୍ରତିପତ୍ତି (୨) ବ୍ରାହ୍ମଣଶ୍ରମଣାନାଂ ସମ୍ପ୍ରତିପତ୍ତି-ର୍ମାତାପିତ୍ରୋଃ ଶୁଶ୍ରୂଷା, ବୃଦ୍ଧଶୁଶ୍ରୂଷ ଏତଚ୍ଚାନ୍ୟଚ୍ଚ ବହୁବିଧଂ ଧର୍ମାଚରଣଂ ବର୍ଦ୍ଧିତଂ । ବର୍ଦ୍ଧୟିଷ୍ୟତି ଚୈବ ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜେଦଂ ଧର୍ମାଚରଣଂ । (୩) ପୁତ୍ରାଶ୍ଚ ନପ୍ତାରଶ୍ଚ ପ୍ରନପ୍ତାରଶ୍ଚ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନୋ ରାଜ୍ଞଃ ପ୍ରବର୍ଦ୍ଧୟିଷ୍ୟନ୍ତି ଚୈବ ଧର୍ମାଚରଣମିଦଂ ଯାବତ୍ କଳ୍ପଂ ଧର୍ମେ ଶୀଳେ (୪) ଚ ତିଷ୍ଠନ୍ତୋ ଧର୍ମ ମନୁଶାସିଷ୍ୟନ୍ତି । ଏତଦ୍ଧି ଶ୍ରେଷ୍ଠଂ କର୍ମ ଯଦ୍ଧର୍ମାନୁଶାସନଂ, ଧର୍ମାଚରଣମପି ନ ଭବତ୍ୟଶୀଳସ୍ୟ । ତଦସ୍ୟାର୍ଥସ୍ୟ ବୃଦ୍ଧିରହାନିଶ୍ଚ ସାଧୁଃ । ଏତସ୍ମୈ ଅର୍ଥାୟେଦଂ ଲେଖିତଂ । ଅସ୍ୟାର୍ଥସ୍ୟ ବୃଦ୍ଧିଂ ଯୁଞ୍ଜନ୍ତୁ ହାନିଂ ଚ ମା ଆଲୋଚୟନ୍ତୁ । ଦ୍ୱାଦଶବର୍ଷା-ଭିଷିକ୍ତେନ ଦେବାନାଂ ପ୍ରିୟେଣ ପ୍ରିୟଦର୍ଶିନା ରାଜ୍ଞା ଲେଖିତଂ ।

## — ଓଡ଼ିଆ ଅନୁବାଦ —

ବହୁ ଶତାବ୍ଦୀ ହେଲା ଜୀବବଧ, ପ୍ରାଣୀହିଂସା, ଜ୍ଞାତି କୁଟୁମ୍ବ ବ୍ରାହ୍ମଣ ଶ୍ରମଣମାନଙ୍କର ଅନାଦର ବଢ଼ି ଯାଇଅଛି । ତେଣୁ ବର୍ତ୍ତମାନ ଧର୍ମନିଷ୍ଠ ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଅଶୋକ ଧର୍ମରକ୍ଷା ନିମିତ୍ତ ଭେରୀ-ଘୋଷ, ଧର୍ମଘୋଷ, ବିମାନଦର୍ଶନ, ହସ୍ତୀ, ଅଗ୍ନିସ୍କନ୍ଧ ଓ ଅନ୍ୟାନ୍ୟ ନାନାବିଧ ଦିବ୍ୟରୂପ ଲୋକମାନଙ୍କୁ ଦେଖାଉଛନ୍ତି । ପ୍ରିୟଦର୍ଶୀଙ୍କ ଧର୍ମା-

---

(୧) ଅଗ୍ନିସ୍କନ୍ଧା—ବାଣ ବା ଆତସବାଜି ।

(୨) ସମ୍ପ୍ରତିପତ୍ତି—ଆଦର, ଅସମ୍ପ୍ରତିପତ୍ତି—ଅନାଦର ।

(୩) ଧର୍ମାଚରଣ—ବୌଦ୍ଧଧର୍ମର ନିୟମ ମାନଙ୍କର ପରିପାଳନ ।

(୪) ଶୀଳ—ବୌଦ୍ଧଗ୍ରନ୍ଥରେ ବର୍ଣ୍ଣିତ ଚରିତ୍ର ରକ୍ଷାର ନିୟମାବଳୀ ।

ନୁଶାସନ ଦ୍ୱାରା ଲୋକମାନଙ୍କ ମଧ୍ୟରେ ଜୀବବଧ ଓ ପ୍ରାଣୀହିଂସା ହ୍ରାସଲାଭ କରିଅଛି । ଜ୍ଞାତିକୁଟୁମ୍ବମାନଙ୍କ ପ୍ରତି ଆଦର, ବ୍ରାହ୍ମଣ ଶ୍ରମଣମାନଙ୍କ ପ୍ରତି ଭକ୍ତି ମାତାପିତାଙ୍କର ଶୁଶ୍ରୂଷା ଓ ଗୁରୁଜନମାନଙ୍କର ସେବା ବୃଦ୍ଧି ପ୍ରାପ୍ତ ହୋଇଅଛି । ଏହିପରି ବହୁବର୍ଷ ହେଲା ଲୁପ୍ତ ହୋଇଥିବା ଧର୍ମର ପୁନରୁଦ୍ଧାର ହୋଇଅଛି ଏବଂ ନାନାପ୍ରକାର ଧର୍ମାଚରଣ ବୃଦ୍ଧିପ୍ରାପ୍ତ ହୋଇଅଛି । ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଏହି ଧର୍ମଚର୍ଯା କ୍ରମଶଃ ବଢ଼ାଇବେ । ଦେବପ୍ରିୟ ପ୍ରିୟଦର୍ଶୀଙ୍କର ପୁତ୍ର, ନାତି, ପଣନାତିମାନେ ଯାବତ୍କଳ୍ପ ଧର୍ମ ଓ ଶୀଳ ପ୍ରତିପାଳନ କରି ଧର୍ମାନୁଶାସନ ଓ ଧର୍ମାଚରଣ କରିବେ । ଧର୍ମାନୁଶାସନ ଜଗତରେ ଶ୍ରେଷ୍ଠକାର୍ଯ୍ୟ । ଶୀଳହୀନ ଲୋକ ଧର୍ମାଚରଣ କରିବାକୁ ସମର୍ଥ ନୁହେ; ତେଣୁ ଏହାର ବୃଦ୍ଧି ଓ ରକ୍ଷଣ କର୍ତ୍ତବ୍ୟ । ଏହି ହେତୁରୁ ଲିପି ଖୋଦିତ ହୋଇଅଛି । ସେମାନେ ଏହାର ବିକାଶ ସାଧନ କରନ୍ତୁ ଓ ଧର୍ମହାନି ନ ଦେଖନ୍ତୁ । ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ) ରାଜ୍ୟ ଅଭିଷେକର ଦ୍ୱାଦଶ ବର୍ଷରେ ଏହି ଆଜ୍ଞା ପ୍ରଚାର କଲେ ।

## ପଞ୍ଚମ ଅନୁଶାସନ

### —ମୂଳ—

(୨୦) ଦେବାନଂ ପିୟେ ପିୟଦସି ଲାଜା ହେବଂ ଆହା, କୟାନେ ଦୁକାଲେ, ଏ ଆଦିକଲେ କୟାନସ ସେ ଦୁକଲଂ କଲେ । ତସେମେ ବହୁକେ କୟାନେ କଟେ ତଂ ଯେମେ ପୁତା ବ (୨୧) ନତିବ ଫଲଂଚ ତେନ ଯେ ଅପତିୟେ ମେ ଆବକପଂ ତଥା ଅନୁବତିସତି ସେ ସୁକଟଂ କଛଂତି । ଏ ହେତ ଦେସଂ ପି ହାପୟିସତି ସେ ଦୁକଟଂ କଛତି, ପାପଛ ନାମ (୨୨) ସୁପଦାଲୟେ ସେ ଅତିକଂଅତଲଂ ନୋ ହୂତପୁଲୁବା ଧଂମମହାମତା ନାମ ସେତେଦସବସାଭିସିତେନ ମେଧମମହାମତା ନାମ-କଟା, ତେ ସବପାସଡ଼େସୁ (୨୩) ବିୟାପଟା, ଧଂମାଧିଥାଇନେ ଧଂମ ବଢ଼ିୟେ ହିତସୁଖାୟେ ଚ ଧଂମୟୁସେ ଯୋନକଂବୋ ଜ ଗଂଧାଲେସୁ ଲଥି-କପିତନିକେସୁ ଏବାପି ଅଂନେ ଆପଲଂତ ଭଟିମୟେସୁ ବାଭନଭିୟେସୁ

ଅନାଥେସୁ ମହାଲକେସୁ ଚ ହିତସୁଖାୟେ ଧଂମଯୁତାୟେ ଅପଲି-
ବୋଧାୟେ ବିୟାପଟା, ସେ ବଂଧନ ବଧସ ପଟିବିଧାନାୟେ ଅପଲିବୋ-
ଧାୟେ ମୋଖାୟେ ଚ, (୨୫) ଇୟଂ ଅନୁବଂଧ ପଜାବତିବ କଟାଭି-
କାଲେତି ବ ମହାଲକେତି ବ ବିୟପଟା, ସେ ହିଦ ଚ ବାହିଲେସୁ ଚ
ନଗଲେସୁ ସବେସୁ ଓଲୋଧନେସୁ ମେ ଏବାପି ଭାତିନଂ ମେ ଭଗିନୀନଂ ବ
(୨୬) ଅନେସୁ ବା ନାତିସୁ ସବତ ବିୟାପଟା । ଏ ଇୟଂ ଧଂମ ନିସିତେତି
ବ ଧଂମାଧିଥାନେତି ବ ଦାନସଯୁତେ ବ ସବପୁଥବିୟଂ (ସବତ ବିଜିତସି)
ଧଂମଯୁତସି ବିୟାପଟା, ଇମେ ଧଂମମହାମାତା । ଇମାୟେ ଅଥାୟେ
(୨୭) ଇୟଂ ଧଂମଲିପି ଲେଖିତା ଚିଲଥିତିକା ହୋତୁ ତଥା ଚ ମେ
ପଜା ଅନୁବତତୁ ।

— ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଆହ, କଲ୍ୟାଣଂ ଦୁଷ୍କରଂ । ଯୋ ଯଦିକୁର୍ଯ୍ୟାତ୍ କଲ୍ୟାଣସ୍ୟ ସ ଦୁଷ୍କରଂ କରୋତି । ତନ୍ମୟା ବହୁକଲ୍ୟାଣଂ କୃତଂ ତନ୍ମମ ପୁତ୍ରାଶ୍ଚ ନପ୍ତାରଶ୍ଚ ପରଂ ଚ ତାନ ହି ଯାନ୍ୟପତ୍ୟାନି ମେ ଯାବତ୍କଳ୍ପଂ ତଥାନୁବର୍ତ୍ତିଷ୍ୟନ୍ତେ ତତ୍ର ସୁକୃତଂ କରିଷ୍ୟନ୍ତି । ଯସ୍ତ୍ୱ-ତ୍ରାଦେଶମପି ହାପୟିଷ୍ୟତି ସ ଦୁଷ୍କୃତଂ କରିଷ୍ୟତି । ପାପଂ ହି ନାମ ସୁପ୍ରଚରଂ ।

ଅତିକ୍ରାନ୍ତମନ୍ତରଂ ନ ଭୂତପୂର୍ବା ଧର୍ମମହାମାତ୍ରା ନାମ । ତ୍ରୟୋଦଶବର୍ଷାଭିଷିକ୍ତେନ ମୟା ଧର୍ମମହାମାତ୍ରାଃ କୃତାସ୍ତେ ସର୍ବ-ପାଷଣ୍ଡେଷୁ ବ୍ୟାପୃତାଃ, ଧର୍ମାଧିଷ୍ଠାନାୟ ଚ ଧର୍ମବୃଦ୍ଧ୍ୟା ହିତସୁଖାୟ ଚ ଧର୍ମଯୁକ୍ତସ୍ୟ ଯବନକମ୍ବୋଜଗାନ୍ଧାରାଣାଂ ରାଷ୍ଟ୍ରିକପିତିନିକାନାଂ ଏବମପ୍ୟ-ନ୍ୟେଽପରାନ୍ତା ଭୃତ୍ୟେଷୁ ବ୍ରାହ୍ମଣେଷୁ ଅନାଥେଷୁ ବୃଦ୍ଧେଷୁ ହିତସୁଖାୟ ଧର୍ମଯୁକ୍ତସ୍ୟ ଅପରିବାଧାୟ ଚ ବ୍ୟାପୃତାସ୍ତେ ବନ୍ଧନବଧସ୍ୟ ପ୍ରତିବିଧାନାୟ ଅପରିବାଧାୟ ମୋକ୍ଷାୟ ଚ । ଏବ ମନୁବନ୍ଧଂ ପ୍ରଜାବାନ୍ ଇତି ବା କୃତାଭିକାର ଇତି ବା ମହାନ୍ ଇତି ବ୍ୟାପୃତାସ୍ତେ ଇହ ବାହ୍ୟେଷୁ ଚ ନଗରେଷୁ ସର୍ବେଷୁ ଅବରୋଧନେଷୁ ଭ୍ରାତୃଣାଂଚାନ୍ୟେ ଭଗିନୀନାମେ

ଗୃହ୍ୟନ୍ୟେ ଜ୍ଞାତିଷୁ ସର୍ବତ୍ର ବ୍ୟାପୃତାଃ । ଏବଂ ଧର୍ମନିଶ୍ରିତା ଇତି ବା ଦାନସଂଯୁକ୍ତା ଇତି ବା ସର୍ବତ୍ର ବିଜିତେ ମମ 'ଧର୍ମଯୁକ୍ତା' ବ୍ୟାପୃତାସ୍ତେ ଧର୍ମମହାମାତ୍ରାଃ । ଏତସ୍ମୈ ଅର୍ଥାୟ ଇୟଂ ଧର୍ମଲିପି ଲେଖିତା ଚିରସ୍ଥିତିକା ଭବତୁ । ତଥା ମେ ପ୍ରଜା ଅନୁବର୍ତ୍ତନ୍ତାନ୍ ।

— ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରାଜା କହୁଛନ୍ତି—କଲ୍ୟାଣ (ଲୋକମାନଙ୍କର ମଙ୍ଗଳ କରିବା) ଅତୀବ ଦୁଷ୍କର । ଯେ ପରର କଲ୍ୟାଣ କରେ, ସେ ଦୁଃସାଧ୍ୟ ସାଧନ କରେ । ତେଣୁ ମୁଁ ପ୍ରଜାଙ୍କର ବହୁତ କଲ୍ୟାଣ କରୁଅଛି । ମୋର ପୁଅ, ନାତି, ପଣନାତି ଓ ତାଙ୍କର ପରବର୍ତ୍ତୀ ବଂଶଧରମାନେ କଳ୍ପାନ୍ତ ପର୍ଯ୍ୟନ୍ତ ସେହିପରି କଲ୍ୟାଣବ୍ରତୀ ହେବେ । ଯେ ମୋର ଆଦେଶ ଲଂଘନ କରିବ, ସେ ପାପଭାଗୀ ହେବ । ପାପ ସହଜରେ ପ୍ରଚୁର ଲାଭ କରେ ।

ବହୁକାଳ ଗତ ହୋଇଗଲାଣି; କିନ୍ତୁ ପୂର୍ବେ 'ଧର୍ମମହାମାତ୍ର' ନାମକ କୌଣସି କର୍ମଚାରୀ ନ ଥିଲେ । ସର୍ବପ୍ରଥମ ସେମାନେ ମୋ ଦ୍ୱାରା ସର୍ବଧର୍ମାବଲମ୍ବୀ ଲୋକମାନଙ୍କ ମଧ୍ୟରେ ନିଯୁକ୍ତ ହୋଇଛନ୍ତି । ସେମାନେ ଧର୍ମାଧିଷ୍ଠାନ, ଧର୍ମବୃଦ୍ଧି, ଧାର୍ମିକମାନଙ୍କର ହିତ ଓ ସୁଖବିଧାନ ନିମିତ୍ତ ଯବନ, କମ୍ବୋଜ, ଗାନ୍ଧାର, ରାଷ୍ଟ୍ରିକ, ପିତିନିକ ପ୍ରଭୃତି ସୀମାନ୍ତ ପ୍ରଦେଶମାନଙ୍କରେ ବ୍ୟାପୃତ ହୋଇଛନ୍ତି । ଭୃତ୍ୟ, ବ୍ରାହ୍ମଣ, ଅନାଥ, ବୃଦ୍ଧମାନଙ୍କ ହିତ ଓ ସୁଖନିମିତ୍ତ, ଧାର୍ମିକମାନଙ୍କର ରକ୍ଷା, ବନ୍ଧନ (କାରାବାସ) ଓ ବଧ ପ୍ରାଣହତ୍ୟା)ର ନିବାରଣ ନିମିତ୍ତ, ଲୋକମାନଙ୍କର ରକ୍ଷା ଓ ମୋକ୍ଷବିଧାନ ପାଇଁ ସେମାନେ ନିଯୁକ୍ତ ହୋଇଛନ୍ତି । ଏଥି ନିମିତ୍ତ ସପରିବାର ବାସ କରୁଥିବା, ରାଜକାର୍ଯ୍ୟ ଶେଷ କରିଥିବା ପ୍ରାପ୍ତବୟସ୍କ ଲୋକମାନେ ସାମ୍ରାଜ୍ୟର ନାନାସ୍ଥାନରେ, ସୀମାନ୍ତନଗର, ରାଣୀହଂସପୁର ମାନଙ୍କରେ ପୁରୁଷ, ସ୍ତ୍ରୀ ଓ ଜ୍ଞାତିମାନଙ୍କୁ ପୃଥକ୍ ପୃଥକ୍ ଭାବରେ ଧର୍ମଶିକ୍ଷା ଦେବା ନିମିତ୍ତ ନିଯୁକ୍ତ ହୋଇଛନ୍ତି । ଧାର୍ମିକ ଦାନଶୀଳ 'ଧର୍ମମହାମାତ୍ର' ଓ

'ଧର୍ମଯୁକ୍ତ'ମାନେ ମୋର ବିଜିତ ରାଜ୍ୟରେ ସର୍ବତ୍ର ନିଯୁକ୍ତ ହୋଇଛନ୍ତି । ଉକ୍ତ ଉଦ୍ଦେଶ୍ୟ ସାଧନପାଇଁ ଏହି ଧର୍ମଲିପି ଖୋଦିତ ହୋଇଅଛି । ଏହା ଚିରସ୍ଥାୟୀ ହେଉ ଓ ମୋର ପ୍ରଜାମାନେ ଏହା ପରିପାଳନ କରନ୍ତୁ ।

## ଷଷ୍ଠ ଅନୁଶାସନ

### —ମୂଳ—

(୨୮) ଦେବାନଂ ପିୟେ ପିୟଦସୀ ଲାଜା ହେବଂ ଆହା— ଅତିକଂତଂ ଅଂତଲଂ ନୋ ହୂତପୁଲୁବେ ସବଂ କାଲଂ ଅଠକଂମେ ବ ପଟିବେଦନା ବାଯେ ମଯା କଟେ ସବଂ କାଲଂ (ଅଦ) ମାନସମେ (୨୯) ଓରୋଧନସି ଗଭାଗାଲସି ବଚସି ବିନୀତସି ଉୟାନସି ଚ ସବତ (ପଟିବେଦକା) ପଟି ବେଦୟଂତୁ । ମେ ଜନସ ଅଠଂ କାଲଂମିହକଂ । (୩୦) ଅଂ ପିଚ କିଂଛି ମୁଖତେ ଆନପୟାମି (ହକଂ) ଦାପକଂ ବା ସାବକଂ ବା ଏବା (ପୁନ) ମହାମାତେହି, ଅତିୟାୟିକେ ଅଲେପିତେ ହୋତି ତସି ଅଠସି ବିବାଦେ ନିଝତି ସଂତଂ ପଲିସାୟ । (୩୧) ଆନଂ-ତଲୟଂ ପଟିବେଦେତବିୟେ ମେ ସବତ ସବଂ କାଲଂ ହେବଂ ମେ ଅନୁସଥେ (ଆନପୟିତେ ମମୟା), ନଥି ହିମେ ତୋସେ ଉଠାନସ (ଅ) ଠସଂତୀରନାୟ ଚ କଟବିୟମତେ ହି ମେ ସବ ଲୋକହିତେ, (୩୨) ତସ ଚ ପୁନ ଇୟଂ ମୂଲେ ଉଠାନେ ଚ ଅଠସଂତୀରନା ଚ । ନଥି ହି କଂମତାଲ ସବ ଲୋକ-ହିତେନ । ଅଂ ଚ (କି) ଛି ପଲକମାମି ହକଂ କିତି ଭୂତାନଂ ଆନନିୟଂ ଯେ ହଂବେ (୩୩) ହିଦ ଚ କାନି ସୁଖୟାମି ପଲତ ଚ ସ୍ୱଗଂ ଆଲାଧୟିଂତୁ ତି । ଏତାୟେ (ଅଠାୟେ) ଇୟଂ ଧମଂଲିପୀ ଲିଖିତା ଚିଲ ଠିତିକା ହୋତୁ, ତଥା ଚ ପୁତା ପପୋତା ମେ ପଲକମଂତୁ ।

### — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଏବମାହ, ଅତିକ୍ରାନ୍ତମନ୍ତରଂ ନ ଭୂତପୂର୍ବଂ ସର୍ବଂକାଲଂ ଅର୍ଥକର୍ମ ବା ପ୍ରତିବେଦନା ବା । ତନ୍ମୟା ଏବଂ

କୃତଂ ସର୍ବକାଳଂ ଅଦତୋ ମେ ଅବରୋଧନେ (୧) ଗର୍ଭାଗାରେ (୨) ବର୍ଚସି (୩) ବିନୀତେ (୪) ଉଦ୍ୟାନେ ସର୍ବତ୍ର ପ୍ରତିବେଦକା ଅର୍ଥଂ ଜନସ୍ୟ ପ୍ରତିବେଦୟନ୍ତୁ ମେ । ସର୍ବତ୍ର ଜନସ୍ୟାର୍ଥଂ କରିଷ୍ୟାମ୍ୟହମ । ଯଦପି ଚ କିଂଚନ ମୁଖତଃ ଆଜ୍ଞାପୟାମ୍ୟହଂ ଦାପକଂ ବା ଶ୍ରାବକଂ (୫) ବା ଯଦ୍ୱା ପୁନର୍ମହାମାତ୍ରୈଃ ଅତ୍ୟାୟିକେ ଆଜ୍ଞପ୍ତଂ ଭବତି ତସ୍ମିନ୍ ଅର୍ଥାୟ ବିବାଦେ ନିର୍ଧ୍ୟାତୌ (୬) ବା ସନ୍ତ୍ୟାଂ ପରିଷଦା ଆନନ୍ତର୍ଯେଣ ପ୍ରତିବେଦୟିତବ୍ୟଂ ମେ ସର୍ବତ୍ର ସର୍ବକାଳଂ । ଏବଂ ଆଜ୍ଞପ୍ତଂ ମୟା । ନାସ୍ତି ହି ମେ ତୋଷୋ ବା ଉତ୍ଥାନାୟ ସନ୍ତୀରଣାୟ ଚ । କର୍ତ୍ତବ୍ୟଂ

---

(୧) ଅବରୋଧନ—ରାଣୀହଂସପୁର ।

(୨) ଗର୍ଭାଗାର—ଭିତର ଘର (Private room.)

(୩) ବର୍ଚ୍ଚ—ଏହି ଶବ୍ଦ ଅତି ପ୍ରାଚୀନ; ଏହାର ବ୍ୟବହାର ବର୍ତ୍ତମାନ କ୍ୱଚିତ୍ ଦେଖାଯାଏ । ଏହାର ନିମ୍ନୋକ୍ତ ଅର୍ଥ ଦିଆଯାଇଛି । ବର୍ଚ— Lavatory (i) A place for washing. (ii) A mediaeval stone-table in monasteries on which bodies were washed before burial. iii) A stone basin in monasteries for washing before meals or religious exercises. (iv) A stable. (v) A latrine. ତନ୍ମଧ୍ୟସ୍ଥ ଅର୍ଥଟି ଉପଯୁକ୍ତ ବିଚାର କରି ଗ୍ରହଣ କଲି ।

(୪) ବିନୀତ—ଏହାକୁ କେତେକ 'ଯାନବାହନ' ବୋଲି କହନ୍ତି । ବୌଦ୍ଧ ଗ୍ରନ୍ଥରେ ଏହା gymnasium ଅର୍ଥରେ ବ୍ୟବହୃତ ହୋଇଅଛି । ବିନୟ—Drill or Discipline ।

(୫) ଦାପକ—Grant (ବେତନ) । ଶ୍ରାବକ — Proclamation (ଘୋଷଣା) । ଶେଷ ଦୁଇଟି ଶବ୍ଦ କର୍ମଗୃଷ୍ଟ ଅର୍ଥରେ ବ୍ୟବହୃତ ହୋଇଅଛି ।

(୬) ବିବାଦେ ନିର୍ଧ୍ୟାତୌ ବା— At the stage of discussion or contemplation by the court.

ମତଂ ହି ମେ ସର୍ବଲୋକହିତଂ । ତସ୍ୟ ପୁନରେତନ୍ମୂଳ ମୁତ୍ଥାନଂ ଅର୍ଥସନ୍ତରଣଂ ଚ । ନାସ୍ତି ହି କର୍ମାନ୍ତରଂ ସର୍ବଲୋକହିତତ୍ୱେନ । ଯତ୍କିଞ୍ଚିତ୍ ପରାକ୍ରମାମି କିମିତି ଭୂତାନାମାନୃଣ୍ୟ ମେୟାମ୍ ଇହ ଚ କାଂଶ୍ଚିତ୍ ସୁଖୟାମି ପରତ୍ର ଚ ସ୍ୱର୍ଗମାରାଧୟନ୍ତୁ । ତଦେତସ୍ମା ଅର୍ଥାୟେୟଂ ଧର୍ମଲିପିର୍ଲେଖିତା ଚିରସ୍ଥିତିକା ଭବତୁ । ତଥା ଚ ମେ ପୁତ୍ରାଃ ପ୍ରପୌତ୍ରାଃ ପରାକ୍ରମନ୍ତୁ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ) କହୁଛନ୍ତି – ବହୁକାଳ ହେଲା ରାଜକାର୍ଯ୍ୟ ଓ (ରାଜ୍ୟର) ବିବରଣୀମାନ (ମୋ ନିକଟକୁ) ପ୍ରେରିତ ହେଉ ନ ଥିଲା । ତେଣୁକରି ପ୍ରତିବେଦକ (ସମ୍ବାଦବାହକ) ରାଜଦୂତମାନେ ଭୋଜନଶାଳାରେ, ରାଣୀହଂସପୁରରେ, ଗର୍ଭାଗାର (ଭିତରଘରେ) ସ୍ନାନାଗାରରେ, ବର୍ଚ୍ଚରେ, ବ୍ୟାୟାମଗୃହରେ, ଉଦ୍ୟାନରେ ବା ଯେକୌଣସି ସ୍ଥାନରେ ମୋତେ ଯେପରି ପ୍ରଜାମାନଙ୍କର ବୃତ୍ତାନ୍ତ ଅବାଧରେ ଜଣାଇ ପାରନ୍ତି; ମୁଁ ତାହାର ବ୍ୟବସ୍ଥା କରିଛି । ପ୍ରଜାଙ୍କର ଗୁହାରି ବୁଝିବା ପାଇଁ ମୁଁ ସର୍ବଦା ପ୍ରସ୍ତୁତ । ମୁଁ ଦାପକ (ବେତନ ଦେବା ନିମିତ୍ତ ନିଯୁକ୍ତ କର୍ମଚାରୀ) ଓ ଶ୍ରାବକ (ରାଜଘୋଷଣା ପ୍ରଚାର କରିବା ନିମିତ୍ତ ନିଯୁକ୍ତ କର୍ମଚାରୀ) ମାନଙ୍କୁ ଯେ କୌଣସି ମୌଖିକ ଆଦେଶ ଦେବି, ମହାମାତ୍ର-ମାନେ ଅତ୍ୟାୟିକ (ଆକସ୍ମିକ ଘଟଣା, ଯଥା ବନ୍ୟା, ଗୃହଦାହ, ଦୁର୍ଭିକ୍ଷ ଇତ୍ୟାଦି) ସମୟରେ ଯେଉଁ ଆଦେଶ ଦେବେ, ସେ ସମ୍ବନ୍ଧରେ ସଙ୍ଘରେ ଆଲୋଚିତ ଓ ପ୍ରସ୍ତାବିତ ସମସ୍ତ ବିଷୟ ପରିଷଦ (ମନ୍ତ୍ରୀସଙ୍ଘ) ସାଙ୍ଗେ ସାଙ୍ଗେ ମୋତେ ସବୁବେଳେ ସବୁ ସ୍ଥାନରେ ଜଣାଇ ପାରିବେ । ମୁଁ ଏହିପରି ଆଦେଶ ଦେଇଛି । କେବଳ କର୍ତ୍ତବ୍ୟସାଧନ ପାଇଁ ସର୍ବଦା ପ୍ରସ୍ତୁତ ରହି ବା କର୍ତ୍ତବ୍ୟ ପାଳନ କରି ମୁଁ ସନ୍ତୋଷ ଲାଭ କରିପାରିବି ନାହିଁ । ସମସ୍ତ ସଂସାରର ହିତସାଧନ ମୋର ପ୍ରଧାନ କର୍ତ୍ତବ୍ୟ । କିନ୍ତୁ କାର୍ଯ୍ୟତତ୍ପରତା ଓ କର୍ତ୍ତବ୍ୟ ପାଳନ ଏହାର ମୂଳଭିତ୍ତି । ପ୍ରଜାଙ୍କର ମଙ୍ଗଳସାଧନ ବ୍ୟତୀତ ମୋର ଅନ୍ୟ କୌଣସି କାର୍ଯ୍ୟ ନାହିଁ । ମୋର

ଯାବଣ୍ଟସ୍ଥ କାର୍ଯ୍ୟ ପରେପକାର ନମିତ୍ତ । ଲୋକମାନଙ୍କର ଋଣରୁ ମୁକ୍ତିଲାଭ କରିବା ଏବଂ ଇହ ଓ ପରଲୋକରେ ସେମାନଙ୍କୁ ସୁଖ ପ୍ରଦାନ କରିବା ମୋର ପ୍ରତ୍ୟେକ କାର୍ଯ୍ୟର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟରେ ଲିଖିତ ଏହି ଧର୍ମଲିପି ଚିରସ୍ଥାୟୀ ହେଉ । ମୋର ପୁତ୍ରନାତିମାନେ ଏହିପରି ପରହିତବ୍ରତ ହୁଅନ୍ତୁ ।

## ସପ୍ତମ ଅନୁଶାସନ

### — ମୂଳ —

(୧) ଦେବାନଂପିୟେ ପିୟଦସୀ ଲଜା ସବତ ଇଛତି ସବ ପାସଡ଼ା ବସେବୁ, ସବେ ହିତେ ସୟମଂ ଭବସୁଧୀ ଚ ଇଛଂତି, ମୁନସା ଚ ।

(୨) ଉଗ୍ଗବୁଚ ଛଂଦା ଉଗ୍ଗବୁଚ ଲାଗ । ତେ ସବଂ ବା ଏକଂ ଦେସଂ ବ କଛଂତି । ବିପୁଲେପି ଚ ଦାନେ ଯସ ନଥି, ସୟମେ ଭାବସୁଧୀ (କିଟନତା ଦିଢ଼ଭତିତା) ଚ ନିଚେ ବାଢ଼ଂ ।

### — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ସର୍ବତ୍ରେଚ୍ଛତି ସର୍ବେ ପାଷଣ୍ଡା (୧) ବସେୟୁଃ । ସର୍ବେହି ତେ ସଂଯମଂ ଭାବଶୁଦ୍ଧିଂ ଚେଚ୍ଛନ୍ତି । ଜନସ୍ତୁ ଉଚ୍ଚାବଚ (୨) ଛନ୍ଦଃ (୩) ଉଚ୍ଚାବଚ ରାଗଃ । ତେ ସର୍ବ ମେକଦେଶଂ ବା (୪) କରିଷ୍ୟନ୍ତି । ବିପୁଳମପି ଚ ଦାନଂ ଯସ୍ୟ ନାସ୍ତି ସଂଯମୋ ଭାବଶୁଦ୍ଧିଃ କୃତଜ୍ଞତା ଦୃଢ଼ଭକ୍ତିତା ଚ ନିତ୍ୟା ବାଢ଼ମ୍ ।

---

(୧) ପାଷଣ୍ଡ—ଧର୍ମାବଲମ୍ବୀ । ହାଥିଗୁମ୍ଫା ଲେଖରେ ମଧ୍ୟ ଏହି ଶବ୍ଦ ଉକ୍ତ ଅର୍ଥରେ ବ୍ୟବହୃତ ହୋଇଅଛି ।

(୨) ଉଚ୍ଚାବଚ—ବିଭିନ୍ନ ପ୍ରକାରର ।

(୩) ଛନ୍ଦ—ଇଚ୍ଛା ।

(୪) ଏକ ଦେଶ—ଆଂଶିକଭାବରେ । ପରବର୍ତ୍ତୀକାଳରେ ପାଷଣ୍ଡ ଶବ୍ଦର ଅର୍ଥାବନତି ଘଟିଥିଲା । ଏହାର ଅର୍ଥ ହେଲା ଯେଉଁମାନେ ବେଦ ଓ ସ୍ମୃତି ବହିର୍ଭୂତ ଧର୍ମ ପାଳନ କରନ୍ତି ଅର୍ଥାତ୍, ଅଧାର୍ମିକ ଇତ୍ୟାଦି ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରଜା ଇଚ୍ଛା କରନ୍ତି—ସର୍ବତ୍ର ସର୍ବଧର୍ମା-ବଲମ୍ବୀମାନେ ବାସ କରନ୍ତୁ। ସମସ୍ତେ ସଂଯମ ଓ ଭାବଶୁଦ୍ଧି କାମନା କରନ୍ତି। ଭିନ୍ନ ଭିନ୍ନ ଲୋକଙ୍କର ଇଚ୍ଛା ଓ ଅନୁରାଗ ଭିନ୍ନ ଭିନ୍ନ ପ୍ରକାର। ସେମାନେ ତାହାର ପୂର୍ଣ୍ଣ ବା ଏକାଂଶ ସାଧନ କରି ପାରନ୍ତି। ବିପୁଳ ଦାନ ନ କଲେ ସୁଦ୍ଧା ପ୍ରତ୍ୟେକ ଲୋକର ସଂଯମ, ଭାବଶୁଦ୍ଧି, କୃତଜ୍ଞତା ଓ ଦୃଢ଼ଭକ୍ତି ଏକାନ୍ତ ଆବଶ୍ୟକ।

## ଅଷ୍ଟମ ଅନୁଶାସନ

### — ମୂଳ —

(୩) [ଅତି]କଂତଂ ଅଂତରଂ ରଜାନେ ବିହାରଯାତଂ ନାମ ନିଖମିସୁ। [ହିଦା] ମିଗବିୟା ଅଂନାନି ଚ ଏଦିସାନି ଅଭିରାମାନି ହୁବଂତି। ସେ ଦେବାନଂପିୟେ (୪) ପିୟଦସୀ ଲାଜା ଦସବସାଭିସିତେ [ସଂତଂ] ନିଖମି[ଥା] ସଂବୋଧି[ତେ]ନ—ତ ଧ[ମଯାତା]; ତତେସେ ହୋତି ସମନବାଭନାନଂ ଦସନେ ଚ ଦାନେ, ବୁଢ଼ାନଂ ଦସନେ ଚ (୫) ହିରଂନ ପିଟିବିଧାନେ ଚ ଜାନପଦସ ଜନସ ଦସନେ ଚ ଧଂମାନୁସଥୀ ଚ [ଧଂ]ମ [ପ] ଲିପୁଛା ଚ। ତଦୋପୟା ଏସ ଭୂୟେ ଅଭିଲାମେ ହୋତି। ଦେବାନଂପିୟସ ପିୟଦସିନେ ଲଜନେ ଭାଗେ ଅଂନେ।

### — ସଂସ୍କୃତାନୁବାଦ —

ଅତିକ୍ରାନ୍ତମନ୍ତରଂ ରଜାନଃ ବିହାରଯାତ୍ରାଂ ନାମ ନିରକ୍ରମସୁନ୍। ଇହ ମୃଗବ୍ୟା ଅନ୍ୟାନି ଚ ଈଦୃଶାନି ଅଭିରାମାଣି ଅଭବନ୍। ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରଜା ଦଶବର୍ଷାଭିଷିକ୍ତଃ ସନ୍ ନିରକ୍ରମୀତ୍ ସମ୍ବୁଦ୍ଧଃ। ତେନୈଷ ଧର୍ମଯାତ୍ରା। ଅତ୍ରେଦଂ ଭବତି ଶ୍ରମଣାନାଂ ବ୍ରାହ୍ମଣାନାଂ ଚ ଦର୍ଶନଂ ଚ ଦାନଂ, ଚ ବୃଦ୍ଧାନାଂ ଦର୍ଶନଂ ଚ ହିରଣ୍ୟପ୍ରତିବିଧାନେ ଚ,

ଜାନପଦସ୍ୟ ଜନସ୍ୟ ଦର୍ଶନଂ ଧର୍ମାନୁଶିଷ୍ଟିଶ୍ଚ ଧର୍ମପରିପୃଚ୍ଛା ଚ ତତୋଽପି ଯଃ ଏଷଃ ଭୂୟୋ ଅଭିରାମର୍ଭବତି ପ୍ରିୟସ୍ୟ ଦେବାନାଂ । ପ୍ରିୟଦର୍ଶିନଃ ରାଜ୍ଞଃ ଭାଗ୍ୟ ମନ୍ୟତ୍ର ।

## — ଓଡ଼ିଆ ଅନୁବାଦ —

ବହୁକାଳ ହେଲା ରାଜାମାନେ ବିହାର ଯାତ୍ରାରେ ବହିର୍ଗତ ହେଉଥିଲେ । ଏଥିରେ ସେମାନେ ମୃଗୟାଦି ନାନାବିଧ ମନୋଭିରାମ କାର୍ଯ୍ୟରେ ରତ ହେଉଥିଲେ । ଅଭିଷେକର ଦଶବର୍ଷ ପରେ ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ) ସମ୍ବୁଦ୍ଧ ହୋଇଥିଲେ (ବୌଦ୍ଧଧର୍ମ ଗ୍ରହଣ କରି ତତ୍ତ୍ୱଜ୍ଞାନ ଲାଭ କରିଥିଲେ) । ତେଣୁ ତାଙ୍କ ଦ୍ୱାରା ସର୍ବପ୍ରଥମେ ବିହାର ଯାତ୍ରା ପରିବର୍ତ୍ତରେ ଏହି ଧର୍ମଯାତ୍ରା ଅନୁଷ୍ଠିତ ହେଲା । ବର୍ତ୍ତମାନ ବ୍ରାହ୍ମଣ ଶ୍ରମଣମାନଙ୍କୁ ଦର୍ଶନ ଓ ଦାନ, ବୃଦ୍ଧମାନଙ୍କ ଦର୍ଶନ ଓ ସେମାନଙ୍କ ମଧ୍ୟରେ ସ୍ୱର୍ଣ୍ଣମୁଦ୍ରା ବଣ୍ଟନ, ଗ୍ରାମ୍ୟ ଲୋକମାନଙ୍କୁ ଦର୍ଶନ ପୂର୍ବକ ସେମାନଙ୍କୁ ଧର୍ମୋପଦେଶ ପ୍ରଦାନ ଓ ସେମାନଙ୍କ ସହିତ ଧର୍ମାଲୋଚନା ଇତ୍ୟାଦି କାର୍ଯ୍ୟରେ ଦେବପ୍ରିୟ ପ୍ରିୟଦର୍ଶୀ ରାଜାଙ୍କର ପ୍ରବଳ ଅନୁରାଗ ଜାତ ହୋଇଅଛି । ସେ ଉପରୋକ୍ତ କାର୍ଯ୍ୟମାନଙ୍କରେ ଗଭୀର ଆତ୍ମପ୍ରସାଦ ଲାଭ କରୁଛନ୍ତି । ତାଙ୍କର ଭାଗ୍ୟ ଅନ୍ୟପ୍ରକାର (ପୂର୍ବବର୍ତ୍ତୀ ରାଜାମାନଙ୍କ ଠାରୁ ତାଙ୍କର ଭାଗ୍ୟ ଅନ୍ୟ ଭାବରେ ଗଠିତ ହୋଇଥିଲା) ।

## ନବମ ଅନୁଶାସନ

### — ମୂଳ —

(୭) ଦେବାନଂ ପିୟେ ପିୟଦସୀ ଲାଜା ହେବଂ ଆହା । ଅଥିଜନେ ଉଚାବଚଂ ମଂଗଲଂ କଲେତି । ଆବାଧେସି [ଆ]ବା[ହସି] [ପ]-ଜୋପଦାୟେ ପବାସସି (୭) ଏତାୟେ ଅନାୟେ ଚ ହେଦିସାୟେ ଜନେ ବହୁକେ ମଂଗଲଂ କଲେତି । ଏତତୁ ଇଥୀ [ଅବକଜନୟୋ] ବହୁକଂଚ ବହୁବିଧଂ ଖୁଦକଂ ନିଲଠିୟଂ ଚ ମଂଗଲଂ କଲେତି । (୮) ସେ

କଟବିୟେ ଚେବ ଖୋ ମଂଗଲେ ଅପଫଲେ ତୁ ଖୋ । ଏସ ହେଵସେ ମଂଗଲେ ସଂ ତ ଖୋ ମହାଫଲେ ଏ ଧଂମ ମଂଗଲେ । ଅତେ ସମ୍ଵ ଦାସଭଟକସି ସମ୍ୟାପଟିପତ (୯) ଗୁରୂନଂ ଅପଚ[ତି] [ପାନାନଂ ସଯ]- ମେ ସମନ ବାଭନାନଂ ଦାନେ । ଏସ ଅଂନେ ଚ ଧଂମମଂଗଲେ ନାମ । ତ ବତ[ବିୟେ] ପିତିନା[ପି] ପୁତେନାପି ଭତିନାପି (୧୦) ସ୍ଵାମି- କେନ ପି[ ମିତସଂଥୁତେନାପି] [ଆବ ପଟିବେସିୟେନାପି] । [ଇୟଂ ସାଧୁ- ଇୟଂ କଟବିୟେ ମଂଗଲେ] ଆବତସ ଅଥ ନିବଟିୟା । [ଇମଂ କଛାମି ? ଏତ୍ର ଅପଲେ ମଂଗଲେ ସସପୟିକେ ସେ ହୋତି ସିୟା ଵତଂ ଅଥଂ ନିବଟେୟଂ ସିୟା ପୁନା ନୋ ହିଦଲୋକିକେ ଚ ବଟେ । ଇୟଂ ପୁନା ଧଂମମଙ୍ଗଲେ ଆକାଲିକ୍ୟେ । ହଂଚେପିତଂ ଅଥଂ ନୋ ନିଟେତି- ହିଦଂ ଅଠଂ ପଲତ ଅନଂତଂ ପୁନା ପସବତି । ହଂଚେ ପୁନାତଂ ଅଠଂ ନିବେତେତି । ହିଦତତେ ଉଭୟେ ଲବଧେ ହୋତି । ହିଦ ଚ ସେ ଅଠଂ ପଲତା ଚ ଅନଂତଂ ପୁନଂ ପସବତି ତେନା ଧଂମମଂଗଲେନା]*

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଆହ—ଜନ ଉଚ୍ଚାବଚଂ ମଙ୍ଗଳଂ କରୋତି । ଆବାଧେ (୧) ଆବାହେ ବିବାହେ ପ୍ରଜୋତ୍ପାଦେ (୨) ପ୍ରବାସେ (୩) ଏତସ୍ମିନ୍ ଅନ୍ୟସ୍ମିନ୍ ଚ ଏତାଦୃଶେ ବହୁ ମଙ୍ଗଳଂ କରୋତି । ଇହତୁ ଅବିଜନନ୍ୟୋ (୪) ବହୁ ଚ ବହୁବିଧଂ ଚ କ୍ଷୁଦ୍ରଂ ଚ ନିରର୍ଥକଂ ଚ ମଙ୍ଗଳଂ କୁର୍ବନ୍ତି । ତତ୍କର୍ତ୍ତବ୍ୟଂ ଚୈବ ଖଳୁମଙ୍ଗଳଂ ଅଳ୍ପଫଳଂତୁ ଖଳ୍ୱେତତ୍ । ଇଦଂତୁ ଖଳୁ ମହାଫଳଂ ଯଦ୍‌ଧର୍ମମଙ୍ଗଳମ୍ ।

---

* ବନ୍ଧନୀ ମଧ୍ୟରେ ଥିବା ଅଂଶ 'ଧଉଳୀ' ଲେଖରେ ଏକାବେଳକେ ଦୁଷ୍ପାଠ୍ୟ ହୋଇଥିବାରୁ 'କଳସୀ'ସ୍ଥିତ ଅଶୋକ ଲେଖରୁ ଉଦ୍ଧାର କରାଗଲା ।

(୧) ଆବାଧେ—ରୋଗରେ । (୨) ପ୍ରଜୋତ୍ପାଦ—ସନ୍ତାନ ପ୍ରସବ ।

(୩) ପ୍ରବାସ—ବିଦେଶ ଯାତ୍ରା । (୪) ଅବିଜନନୀ—ସନ୍ତାନବତୀ ମାତା ।

ଅସ୍ୱେଦଂ ଦାସଭୃତକେ ସମ୍ୟକ ପ୍ରତିପତ୍ତିଃ (୫) ଗୁରୁଣାମପଚିତିଃ (୬) ପ୍ରାଣାନାଂ ସଂଯମଃ, ଶ୍ରମଣବ୍ରାହ୍ମଣାନାଂ ଦାନମ୍ । ତଦନ୍ୟଚ୍ଚେତ୍ କୃତଂ ଧର୍ମମଙ୍ଗଳଂ ତଦ୍‌ବକ୍ତବ୍ୟଂ ନାମ ପିତାପି ପୁତ୍ରେଣାପି ଭ୍ରାତାପି ସ୍ୱାମିନାପି ମିତ୍ରସଂସ୍ତୁତେନାପି ଯାବତ୍ ପ୍ରତିବେଶିକେନାପି । ଇଦଂ ସାଧୁ ଇଦଂ କର୍ତ୍ତବ୍ୟଂ ମଙ୍ଗଳଂ ଯାବତ୍ତସ୍ୟାର୍ଥସ୍ୟ ନିବୃତ୍ତିଃ । (୭) ଇଦଂ କଥମିତି ? ଇହାପରଂ ମଙ୍ଗଳଂ ସାଂଶୟିକଂ (୮) ଚ ଭବେତ । ସ୍ୟାଦ୍‌ ବା ସମର୍ଥଂ-ନିବର୍ତ୍ତୟେତ୍,ସ୍ୟାଚ୍ଚ ପୁନଃନୈହଲୌକିକ ଚୈବ ସ୍ୟାତ୍ ଇଦଂ ପୁନର୍ଧର୍ମ ମଙ୍ଗଳମ୍ ଆକାଲିକମ୍ (୯) ଚେଦପି ସମର୍ଥଂନୋ ନିସ୍ତୃଷ୍ଟକ୍ ଅର୍ଥଂ, ପରତ୍ରାନନ୍ତଂ ପୁଣ୍ୟଂ ପ୍ରସୂତେ । ପୁନସ୍ତମ୍ ଅର୍ଥଂ ନିବର୍ତ୍ତୟସ୍ୱାହ ତଦ୍-ଉଭୟଂ ଲବ୍‌ଧଂ ଭବତି । ଇହ ଚ ସୋଽର୍ଥଂ ପରତ୍ର ଚାନନ୍ତଂ ପୁଣ୍ୟଂ ପ୍ରସୂତେ ତେନ ଧର୍ମମଙ୍ଗଳେନ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରଜା କହୁଛନ୍ତି – ଲୋକମାନେ ଉପବାସ, ପୂଜାଦୋମାଦି ନାନାପ୍ରକାର ମଙ୍ଗଳକାର୍ଯ୍ୟ କରନ୍ତି । ଲୋକେ ବ୍ୟାଧି, ନିମନ୍ତ୍ରଣ, ବିବାହ, ମଜଳିବ (ଅବାହ), ବିବାହ, ସନ୍ତାନ ଉତ୍ପାଦନ, ବିଦେଶଯାତ୍ରା ପ୍ରଭୃତି ସମୟରେ ଓ ଏବଂବିଧ ଅନ୍ୟାନ୍ୟ କ୍ରିୟା ସମ୍ପାଦନ ସମୟରେ ବହୁବିଧ ମଙ୍ଗଳ କାର୍ଯ୍ୟ କରନ୍ତି । ସନ୍ତାନବତୀ ଜନନୀମାନେ ସନ୍ତାନମାନଙ୍କର କୁଶଳ ନିମିତ୍ତ ବହୁପ୍ରକାର କ୍ଷୁଦ୍ର ଓ ନିରର୍ଥକ ମଙ୍ଗଳବ୍ୟବସ୍ଥା କରନ୍ତି । ଏପରି ମଙ୍ଗଳାନୁଷ୍ଠାନ କରିବା ଉଚିତ; କିନ୍ତୁ ଏଥିରେ ଅତି ଅଳ୍ପ ଫଳଲାଭ ହୁଏ । କିନ୍ତୁ ଧର୍ମମଙ୍ଗଳ (ଅଶୋକଙ୍କ ମତରେ ବୌଦ୍ଧଧର୍ମାନୁମୋଦିତ ମଙ୍ଗଳ କାର୍ଯ୍ୟମାନ) ବହୁ ଫଳପ୍ରଦ । ଦାସ ଭୃତ୍ୟମାନଙ୍କ ପ୍ରତି ସଦୟ ବ୍ୟବହାର, ଗୁରୁଜନ-

---

(୫) ପ୍ରତିପତ୍ତିଃ – ସଦୟ ବ୍ୟବହାର । (୬) ଅପଚିତି – ସମ୍ମାନ ବା ଭକ୍ତି ।
(୭) ଅର୍ଥନିବୃତ୍ତି – ଫଳଲାଭ (ଆଫଳୋଦୟ କର୍ମ) । (୮) ସାଂଶୟିକ – ସନ୍ଦେହଜନକ । (୯) ଆକାଳିକ – ଏଥିରେ କାଳାକାଳ ବିବେଚନା ନାହିଁ ।

ମାନଙ୍କୁ ଭକ୍ତି, ଆତ୍ମସଂଯମ, ଶ୍ରମଣ ଓ ବ୍ରାହ୍ମଣମାନଙ୍କୁ ଦାନ ପ୍ରଭୃତି କାର୍ଯ୍ୟକୁ 'ଧର୍ମମଙ୍ଗଳ' କହନ୍ତି । ଏହା ଓ ଏପରି ଅନ୍ୟାନ୍ୟ ଧର୍ମକାର୍ଯ୍ୟ (ଧର୍ମମଙ୍ଗଳ) ବିଷୟରେ ପିତା, ପୁତ୍ର, ଭ୍ରାତା, ସ୍ୱାମୀ, ମିତ୍ର ଓ ପ୍ରତି-ବେଶୀମାନେ ଶିକ୍ଷା ଦେବା ଉଚିତ । ଏହା ଶ୍ରେଷ୍ଠକାର୍ଯ୍ୟ ଓ ଫଳପ୍ରାପ୍ତି ପର୍ଯ୍ୟନ୍ତ ଏହାର ଅନୁଷ୍ଠାନ କର୍ତ୍ତବ୍ୟ । ଏପରି କରିବାର କାରଣ କ'ଣ ? ଏହା ତୁଳନାରେ ଅନ୍ୟାନ୍ୟ ସମସ୍ତ ମଙ୍ଗଳକାର୍ଯ୍ୟ (ଉପବାସାଦି)ର ସ୍ଥାନ ଅତି ନିମ୍ନରେ । ଏହା (ମଙ୍ଗଳ) ଅଭୀଷ୍ଟ ଫଳ ଓ ଐହିକ ସୁଖ ପ୍ରଦାନ କରିପାରେ ବା ନ କରିପାରେ; କିନ୍ତୁ ଧର୍ମମଙ୍ଗଳର ଇହପର କାଳାକାଳ ବିଚାର ନାହିଁ । ଏହା ଐହିକ ସୁଖ ଦେଇପାରେ । ପରଜୀବନରେ ମଧ୍ୟ ଶାଶ୍ୱତ ସୁଖ ପ୍ରଦାନ କରେ । ଧର୍ମମଙ୍ଗଳ ଦ୍ୱାରା ଇହ ଜୀବନରେ ନିଜର ଅର୍ଥସିଦ୍ଧି ଓ ପରଜୀବନରେ ଅନନ୍ତ ପୁଣ୍ୟଲାଭ ହୁଏ, ତାହ ହେଲେ ଏହାଦ୍ୱାରା ଐହିକ ଓ ପାରତ୍ରିକ ଉଭୟବିଧ ଫଳଲାଭ ହୁଏ ।

(ପ୍ରକାଶ ଥାଉକି, ଏହି ଅନୁଶାସନରେ ଅଶୋକ ତାଙ୍କ ସମୟରେ ସମାଜରେ ଅନୁଷ୍ଠିତ ହେଉଥିବା ଉପବାସ, ପୂଜା, ଧାରଣା, ହୋମ ଇତ୍ୟାଦି ବିବିଧ ମଙ୍ଗଳକାର୍ଯ୍ୟର ନିନ୍ଦାବାଦ କରି ଧର୍ମମଙ୍ଗଳ ବା ବୌଦ୍ଧ-ଶାସ୍ତ୍ରାନୁମୋଦିତ ପୁଣ୍ୟକାର୍ଯ୍ୟମାନଙ୍କର ପ୍ରଶଂସାଗାନ କରିଛନ୍ତି । ଏଥିରୁ ଅଶୋକଙ୍କର ବିପୁଳ ଧର୍ମସଂସ୍କାର ପ୍ରୟାସ ସ୍ପଷ୍ଟ ଜଣାଯାଏ ।

## ଦଶମ ଅନୁଶାସନ

### —ମୂଳ —

(୧୩) ଦେବାନଂ ପିୟେ ପିୟଦସୀ ଲଜା ଯସୋ ବା କଟୀ ବା ନ [ମହ]ଠାବା[ହଂ] ମନତେ [ଅନତା] [ଯଂପି] ଯସୋ ବା କଟୀ ବା ଇଛତି ତଦତ୍ୱାୟେ ଅ [ୟତିୟେ ଚ] ଜନେ (୧୪) ଧଂମ ସୁସୁଷା ସୁସୁସାତୁ ଧଂ ବତଂ ବା ଅନୁବିଧୟତୁ [ତି] ଏତକାୟେ [ଦେବାନଂ ପିୟେ ପିୟଦସୀ ଲଜା ଯସୋ ବା କଟୀ ବା ଇଛତି ଅଂଘ ଲିଛି] ପଲକମତି ଦେବାନଂ ପିୟେ ପାଲତିକାୟେ (୧୫) କିତି ସକଲେ

ଅପ ପଳସଂବ ହୁବେୟାତି [ଏଷେତୁ] ପଳସାବେ ଏଥ ପୁଂନେ ଦୁକଲେ ଚୁଖୋ । ଏଷେ ଖୁଦ୍ରକେନା ବା ବଗେନ ଉସଟେନ ବା ଅନତ ଅଗେନା ପଲକମେନ । ସବଂତ ପଲିତିଜିତୁ ଚୁଦକେନ ବା ଉସଟେନ ବା ଦୁକଲତଲେ ।

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଯଶୋ ବା କୀର୍ତ୍ତିଂ ବା ମହାର୍ଥବହଂ ନ ମନ୍ୟତେଽନ୍ୟତ୍ର । ଯଦ୍ୟପି ଯଶୋ ବା କୀର୍ତ୍ତିଂ ବେଛତି ତଦାତ୍ୱେ (୧) ଆୟତୌ (୨) ଚ ଜନୋ ଧର୍ମଶୁଶ୍ରୂଷାଂ ଶୁଶ୍ରୂଷତାଂ ମମେତି ଧର୍ମବ୍ରତଂ ବାନୁବଧତ୍ତମିତି । ଏତଲ୍ଲତେ ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଯଶୋ ବା କୀର୍ତ୍ତିଂ ବେଛତି । ଯତକଞ୍ଚିତ୍ ପରାକ୍ରମତେ ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ତତ୍ସର୍ବଂ ପାରତ୍ରିକାୟୈବ,କମିତି, ସକଲୋଽପି ପରିସ୍ରବଃ ସ୍ୟାଦିତି । ଏଷତୁ ପରିସ୍ରବୋ, ଯଦ୍ ପୁଣ୍ୟଂ ଦୁଷ୍କରଂ, ତୁ ଖଲ୍ୱେତତ୍ କ୍ଷୁଦ୍ରକେଣ ବା ବର୍ଗେଣୋଚ୍ଛତା (୩) ବା ଅନ୍ୟତ୍ରାଗ୍ର୍ୟାତ୍ ପରାକ୍ରମାତ୍ ସର୍ବଂ ପରିତ୍ୟଜ୍ୟ ଏତତ୍ତୁ ଖଲୁ, ଉଚ୍ଛତା ବା ଦୁଷ୍କରଂ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଯଶଃ ବା କୀର୍ତ୍ତିକୁ ପରିଣାବନରେ ମହାର୍ଥବହ (ମହାଫଳପ୍ରଦ) ବୋଲି ମନେ କରନ୍ତି ନାହିଁ । ଯଦିବା ତାଙ୍କର ଯଶ ବା କୀର୍ତ୍ତିଲାଭ କରିବାର ଇଚ୍ଛା ଥାଏ, ତାହାହେଲେ ତାର ଉଦ୍ଦେଶ୍ୟ ଏହା — "ମୋର ପ୍ରଜାମାନେ ବର୍ତ୍ତମାନ ଓ ଭବିଷ୍ୟତରେ ଧର୍ମ ଶ୍ରବଣ ଓ ଧର୍ମବ୍ରତ ଅନୁବିଧାନ କରନ୍ତୁ ।" ଏଥିପାଇଁ ଦେବପ୍ରିୟ

---

(୧) ତଦାତ୍ୱେ—ଭବିଷ୍ୟତରେ । (୨) ଆୟତୌ—ବର୍ତ୍ତମାନ
(୩) ବର୍ଗ—ମହତ୍ ଲୋକ ।

ପ୍ରିୟଦର୍ଶୀ ରାଜା ଯଶଃ ବା କୀର୍ତ୍ତି ଇଚ୍ଛା କରନ୍ତି । ତାଙ୍କର ଯତ୍ନକାର୍ଯ୍ୟ ଶକ୍ତି ସାହାଯ୍ୟରେ ସେ ଲୋକମାନଙ୍କର ପାରତ୍ରିକ ସୁଖ ବିଧାନ ପାଇଁ ସର୍ବଦା ଚେଷ୍ଟା କରୁଛନ୍ତି । ଏହା କପରି ହେବ ? ସମସ୍ତଙ୍କର ଅପୁଣ୍ୟ [ପାପଙ୍କନର ଅଭାବ] ରହୁଛି । କିନ୍ତୁ ପ୍ରଚାଡ଼ ପରିଶ୍ରମ ଓ ଏକାନ୍ତ ନିଷ୍ଠା ବିନା ଏହା ଲାଭ କରିବା କ୍ଷୁଦ୍ର ଓ ମହତ୍- ସମସ୍ତଙ୍କ ପକ୍ଷେ ଦୁଷ୍କର । ସେମାନେ ସମସ୍ତ ପରିତ୍ୟାଗ କରିପାରନ୍ତି । ତେବେ ସୁଦ୍ଧା ମହତ୍ ଲୋକମାନଙ୍କ ପକ୍ଷେ ଏହା ଲାଭ କରିବା ଦୁଷ୍କର ।

## ଏକାଦଶ ଅନୁଶାସନ *

### — ମୂଳ —

ଦେବାନଂ ପିୟେ ପିୟଦସି ଲାଜା ହେବଂ ଆହା—ନଥି ହେଡ଼ିସେ ଦାନେ ଆଦିସଂ ଧମଂଦାନେ ଧଂମସଂଥବେ ଧଂମସଂବଂଧେ । ତତ ଏସେ ଦାସଭଟକସି ସମ୍ୟପଟିପତି ମାତାପିତାସୁ ସୁସୁସା ମିତସଂଥୁତ ନାତିକାନଂ ସମନବଂଭନାନଂ ଦାନେ । ପାନାନଂ ଅନାଲଂଭେ । ଏଂସେ ବତବିୟେ

---

* ଧଉଳୀ ପର୍ବତରେ ବା ଯୌଗଡ଼ ପର୍ବତରେ ଅଶୋକଙ୍କର ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅନୁଶାସନମାନ ଖୋଦିତ ହୋଇନାହିଁ । କିନ୍ତୁ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଥିବା ଶିଳାଲେଖମାନଙ୍କରେ ଏ ତିନୋଟି ଦିଆଯାଇଛି । ତ୍ରୟୋଦଶ ଅନୁଶାସନରେ କଳିଙ୍ଗ ଯୁଦ୍ଧ ଓ ତଜ୍ଜନିତ ଅଶୋକଙ୍କ ମନସ୍ତାପ ବିଷୟ ବର୍ଣ୍ଣିତ ହୋଇଅଛି । ତେଣୁ ଅନ୍ୟ ସମସ୍ତ ଅନୁଶାସନ ଅପେକ୍ଷା କଳିଙ୍ଗ ଇତିହାସର ଆଲୋଚନା ପକ୍ଷରେ ଏହା ଅଧିକ ମୂଲ୍ୟବାନ୍ । କିନ୍ତୁ କଳିଙ୍ଗର ପ୍ରଜାମାନେ ସର୍ବଦା ଅଶୋକଙ୍କ ବିରୁଦ୍ଧରେ ବିଦ୍ରୋହ କରୁଥିବାରୁ କଳିଙ୍ଗ ବିଜୟ ବିଷୟ ସେ ଉକ୍ତ ରାଜ୍ୟର କୌଣସି ସ୍ଥାନରେ ଲେଖିନାହାନ୍ତି । ତଥାପି ଏହାର ଯଥେଷ୍ଟ ଐତିହାସିକ ଗୁରୁତ୍ୱ ଥିବାରୁ ଏହା ଏକାଦଶ ଓ ଦ୍ୱାଦଶ ଅନୁଶାସନ ସହ 'କଲସୀ ଶିଳାଲେଖ'ରୁ ଗୃହୀତ ହୋଇ ଏଠାରେ ସନ୍ନିବିଷ୍ଟ କରାଯାଇଛି ।

ପିତନାପି ପୁତେ(ନା)ପି ଭତନାପି ଷୁଆମିକ୍ୟେନାପି ମିତଣଥୁତାନା (ତକ୍ୟେନାପି) ଅବା ପଟିଵେସିୟେନାପି । ଇୟଂ ସାଧୁଇୟଂ କଟବେ୍ୟ । ସେ ତଥା କଲଂତ ହିଦଲୋକକେ୍ୟ ଚଳଂଆଲଧେ ହୋତି ପଲ ଚ ଅଂନତ ପୁଂନା ପଶବତି ତେନ ଧଂମଦାନେନ ।

— ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ଏବମାହ—ନାସ୍ତି ଦୃଶଂ ଦାନଂ ଯାଦୃଶଂ ଧର୍ମଦାନଂ ଧର୍ମସଂସ୍ତବୋ ଧର୍ମସଂବନ୍ଧଃ (୧) । ତତଃ ଏଷ ଦାସଭୃତକେ ସମ୍ୟକ ପ୍ରତିପତ୍ତିର୍ମାତାପିତ୍ରୋଃ ଶୁଶ୍ରୂଷା ମିତ୍ରସଂସ୍ତୁତ ଜ୍ଞାତିକାନାଂ ଶ୍ରମଣବ୍ରାହ୍ମଣାନାଂ ଦାନଂ ପ୍ରାଣାନାଂ ଅନାଲମ୍ଭଃ । (୨) ଏତତ୍ ବକ୍ତବ୍ୟଂ ପିତ୍ରାପି ପୁତ୍ରେଣାପି ଭ୍ରାତ୍ରାପି ସ୍ୱାମିନାପି ମିତ୍ରସଂସ୍ତୁତଜ୍ଞାତି-କେନାପି ପ୍ରତିବେଶିକେନାପି – ଇଦଂ ସାଧୁ, ଇଦଂ କର୍ତ୍ତବ୍ୟଂ । ସ ତଥା କୁର୍ବନ୍ ଐହଲୌକିକଂ ଚ ଆରାଧବାନ୍ ଭବତି । ପରତ୍ର ଚ ଅନନ୍ତଂ ପୁଣ୍ୟଂ ପ୍ରସୂତେ ତେନ ଧର୍ମଦାନେନ ।

— ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରାଜା କହୁଛନ୍ତି, "ସଂସାରରେ ଧର୍ମଦାନ, ଧର୍ମ ସଂସ୍ତବ ଓ ଧର୍ମ ସମ୍ବନ୍ଧ ତୁଲ୍ୟ ଦାନ ନାହିଁ । ତେଣୁ ଦାସ ଓ ଭୃତ୍ୟମାନଙ୍କଠାରେ ସ୍ନେହ ଓ ବାତ୍ସଲ୍ୟ ପ୍ରଦର୍ଶନ, ମାତାପିତାଙ୍କର ଶୁଶ୍ରୂଷା, ମିତ୍ର ଓ ଜ୍ଞାତି କୁଟୁମ୍ବମାନଙ୍କ ପ୍ରତି ଭକ୍ତି ଓ ଆଦର ପ୍ରଦର୍ଶନ ଶ୍ରମଣ ଓ ବ୍ରାହ୍ମଣମାନଙ୍କୁ ଦାନ, ଏବଂ ଜୀବଦୟା ପ୍ରଧାନ ଧର୍ମ । ପିତା, ପୁତ୍ର, ଭ୍ରାତା, ସ୍ୱାମୀ (ପ୍ରଭୁ), ମିତ୍ର ଓ ବନ୍ଧୁମାନଙ୍କର ପରସ୍ପରକୁ କହିବା

---

(୧) ଧର୍ମ ସଂସ୍ତବ ଓ ଧର୍ମ ସମ୍ବନ୍ଧ — ବୌଦ୍ଧ ଧର୍ମ ପ୍ରଚାର ଦ୍ୱାରା ଲୋକ-ମାନଙ୍କ ମଧ୍ୟରେ ଧର୍ମ ସମ୍ବନ୍ଧ ବା ଧର୍ମ ସମ୍ବନ୍ଧୀୟ ଐକ୍ୟ ସ୍ଥାପନ ।

(୨) ଅନାଲମ୍ଭ — ଅହିଂସା ।

ଉଚିତ ଯେ—'ଏହା ସାଧୁ ଓ ଏହା କର୍ତ୍ତବ୍ୟ । ଏହା ଇହଲୋକରେ ସୁଖ ଓ ପରଲୋକରେ ଅନନ୍ତ ପୁଣ୍ୟ ପ୍ରଦାନ କରେ ।"

## ଦ୍ୱାଦଶ ଅନୁଶାସନ

### — ମୂଳ —

ଦେବ ନଂ ପିୟେ ପିୟଦସି ରାଜା ସବ ପାସଂଡାନି ପବଜିତାନି ଗହଥାନି ବା ପୂଜେତି ଦାନେନ ବିବିଧେନ ଚ ପୂଜାୟେ । ନୋ ତୁ ତଥା ଦାନେ ବା ପୂଜା ବା ଦେବାନାଂ ପିୟେ ମନତି ଅଥା କିତି ! ସାଲ ବଢ଼ି ସିୟା ତି ସବପାସଂଡାନଂ ସାଲବଢ଼ି ନା [ମି] ବହୁବିଧା । ତସତୁ ଇୟଂ ମୂଲେ ଅ ବଚଗୁତି; କିତି ? ତଥା ଅତପ ସଂଡେ ପୂଜା ପଲପାସଂଡ ଗଲହା ବ ନୋ ସିୟ । ଅପକଲନସି ଲହୁକା ବା ସିୟା । ତସି ତସି ପ କଲନସି ପୂଜେତବିୟା ତୁ ପଲପାସଂଡା ତେନ ତେନ ଅକାଲନ । ହେବଂ କଲତ ଅତପାସଂଡା ବାଢ଼ଂ ବଢ଼ିୟତି ପଲପାସଂଡ ପିବା ଉପକଲେତି । ତଦା ଅଂନଥା କଲତ ଅତପାସଂଡ ଚ ଛନତି ପାଲପାସଂଡ ପି ଚା ଅପକଲେତି । ଯେହି କେଛି ଅତପାସଂଡ ପୂଜତି ପାଲପାସଂଡ ବା ଗଲହତି ସବେ ଅତପାସଂଡଭତିୟା ବା କିତି ? ଅତପାସଂଡ ଦିପୟେମ । ସେ ଚ ପୂନା ତଥା କଲଂତଂ ବାଢ଼ତଲେ ଉପହଂତି ଅତପାସଂଡ଼ଂ । ସମବାୟେ ଚ ସାଧୁ ; କିତି ? ଅଂନମନସ ଧଂମଂ ସୁନେୟୁ ଚ ସୁସୁସେୟୁ ଚ ତି । ହେବଂ ହି ଦେବାନାଂ ପିୟସା ଇଛା । କିତି ? ସବପାସଂଡ ବହୁସୁତା ଚ କୟାନାଗ ଚ ହବେୟୁ ତି । ଏବ ତତ ତତ ପସଂଡ଼ ତେହି ବତବିୟେ; ଦେବାନା ପିୟେନା ତଥା ଦାନଂ ବା ପୂଜା ବା ମଂନତି ଅଥା କିତି ସାଲବଢ଼ି ସିୟା ସବପାସଂଡତି । ବହୁକା ଚ ଏତାୟ ଅଠାୟେ ବିୟପଟା ଧଂମମହାମାତ ଇଥିଧିୟଖମହାମାତା ବଚଭୁମିକ୍ୟା ଅନେ ବା ନିକାୟା । ଇୟଂ ଚ ଏତସା ଫଲେ ଯଂ ଅତପାସଂଡବଢ଼ି ଚ ହୋତି ଧମସ ଚ ଦପନା ।

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟଃ ପ୍ରିୟଦର୍ଶୀ ରାଜା ସର୍ବାନ୍ ପାଷଣ୍ଡାନ୍ ପ୍ରବ୍ରଜିତାନ୍ (୧) ଗୃହସ୍ଥାଂଶ୍ଚ ପୂଜୟତି ଦାନେନ ବିବିଧୟା ଚ ପୂଜୟା । ନ ତୁ ତଥା ଦାନଂ ବା ପୂଜା ବା ଦେବାନାଂ ପ୍ରିୟୋ ମନ୍ୟତେ ଯଥା କମିତି ସାରବୃଦ୍ଧିଃ, (୨) ସ୍ୟାଦିତି ସର୍ବପାଷଣ୍ଡାନାମ୍ । ସାରବୃଦ୍ଧିର୍ନାମ ବହୁବିଧା । ତସ୍ୟାସ୍ତ୍ୱିଦଂ ଯଦ୍ ବଚୋଗୁପ୍ତିଃ କମିତି ? ତଥା ଆତ୍ମ-ପାଷଣ୍ଡେ ପୂଜା (୩) ପରପାଷଣ୍ଡଗର୍ହା ଚ ନ ସ୍ୟାତ୍ । ଅପ୍ରକରଣେ ଲଘୁତା ବ ସ୍ୟାତ୍ । ତସ୍ମିଂସ୍ତସ୍ମିନ୍ ପ୍ରକରଣେ ପୂଜୟିତବ୍ୟାସ୍ତୁ ପରେ-ପାଷଣ୍ଡାସ୍ତେନ ତେନାକାରେଣ ଏବଂ କୁର୍ବନ୍ ଆତ୍ମପାଷଣ୍ଡାନ୍ ବାଢ଼ଂ ବର୍ଦ୍ଧୟତି ପରପାଷଣ୍ଡାନପି ଚୋପକରୋତି । ତଦନ୍ୟଥା କୁର୍ବନ୍ ଆତ୍ମ-ପାଷଣ୍ଡାଂଶ୍ଚ କ୍ଷିଣୋତି, ପରପାଷଣ୍ଡାନପି ଚାପକରୋତି । ଯୋହିକଶ୍ଚିତ୍ ଆତ୍ମପାଷଣ୍ଡାନ୍ ପୂଜୟତି ପରପାଷଣ୍ଡାନ୍ ବା ଗର୍ହୟତି ସର୍ବ ଆତ୍ମପାଷଣ୍ଡ-ଭକ୍ତ୍ୟା ବା କମିତି ଆତ୍ମପାଷଣ୍ଡାନ୍ଦୀପୟେମ । ସ ଚ ପୁନଃ ତଥା କୁର୍ବନ୍ ବାଢ଼ତର ମୁପହନ୍ୟାତ୍ମପାଷଣ୍ଡେ । ସମବାୟ (୪) ଏବ ସାଧୁଃ । କମିତି ଅନ୍ୟମନ୍ୟସ୍ୟ ଧର୍ମଂ ଶୃଣୁୟୁଃ ଶୁଶ୍ରୁଷେର ଶ୍ଚେତି । ଏବଂ ହି ଦେବାନାଂ ପ୍ରିୟସ୍ୟେଚ୍ଛା କମିତି ସର୍ବପାଷଣ୍ଡା ବହୁଶ୍ରୁତାଃ (୫) କଲ୍ୟାଣାଗମାଶ୍ଚ ଭବେୟୁରିତି । ଯେବା ତତ୍ର ତତ୍ର ପ୍ରସନ୍ନାସ୍ତୈର୍ବକ୍ତବ୍ୟଂ । ଦେବାନାଂ ପ୍ରିୟୋ ନ ତଥା ଦାନଂ ବା ପୂଜାଂ ବା ମନ୍ୟତେ ଯଥା କମିତି ସାର-ବୃଦ୍ଧିସ୍ୟାତ୍ ସର୍ବପାଷଣ୍ଡାନାମିତି । ବହୁକାଶ୍ଚ ଏତସ୍ମୈ ଅର୍ଥାୟ ବ୍ୟାପୃତା ଧର୍ମମହାମାତ୍ରାଃ ସ୍ତ୍ର୍ୟଧ୍ୟକ୍ଷମହାମାତ୍ରାଃ ବ୍ରାଜ୍ୟଭୂମିକା (୬) ଅନ୍ୟେ ବା ନିକାୟାଃ । (୭) ଇଦଂ ଚୈତେଷାଂ ଫଳଂ ଯଦାତ୍ମପାଷଣ୍ଡବୃଦ୍ଧିଶ୍ଚ ଭବତି ଧର୍ମସ୍ୟଦୀପନା ।

---

(୧) ପ୍ରବ୍ରଜିତ — ପରିବ୍ରାଜକ (୨) ସାରବୃଦ୍ଧି — ଶ୍ରୀବୃଦ୍ଧି ।

(୩) ଆତ୍ମପାଷଣ୍ଡ — ସ୍ୱଧର୍ମାବଲମ୍ବୀ, ପରପାଷଣ୍ଡ — ଅନ୍ୟ ଧର୍ମାବଲମ୍ବୀ ।

(୪) ସମବାୟ — ମୈତ୍ରୀ (୫) ବହୁଶ୍ରୁତ — ବିଦ୍ୱାନ୍ ବା ପଣ୍ଡିତ ।

(୬) ବ୍ରାଜ୍ୟ ଭୂମିକା — ତତ୍ତ୍ୱାବଧାରକଗଣ (୭) ନିକାୟ — କର୍ମଚାରୀ ବିଶେଷ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ ରାଜା ସର୍ବଧର୍ମାବଲମ୍ବୀ, ପରିବ୍ରାଜକ ଓ ଗୃହସ୍ଥମାନଙ୍କର ( ନାନାବିଧ ଦାନ ଓ ବିବିଧ ପ୍ରକାର ପୂଜା ଦ୍ୱାରା ) ସମ୍ମାନବିଧାନ କରୁଛନ୍ତି । କିନ୍ତୁ ଦେବପ୍ରିୟ ଦାନ ଓ ପୂଜା ଅପେକ୍ଷା ସର୍ବଧର୍ମର ଶ୍ରୀବୃଦ୍ଧିକୁ ଅଧିକ ମୂଲ୍ୟବାନ୍ ବୋଲି ମନେ କରନ୍ତି । ନାନାବିଧ ଉପାୟରେ ଧର୍ମବୃଦ୍ଧି ସାଧିତ ହୁଏ । କିନ୍ତୁ ତାହାର ମୂଳଭିତ୍ତି ବାକ୍‌ସଂଯମ । କାରଣ ସାମାନ୍ୟ ବିଷୟମାନଙ୍କରେ ନିଜ ଧର୍ମର ନିନ୍ଦାବାଦ ଦ୍ୱାରା ଆତ୍ମସମ୍ମାନ ଓ ଜ୍ଞାନର ଅଭାବ ଲକ୍ଷିତ ହୁଏ । କେତେକ ବିଶେଷତ୍ୱ ଯୋଗୁଁ ଅନ୍ୟ ଧର୍ମ ନାନାଭାବରେ ପ୍ରଶଂସାଯୋଗ୍ୟ ହୋଇପାରେ । ଏହା କରିବା ଦ୍ୱାରା ଲୋକ ନିଜ ଧର୍ମାବଲମ୍ବୀମାନଙ୍କର ଉପକାର ଓ ପରଧର୍ମାବଲମ୍ବୀମାନଙ୍କର ମଙ୍ଗଳ କରେ । କିନ୍ତୁ ଏହାର ପ୍ରତିକୂଳ ଆଚରଣ କଲେ ଲୋକ ନିଜ ତଥା ପରଧର୍ମର ପ୍ରଭୂତ ଅନିଷ୍ଟ ସାଧନ କରେ । ସାଧାରଣତଃ ଲୋକମାନେ ନିଜ ଧର୍ମ ପ୍ରତି ଅଧିକ ଭକ୍ତିହେତୁ ନିଜ ଧର୍ମର ଗୌରବଗାନ ଓ ପର ଧର୍ମର କୁତ୍ସାରଟନା କରିଥାନ୍ତି । କିନ୍ତୁ ଏପରି କରିବା ଦ୍ୱାରା ସେ ନିଜ ଧର୍ମର ଅଧିକ କ୍ଷତି ସାଧନ କରେ । ସମବାୟ (ମୈତ୍ରୀଭାବ) ସର୍ବଶ୍ରେଷ୍ଠ । ଅନ୍ୟ ଧର୍ମାବଲମ୍ବୀଙ୍କର ଧର୍ମ ଶୁଣ ଏବଂ ତାଙ୍କୁ ନିଜ ଧର୍ମ ବିଷୟରେ ଅନେକ କଥା ଶୁଣାଅ । ଦେବପ୍ରିୟ ପ୍ରିୟଦର୍ଶୀଙ୍କର ଇଚ୍ଛା ଯେ, ସର୍ବଧର୍ମାବଲମ୍ବୀମାନେ ବହୁଶ୍ରୁତ ( ବହୁବିଦ୍ୟାଯୁକ୍ତ ) ଓ କଲ୍ୟାଣଭାଗୀ ହୁଅନ୍ତୁ । ସର୍ବତ୍ର ସନ୍ତୁଷ୍ଟ ଲୋକମାନେ କହନ୍ତୁ "ଦେବପ୍ରିୟ ପ୍ରିୟଦର୍ଶୀ ସର୍ବଧର୍ମର ବିକାଶ ଓ ଅଭିବୃଦ୍ଧିକୁ ଦାନ ଓ ପୂଜା ଅପେକ୍ଷା ଅଧିକ ଫଳପ୍ରଦ ବୋଲି ମନେ କରନ୍ତି ।" ଏହି ଉଦ୍ଦେଶ୍ୟ ସାଧନ ନିମିତ୍ତ 'ଧର୍ମମହାମାତ୍ର', 'ସ୍ତ୍ରୀଧ୍ୟକ୍ଷ-ମହାମାତ୍ର', 'ବ୍ରଜଭୂମିକା' ଓ 'ନିକାୟ' ପ୍ରଭୃତି କର୍ମଚାରୀମାନେ ସାମ୍ରାଜ୍ୟର ସର୍ବତ୍ର ନିଯୁକ୍ତ ହୋଇଛନ୍ତି । ନିଜ ଧର୍ମର ଶ୍ରୀବୃଦ୍ଧି ଓ ଦୀପନ (ବିକାଶ) ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

# ତ୍ରୟୋଦଶ ଅନୁଶାସନ

## ( କଳିଙ୍ଗ ଯୁଦ୍ଧ ବର୍ଣ୍ଣନା )

### — ମୂଳ —

ଅଠବଷାଭିସିତଷା ଦେବାନଂ ପିୟସ ପିୟଦସିନେ ଲାଜିନେ କଲଗ୍ୟ ବିଜିତ । ଦିୟଢମାତେ ପାନଶତସହସେ ଯେ ତଫା ଅପବୁଢ଼େ, ଶତସହସମାତେ ତତ ହତେ ବହୁତାବଂତକେ ବା ମଟେ । ତତା ପଛା ଅଧୁନା ଲଧେସୁ କଲିଗେୟସୁ ତିବେ ଧଂମପାଲନ ଧଂମକାମତା ଧଂମା-ନୁସଥି ଚ ଦେବାନଂ ପିୟସା । ସେ ଅଥି ଅନୁସୟେ ଦେବାନଂ ପିୟସା ବିଜିନିତୁ କଲିଗ୍ୟାନି । ଅବିଜିତଂ ହି ବିଜିତ ମତୋ ଏତତା ବଧଂ ବା ମଲନେ ବା ଅପବହେ ବା ଜନସା । ସେ ବାଧ ବେଦନୟମୁତେ ଗୁରୁମୁତେ ଚ ଦେବାନଂ ପିୟସା ।

ସବତା ବସତି ବଂଭନା ବାସମ (ନ) ବା ଅନେ ବା ପାଶଂଡ଼ ଗିହଥା ବା ଯେସୁ ବିହିତା ଏସ ଅଗଭୁତି ସୁସୁସା, ମତ ପିତି ସସୁସା, ଗୁରୁ ସୁ ( ସୁ )ସା, ମିତସଂଥୁତସହାୟଞାତିକେସୁ ଦାସଭଟକସି ସମ୍ୟା ପଟିପତି ଦିଢ଼ଭତିତା । ତେସଂ ତତା ହୋତି ଉପଘାତେ ବା ବଧେ ଅଭିଲତାନଂ ବା ବିନିଖମନେ ଯେସଂ ବାପି ସଂବିହିତାନଂ ସିନେହେ ଅବିପହିନେ ଏତାନଂ ମିତସଂଥୁତସହାୟଞାତିକ୍ୟ ବିସନେ ପାପୁନାତି । ତତସେପି ତାସ ମେବ ଉପଘା (ତୋ) ତେ ହୋତି । ପଟିଭାଗେ ଚ ଏସ ସବ ମନୁ-(ଶ୍ୟ)ନଂ ଗୁରୁମତେ ବା ଦେବାନଂ ପିୟସା । ନଥି ଚ ସେ ଜନପଦେ ଯତା ନଥି ଇମେ ନିକାୟା ଅନଂତା ଯେନେସ ବଂଭନେ ବା ସମନେ ବା ନଥିଚ କୁବାପି ଜନପଦସି ଯତା ନଥି ମନୁଷାନଂ ଏକତଲସି ପାଷଂଡ଼ସି ନୋ ନାମ ପସାଦେ । ସେ ଆବତକେ ଜନେ ତଦା କଲିଂ-ଗେସୁ ଲ(ଧେ)ସୁ ହତେ ଚ ମଟେ ଚ ଅପବୁଢ଼େ ଚ ତତୋ ସତେ ଭାଗେ ବା ସହସ ଭାଗେ ବା ଅଜ ଗୁରୁମତେ ବା ଦେବାନଂ ପିୟସା ।

× × × ×

ନେସ୍ତୁ ଇଛ × × × ଷବଭୂ × × ×
ଷଯମ ଷମଚଲିୟଂ ମଦବତି । ଇୟଂଚୁମୁ × × ×

ଦେବାନଂ ପିୟସା ଯେ ଧର୍ମବିଜୟେ ଯେଚ ପୁନା ଲଧେ ଦେବାନଂ ପିୟସ ଷଚ ଷବେଷୁଚ ଅଂତେଷୁ ଅଷଷୁପି ଯୋଜନ ଷତେଷୁ ଅତ ଅଂତିୟୋକେ ନାମ ଯୋନ ରଜ ପରଂ ଚ ତେନା ଅଂତିୟୋକେନା ଚତୁରି ରଜାନେ ତୁଲମୟେ ନାମ ଅଂତେକିନେ ନାମ ମଗ ନାମ ଅଲିକ୍ୟଷୁଦଲେ ନାମ,ନିଚଂ ଚୋଡ଼ା ପଂଡ଼ିୟା ଅବ ତଂବପଂନିୟା ହେବମେବ ହିଦ ରଜା ବିଶବାସି ଯୋନ କଂବୋଜେଷୁ , ନାଭକେ ନାଭପଂତିଷୁ ଭୋଜପିତିନିକେୟେଷୁ ଅଂଧ ପଲିଂଦେଷୁ ଷବତା ଦେବାନଂ ପିୟସା ଧଂମବୁତଂ ବିଧାନଂ ଧଂମାନୁସଥି ଧଂମଂ ଅନୁବିଧିୟଂତି ଅନୁବିଧିୟିସଂତି ଚ ।

ଯେ ସେ ଲଧେ ଏତକେନ ହୋତି ସବତା ବିଜୟେ ପିତିରସେ ସେ । ଗଢ଼ା ସା ହୋତି ପିତି ପିତି ଧଂମବିଜୟସି । ଲହୁକା ଚୁ ଖୋ ସା ପିତି ପାଲଂତିକେୟମେବ ମହାଫଲା ମଂନଂତି ଦେବାନଂ ପିୟେ । ଏତାୟେ ଚ ଅଠାୟେ ଇୟଂ ଧଂମଲିପିଲିଖିତା; କିତି ପୁତା ପପୋତା ମେ ନବଂ ବିଜୟଂ ମବିଜୟିତବିୟ ମନିଷୁ ଷଚକଷିନି ବିଜୟସି ଖଂତି ଚ ଲହୁଦଂଡ଼ତା ଚ ଲୋଚେତୁ ତମେବ ଚ ବିଜୟଂ ମନତୁ ଯେ ଧଂମ-ବିଜୟେ । ସେ ହିଦଲୋକିକେ ପଲଲୋକିକେ । ଷବା ଚ ନିରତି ହୋତୁ ଉୟାମରତି । ସାହି ହିଦଲୋକିକ୍ୟ ପଲଲୋକିକ୍ୟ ।

## — ସଂସ୍କୃତାନୁବାଦ —

ଅଷ୍ଟବର୍ଷାଭିଷିକ୍ତସ୍ୟ ଦେବାନାଂ ପ୍ରିୟସ୍ୟ ପ୍ରିୟଦର୍ଶିନଃ ରାଜ୍ଞୋ କଳିଙ୍ଗା ବିଜିତାଃ । ଅଧ୍ୟର୍ଦ୍ଧମାନଂ ପ୍ରାଣଶତସହସ୍ରଂ ଯତ୍ତତୋପବ୍ୟୂଢ଼ଂ, ଶତସହସ୍ରମାତ୍ରମତ୍ର ହତାଃ, ବହୁତାବଦ୍ୱା ମୃତାଃ । ତତଃ ପଶ୍ଚାଦଧୁନା ଲବ୍ଧେଷୁ କଳିଙ୍ଗେଷୁ ତୀବ୍ରଂ ଧର୍ମପାଳନଂ ଧର୍ମକର୍ମ ଚ ଧର୍ମାନୁଶିଷ୍ଟିଶ୍ଚ ଦେବାନାଂ ପ୍ରିୟସ୍ୟ । ତଦସ୍ତ୍ୟନୁଶୋଚନଂ ଦେବାନାଂ ପ୍ରିୟସ୍ୟ

ଝଙ୍କେଭ୍ୟଃ କଳିଙ୍ଗାନ ବିଜିତଂ ହି ଅବିଜିତଂ ମନ୍ୟେ ଯତ୍ର ବଧୋ ବା ମରଣଂ ବା ଅପବାହୋ ଜନସ୍ୟ । ସ ବଧୋ ବେଦନୀୟମତୋ ଗୁରୁମତଶ୍ଚ ଦେବାନାଂ ପ୍ରିୟସ୍ୟ ।

ତତ୍ର ହି ବସନ୍ତି ବ୍ରାହ୍ମଣାଃ ବା ଶ୍ରମଣାଃ ବା ଅନ୍ୟେ ବା ପାଷଣ୍ଡା ଗୃହସ୍ଥା ବା ଯେଷୁ ବିହିତୈଷା ଅଗ୍ର୍ୟବୃଦ୍ଧଶୁଶ୍ରୂଷା, ମାତାପିତୃଶୁଶ୍ରୂଷା, ଗୁରୁଣାଂ ଶୁଶ୍ରୂଷା, ମିତ୍ରସଂସ୍ତୁତ ସହାୟଜ୍ଞାତିଷୁ ଦାସଭୃତକେଷୁ ସମ୍ୟକ୍ ପ୍ରତିପତ୍ତିର୍ଦ୍ଦୃଢ଼ଭକ୍ତିତା ତେଷାଂ ତତ୍ରଭବତି ଉପଘାତୋ ବା ବଧୋ ବା ଅଭିରତାନାଂ ବା ନିଷ୍କ୍ରମଣଂ । ଯେଷାଂ ବାପି ସଂବିହିତାନାଂ ସ୍ନେହଃ ଅବିପ୍ରହୀଣ ଏତେଷାଂ ମିତ୍ରସଂସ୍ତୁତସହାୟଜ୍ଞାତୟୋ ବ୍ୟସନଂ ପ୍ରାପ୍ନୁବନ୍ତି, ତତ୍ରୋଽପି ତେଷା ମେବୋପଘାତଃ ଭବତି । ପ୍ରତିଭାଗାଂ ଚୈତତ୍ ସର୍ବମନୁଷ୍ୟାଣାଂ ଗୁରୁମତଂ ଚ ଦେବାନାଂ ପ୍ରିୟସ୍ୟ । ନାସ୍ତି ଚ ସ ଜନପଦୋ ଯତ୍ର ନ ସନ୍ତି ମେ ନିକାୟା ଅନ୍ୟତ୍ରା ଯବନେଷୁ ବ୍ରାହ୍ମଣେ ବା ଶ୍ରମଣେ ବା । ଇହ ନାସ୍ତି ଚ କ୍ୱାପି ଜନପଦେ ଯତ୍ର ନାସ୍ତି ମନୁଷ୍ୟାଣାଂ ମେକତରସ୍ମିନ୍ନପି ପାଷଣ୍ଡେନ ନାମପ୍ରସାଦଃ । ଯାବନ୍ତଜନସ୍ତଦା କଳିଙ୍ଗେଷୁ ଲବ୍ଧେଷୁ ହତଶ୍ଚ ମୃତାଶ୍ଚାପବ୍ୟୂଢ଼ଶ୍ଚ ତତଃ ଶତଭାଗୋ ବା ସହସ୍ରଭାଗୋ ବା ଅଦ୍ୟ ଗୁରୁମତଏବ ଦେବାନାଂ ପ୍ରିୟସ୍ୟ ।

ଯୋଽପି ଚ ଅପକରୋତି କ୍ଷନ୍ତବ୍ୟ ଏବ ମ ତା ଦେବାନାଂ ପ୍ରିୟସ୍ୟ ଯଃ ଶକ୍ୟଃ କ୍ଷମଣାୟ୍ୟ ଯେଽପି ଗୃହ୍ୟାପି ଦେବାନାଂ ପ୍ରିୟସ୍ୟ ବିଜିତେ ଭବନ୍ତି ତଥାପ୍ୟନୁନୟନ୍ତ୍ୟନୁଧ୍ୟାୟନ୍ତ୍ୟନୁତପ୍ୟତେଽପି ଚ ପ୍ରଭାବେ ଦେବାନାଂ ପ୍ରିୟସ୍ୟ ବର୍ଣ୍ଣିତ ଚ ସ ସର୍ବଃ । କମିତ୍ୟ ପତ୍ରପେରନ୍ ଚ ଘ୍ନେୟରନ୍ନିଚ୍ଛତି ହି ଦେବାନାଂ ପ୍ରିୟଃ ସର୍ବଭୂତାନାମକ୍ଷତିଂ ସଂଯମଂ ସମଚର୍ଯ୍ୟାଂ ମୋଦବୃତ୍ତିଂ ଏତଚ୍ଚ ମୁଖ୍ୟଭୂତଂ ବିଜୟେ ଦେବାନାଂ ପ୍ରିୟସ୍ୟ ଯୋ ଧର୍ମବିଜୟଃ । ସ ଚ ପୁନର୍ଲବ୍ଧୋ ଦେବାନାଂ ପ୍ରିୟସ୍ୟେହ ଚ ସର୍ବେଷ୍ୱନ୍ତେଷ୍ୱଷ୍ଟସ୍ୱପି ଯୋଜନଶତେଷୁ ଯତ୍ର ଅନ୍ତିୟୋକ ନାମ

ଯବନରାଜଃ (୧) ଯେନ ଚ ତସ୍ୟାନ୍ତିୟୋକସ୍ୟ ଚତ୍ୱାରୋ ରାଜାନ ତୁରମାୟୋ (୨) ନାମ ଅନ୍ତେକିନ ନାମ (୩) ମକା ନାମ (୪) ଅଲିକସୁନ୍ଦରୋ (୫) ନାମ ନୀଚଃ ଚୋଡ଼ାଃ ପାଣ୍ଡ୍ୟାଃ ଏବଂ ତାମ୍ରପର୍ଣ୍ଣୀୟା (୬) ଏବମେବ ହି ଦରଦାଃ; ବିଷବଜ୍ରେଷୁ (୭) ଯବନକମ୍ବୋଜେଷୁ (୮) ନାଭକେନାଭପ୍ରାନ୍ତେଷୁ ଭୋଜପିତିନକେଷୁ ଅନ୍ଧ୍ରପୁଲନ୍ଦେଷୁ (୯) ସର୍ବତ୍ର ଦେବାନାଂ ପ୍ରିୟସ୍ୟ ଧର୍ମବୃତ୍ତାନ୍ତଂ ବିଧାନଂ ଧର୍ମାନୁଶିଷ୍ଟିଂ ଧର୍ମମନୁବଦନ୍ତ୍ୟନୁବିଧାସ୍ୟନ୍ତି ଚ ।

---

(୧) ଅନ୍ତିୟୋକ (Antiochus II Theos) ସେ ସମୟରେ ସିରିୟାର ଗ୍ରୀକ୍ ଶାସନକର୍ତ୍ତା ଥିଲେ । (ଖ୍ରୀ: ପୂ: ୨୬୧—୨୪୬)

(୨) ତୁରମୟ—ମିସର ରାଜ ଟୋଲେମାୟସ ଫିଲାଡେଲଫସ (Ptolemy II Philadelphus) (ଖ୍ରୀ· ପୂ· ୮୫—୨୪୬) ।

(୩) ଅନ୍ତେକିନ (Antigonus Gonatas) ମାସିଡନର ଗ୍ରୀକରାଜା (ଖ୍ରୀ. ପୂ. ୨୭୭—୨୩୯)

(୪) ମକା (Magus) ଉତ୍ତର ଆଫ୍ରିକାର ସାଇରନ୍ ରାଜ୍ୟର ଗ୍ରୀକ ଅଧିପତି (ଖ୍ରୀ: ପୂ: ୨୮୨—୨୫୮)

(୫) ଅଲିକ ସୁନ୍ଦର (Alexander) ଏପିରସ ରାଜ୍ୟର ଗ୍ରୀକ୍ ନୃପତି (ଖ୍ରୀ· ପୂ· ୨୭୨—୨୫୮)

(୬) ତାମ୍ରପର୍ଣ୍ଣୀ—ଲଙ୍କା ବା ସିଂହଳ ଦ୍ୱୀପ ।

(୭) ଦରଦ ଓ ବିଷବଜ୍ର (ବୈଶାଳୀ)—ଭାରତର ଦୁଇଟି ପ୍ରାଚୀନ ରାଜ୍ୟ

(୮) ଯବନ—ଭାରତର ଉତ୍ତର ପଶ୍ଚିମ ସୀମାନ୍ତରେ ଥିବା Indo-Greek ବା ଭାରତୀୟ ଗ୍ରୀକମାନଙ୍କର ରାଜ୍ୟ । କାମ୍ବୋଜ ରାଜ୍ୟ ଆଫଗାନିସ୍ଥାନରେ ଅବସ୍ଥିତ ଥିଲା ।

(୯) ନାଭକ, ନାଭପ୍ରାନ୍ତ, ଭୋଜ (ବେରାର), ପିତିନିକ, ଆନ୍ଧ୍ର, ପୁଲନ୍ଦ ପ୍ରଭୃତି କ୍ଷୁଦ୍ର ରାଜ୍ୟ ସକଳ ଆଧୁନିକ ମଧ୍ୟପ୍ରଦେଶର ପଶ୍ଚିମାଂଶ ଅନ୍ଧ ଏବଂ ମହାରାଷ୍ଟ୍ର ପ୍ରଦେଶର ଉତ୍ତରାଂଶରେ ଅବସ୍ଥିତ ଥିଲା ।

ଏତଲ୍ଲବ୍ଧମେତାବତା ଭବତି ସର୍ବତ୍ର ବିଜୟଃ ପ୍ରୀତିରସଃ ସଃ । ଗାଢ଼ା ସା ଭବତି ପ୍ରୀତିଃ ପ୍ରୀତିର୍ଧର୍ମବିଜୟେ । ଲଘୁକା ତୁ ଖଲୁ ସା ପ୍ରୀତିଃ । ପାରତ୍ରିକମେବ ମହାଫଳଂ ମନ୍ୟତେ ଦେବାନାଂ ପ୍ରିୟଃ । ଏତସ୍ମୈ ଚାର୍ଥାୟେୟଂ ଧର୍ମଲିପିର୍ଲିଖିତା କିମିତି ପୁତ୍ରାଃ ପ୍ରପୌତ୍ରାଃ ମେ ସ୍ୟୁଃ ନବଂ ବିଜୟଂ ମା ବିଜେତବ୍ୟଂ ମନ୍ୟେରନ୍ ଶରକର୍ଷିଣୋ, ବିଜୟେ କ୍ଷାନ୍ତିଂ ଚ ଲଘୁଦଣ୍ଡତାଂ ଚ ରୋଚୟେୟୁସ୍ତମେବ ବିଜୟଂ ମନ୍ୟନ୍ତାଂ ଯୋ ଧର୍ମବିଜୟଃ । ସ ଐହଲୌକିକଃ ପାରଲୌକିକଃ । ସର୍ବା ଚ ନିରତିର୍ଭବତୁ ଯା ଉଦ୍ୟମରତିଃ ସା ହି ଐହଲୌକିକୀ ପାରଲୌକିକୀ । *

## — ଓଡ଼ିଆ ଅନୁବାଦ —

ରାଜ୍ୟାଭିଷେକର ଅଷ୍ଟମ ବର୍ଷରେ ଦେବପ୍ରିୟ ପ୍ରିୟଦର୍ଶୀ ରଜା କଳିଙ୍ଗ ଦେଶ ଜୟ କରିଥିଲେ । କଳିଙ୍ଗ ଯୁଦ୍ଧରେ ଏକଶତ ପଚାଶ ହଜାର (ଦେଢ଼ ଲକ୍ଷ) ଲୋକ ବନ୍ଦୀ ରୂପେ ସ୍ଥାନାନ୍ତରିତ ହୋଇଥିଲେ । ଶତସହସ୍ର (ଏକଲକ୍ଷ) ଲୋକ ଆହତ ହୋଇଥିଲେ ଓ ତାହାର ବହୁଗୁଣ ଲୋକ ମରିଥିଲେ । କଳିଙ୍ଗ ବିଜୟ ପରେ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଅଦେଶରେ ସେଠାରେ କଠୋର ରୂପେ ଧର୍ମପାଳନ, ଧର୍ମକାର୍ଯ୍ୟ ଓ ଧର୍ମ ଉପଦେଶ ପ୍ରଦାନ ହେଉଅଛି । କଳିଙ୍ଗବିଜୟୀ ପ୍ରିୟଦର୍ଶୀ ରଜା ବର୍ତ୍ତମାନ ଘୋର ଅନୁତାପ କରୁଛନ୍ତି । ବିଜିତ ହେଲେ ସୁଦ୍ଧା ସହସ୍ର ସହସ୍ର ଲୋକମାନଙ୍କର ବଧ, ମରଣ, ଅପବାହ (ସ୍ଥାନାନ୍ତର) ଯୋଗୁଁ ସେ କଳିଙ୍ଗକୁ ଅବିଜିତ ବୋଲି ମନେକରନ୍ତି । ଦେବପ୍ରିୟ ଏପରି ନୃଶଂସ ନରହତ୍ୟା ଯୋଗୁଁ ଘୋର ମନସ୍ତାପ ଭୋଗ କରୁଛନ୍ତି ।

ସେଠାରେ ବାସ କରୁଥିବା ବ୍ରାହ୍ମଣ, ଶ୍ରମଣ ଓ ଅନ୍ୟ ଧର୍ମାବଲମ୍ବୀ ଗୃହସ୍ଥମାନଙ୍କ ଦ୍ୱାରା ମୁଖ୍ୟ ଓ ବୃଦ୍ଧମାନଙ୍କର ସେବା, ମାତୃପିତୃ

* ଏହି ଅନୁଶାସନଟି କଳିଙ୍ଗ, ଭାରତ ତଥା ଗ୍ରୀକ୍ ରାଜ୍ୟମାନଙ୍କର ଇତିହାସ ଆଲୋଚନା କ୍ଷେତ୍ରେ ଏକାନ୍ତ ମୂଲ୍ୟବାନ୍ । ଏହା ସାହାଯ୍ୟରେ ଅଶୋକଙ୍କ ରାଜତ୍ୱକାଳ ମଧ୍ୟ ନିରୂପଣ କରାଯାଏ ।

ଶୁଶ୍ରୂଷା, ଗୁରୁଶୁଶ୍ରୂଷା, ମିତ୍ର ଓ ଜ୍ଞାତିମାନଙ୍କ ପ୍ରତି ଭକ୍ତି ଓ ସ୍ନେହ, ଦାସ ଓ ଭୃତ୍ୟମାନଙ୍କ ପ୍ରତି ଶ୍ରଦ୍ଧା, ଦୟା, ଦୃଢ଼ଭକ୍ତିତା ଇତ୍ୟାଦି ଧର୍ମନିୟମମାନ ପ୍ରତିପାଳିତ ହେଉଥିବ । ତେଣୁ ଏହି ଯୁଦ୍ଧରେ ସେହିପରି ଅନେକ ଧର୍ମପ୍ରାଣ ନିରୀହ ଲୋକ ବିପଦଗ୍ରସ୍ତ ହୋଇଥିବେ । ଆଉ ଯୁଦ୍ଧରେ ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କର ମିତ୍ର ସହାୟ ଓ ଜ୍ଞାତିମାନେ ସେମାନଙ୍କ ପ୍ରତି ପ୍ରଗାଢ଼ ସ୍ନେହ ହେତୁରୁ ସେମାନଙ୍କ ଦୁଃଖରେ ମର୍ମାନ୍ତିକ ବେଦନା ଅନୁଭବ କରିଥିବେ । ଏପରି ମନୁଷ୍ୟ ଭାଗ୍ୟରେ ଘଟିଥାଏ । କିନ୍ତୁ ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଏହାକୁ ଖୁବ୍ ଗୁରୁତର ବୋଲି ମନେ କରୁଛନ୍ତି । ମୋର ସାମ୍ରାଜ୍ୟର ସବୁଠି ନିକାୟମାନେ [ଲୋକ-ପ୍ରତିନିଧି-ସଙ୍ଘ] ବ୍ରାହ୍ମଣ, ଶ୍ରମଣ ନିର୍ବିଶେଷରେ ସମସ୍ତ ଧର୍ମପ୍ରତି ସମଭାବ ପ୍ରଦର୍ଶନ କରିବାପାଇଁ ଆଦିଷ୍ଟ ହୋଇଛନ୍ତି । କଳିଙ୍ଗ ଯୁଦ୍ଧରେ ଯେତିକି ଲୋକ ଆହତ, ମୃତ ଓ ଦେଶାନ୍ତରିତ ହୋଇଥିଲେ, ତାହାର ଏକ ଶତାଂଶ ବା ଏକ ସହସ୍ରାଂଶ ଲୋକଙ୍କର ବର୍ତ୍ତମାନ ଏହିପରି ଦୁର୍ଦ୍ଦଶା ଘଟିଲେ ଦେବପ୍ରିୟ ପ୍ରିୟଦର୍ଶୀ ମର୍ମାନ୍ତିକ ବେଦନା ଅନୁଭବ କରିବେ ।

ଅପକାରୀ ଲୋକ ମଧ୍ୟ ବର୍ତ୍ତମାନ ସୁଦ୍ଧା ନିଜର ଦୋଷ ସ୍ୱୀକାର କଲେ କ୍ଷମା ପାଇବାର ଯୋଗ୍ୟ ବିବେଚିତ ହେବ । ଯେ କୌଣସି ଲୋକ ଏବେମଧ୍ୟ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଶରଣାପନ୍ନ ହୋଇ ଅନୁନୟ ବିନୟପୂର୍ବକ ନିଜର ଦୋଷ ସ୍ୱୀକାର କରିବ ଓ ସେଥିପାଇଁ ଅନୁତାପ କରିବ, ସେ କ୍ଷମା ପାଇବାର ଯୋଗ୍ୟ ବୋଲି ବିବେଚିତ ହେବ । ଏହାଦ୍ୱାରା ଲୋକମାନେ ନିଜର ଦୋଷପାଇଁ ଲଜ୍ଜିତ ହେବେ ଓ ଧ୍ୱଂସରୁ ରକ୍ଷା ପାଇବେ । କାରଣ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ମତରେ ସମସ୍ତଙ୍କର ଅକ୍ଷତ ବା ଉପକାର ସାଧନ, ସଂଯମ, ସମଚର୍ଯ୍ୟା, ମୋଦବୃତ୍ତି ରକ୍ଷା ଧର୍ମବିଜୟର ମୁଖ୍ୟ ଉଦ୍ଦେଶ୍ୟ । ଦେବପ୍ରିୟ ପ୍ରିୟଦର୍ଶୀଙ୍କର ବିଜୟ ଧର୍ମ ଉପରେ ପ୍ରତିଷ୍ଠିତ ।

ଦେବପ୍ରିୟ ପ୍ରିୟଦର୍ଶୀ କଳିଙ୍ଗରେ ତଥା ଅଷ୍ଟଶତଯୋଜନ ଦୂରବର୍ତ୍ତୀ ଅନ୍ତିୟୋକ ନାମ ଯବନରାଜାଙ୍କର ରାଜ୍ୟରେ ଓ ଚତୁ

ନକଟବର୍ତ୍ତୀ ଭୂରମସ୍ତ, ଅନ୍ତକୋନ, ମଗ, ଅଲକସୁନ୍ଦର ନାମକ ଅନ୍ୟ ଗ୍ରହେଟି ଯବନ ରାଜାଙ୍କ ଦେଶରେ ତଥା ନୀଚ ଚୋଳ, ପାଣ୍ଡ୍ୟ ଓ ତାମ୍ରପର୍ଣ୍ଣୀ, ଦରଦ, ହିଡବେନ୍ଦ୍ର ପ୍ରଭୃତି ରାଜ୍ୟରେ ଧର୍ମବିଜୟର ପ୍ରତିଷ୍ଠା କରିଛନ୍ତି । ଯବନ, କାମ୍ବୋଜ, ନାଭକ, ନାଭପ୍ରାନ୍ତ, ଭୋଜ, ପିତିନକ, ଆନ୍ଧ୍ର ପୁଳନ୍ଦ ପ୍ରଭୃତି ଦେଶମାନଙ୍କରେ ସର୍ବତ୍ର ଦେବପ୍ରିୟ ପ୍ରିୟଦର୍ଶୀଙ୍କର ଧର୍ମାନୁଶିଷ୍ଟି ଧର୍ମାନୁଶାସନ ପ୍ରବର୍ତ୍ତିତ ହୋଇଅଛି । ଦେବପ୍ରିୟ ପ୍ରିୟ-ଦର୍ଶୀଙ୍କର ଦୂତ (ଧର୍ମ ପ୍ରଚାରକମାନେ) ଯେଉଁସବୁ ସ୍ଥାନକୁ ଯାଇ ନାହାନ୍ତି, ସେ ସମସ୍ତ ସ୍ଥାନର ଲୋକେ ମଧ୍ୟ ଦେବପ୍ରିୟଙ୍କର ଧର୍ମ ଉପଦେଶ ଶ୍ରବଣ, ଧର୍ମବିଧାନ, ଧର୍ମଚର୍ଚ୍ଚା, ଧର୍ମାନୁବିଧାନ କରୁଛନ୍ତି ଓ କରିବେ ।

ସର୍ବତ୍ର ଏପରି (ବିଜୟ) ଧର୍ମବିଜୟ ଲାଭ କରି ସେ ଗଭୀର ଆତ୍ମ-ପ୍ରସାଦ ଲାଭ କରୁଛନ୍ତି । ପ୍ରୀତିପୂର୍ଣ୍ଣ ଧର୍ମବିଜୟରେ ତାଙ୍କର ପ୍ରଗାଢ଼ ଅନୁରାଗ ହୋଇଅଛି । କିନ୍ତୁ ପ୍ରୀତିଲାଭ ଅତି ସାମାନ୍ୟ କଥା । ପାରତ୍ରିକ ସୁଖଭୋଗକୁ ସେ ଅଧିକ ମୂଲ୍ୟବାନ ବୋଲି ମନେ କରନ୍ତି । ମୋର ପୁତ୍ର ପୌତ୍ରମାନଙ୍କର ଅବଗତି ନିମିତ୍ତ ମୋର କଳିଙ୍ଗ ବିଜୟବୃତ୍ତାନ୍ତ ଲିଖିତ ହୋଇଅଛି । ଶରକର୍ଷଣ (ହତ୍ୟା) ଦ୍ୱାରା ଯେ ବିଜୟ ଲାଭ ହୁଏ, ତାହା ଅତି ନଗଣ୍ୟ । ସେଥିରେ ଆତ୍ମାର ଶାନ୍ତିବିଧାନ ହୁଏନାହିଁ । କ୍ଷମା ଓ ଲଘୁଦଣ୍ଡତା ଯୁକ୍ତ ଧର୍ମବିଜୟକୁ ସେ ଜଗତର ଶ୍ରେଷ୍ଠ ବସ୍ତୁ ବୋଲି ମନେ କରନ୍ତି । ଏବମ୍ବିଧ ଧର୍ମବିଜୟ ଇହ ଓ ପରଲୋକରେ ସୁଖ ପ୍ରଦାନ କରେ । ଧର୍ମବିଜୟ ପାଇଁ ସମସ୍ତ ଉଦ୍ୟମ ଓ ଶକ୍ତି ବ୍ୟୟିତ ହେଉ ।

## ଚତୁର୍ଦ୍ଦଶ ଅନୁଶାସନ

### କ୍ଷମା

( ଧଉଳୀର ଏକାଦଶ ଅନୁଶାସନ )

— ମୂଳ —

(୧୭) ଇୟଂ ଧମଲିପୀ ଦେବାନାଂ ପିୟେନ ପିୟଦସିନା ଲାଜନା ଲିଖ (ପିତା) । (ଅଥି ଯେବା ସଖିତେନ) ଅଥି ମଝିମେନ (ଅଥି

ଛଅଠେନ) ନୋହି ସବ ସବତ ଘଟିତେ । (୧୮) ମହଲକେ ହି ବିଜୟେ ବହୁକେ ଚ ଲିଖିତେ ଲିଖିପିସାତ ଚେ (ନିଚ୍ୟଂ) । ଅଥି ଚୁ ହେତ (ପୁନଂ-ପୁନ ଲପିତେ ତସା ତସା ଅଥସା ମଧୁଲିୟାୟେ ଯେନ) (୧୯) ଜଂନ ତ ଜନେ ତଥା ପଟିପଜେୟା ତ ଏ କିଚି ହେଜ ସମତି ଲିଖିତେ (ଦେସ ବା ବା ସଛୟ କାଲକଂ) ବା ଅଲୋଚୟିତୁ ଲିପିକଲ (ପଲାଧେନ ବା)

— ସଂସ୍କୃତାନୁବାଦ —

ଇଦଂ ଧର୍ମଲିପି ଦେବାନାଂପ୍ରିୟେଣ ପ୍ରିୟଦର୍ଶିନା ରାଜ୍ଞା ଲେଖିତା । ଅସ୍ତ୍ୟେବ ସଂକ୍ଷିପ୍ତେନ ଅସ୍ତି ମଧ୍ୟମେନ ଅସ୍ତି ବିସ୍ତୃତେନ । ନହି ସର୍ବତ୍ର ସର୍ବଂ ଘଟିତଂ ମହାଲୟୋହି ବିଜୟୋ ବହୁଚ ଲିଖିତଂ ଲେଖାପିଷ୍ୟାମି ଚୈବ ନିତ୍ୟଂ । ଅସ୍ତି ଚ ଅତ୍ର ପୁନଃ ପୁନର୍ଲିଖିତଂ ତସ୍ୟ ତସ୍ୟାର୍ଥସ୍ୟ ମାଧୁର୍ଯ୍ୟାୟ ଯେନ ଜନ ତଥା ପ୍ରତିପଦ୍ୟେତ । ତତ୍ର ଯଦତ୍ର କିଂଚିଦ ସମାପ୍ତଂ ଲିଖିତମସଦୃଶଂ ବା ସଂକ୍ଷେପକାରଣଂ ବା ଆଲୋଚୟିତ୍ୱା ଲିପିକରାପରାଧେନ ବା ।

— ଓଡ଼ିଆ ଅନୁବାଦ —

ଏହି ଧର୍ମଲିପି ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଆଦେଶରେ ଖୋଦିତ ହୋଇଅଛି । ଏଥିମଧ୍ୟରୁ କେତେକ ସଂକ୍ଷିପ୍ତ, କେତେକ ମଧ୍ୟମ, କେତେକ ଅତିଦୀର୍ଘ, କାରଣ ସର୍ବତ୍ର ସବୁ କଥା ସମାନ ନାହିଁ । ବିପୁଳ ପୃଥିବୀ ମୋର ବିଜିତ । ଏଥିରେ ଅନେକ ଲିପି ଖୋଦିତ ହୋଇଅଛି ଓ ନିତ୍ୟ ଅନେକ ଲିପି ଖୋଦିତ ହେବ । ଲୋକମାନଙ୍କର ସ୍ପଷ୍ଟବୋଧ ଓ ମାଧୁର୍ଯ୍ୟାସ୍ୱାଦନ ନିମିତ୍ତ ଏଥିରେ ଅନେକ ବିଷୟ ପୁନଃ ପୁନଃ ଲିଖିତ ହୋଇଅଛି । ଲିପିକାରର ଅପରାଧ ହେତୁରୁ କେତେକ ଅସମ୍ପୂର୍ଣ୍ଣ ଭାବରେ ଖୋଦିତ ଓ କେତେକ ସନ୍ଦେହୋତ୍ପାଦକ ହୋଇଥିବ ।

# ସପ୍ତମ ଅଧ୍ୟାୟ

## ଧଉଳୀର କଳିଙ୍ଗାନୁଶାସନ ଦ୍ୱୟ*

## "ପ୍ରଥମ କଳିଙ୍ଗାନୁଶାସନ"

— ମୂଳ —

(୧) ଦେବାନଂ ପିୟସ ବଚନେନ ତୋସଲିୟଂ ମହାମତ ନଗଲବିୟୋହାଲକା ହେବଂ ବତବିୟ (୨) ଅଂ କିଛି ଦଖାମି ହକଂ ତଂ ଇଛାମି କିଂତି କଂମନ ପଟିପାଦୟେହଂ ଦୁବାଲତେ ଚ ଆଲଭେହଂ (୩) ଏସ ଚ ମୋଖିୟମତ ଦୁବାଲ ଏତସି ଅଠସି ଅଂ ତୁଫେସୁ ଅନୁସଥି (୪) ତୁଫେ ହି ବହୂସୁ ପାନସହସେସୁ ଆୟତ, ପନୟଂ ଗଛେମ ସୁ-ମୁନିସାନଂ (୫) ସବେ ମୁନିସେ ପଜା ମମା (୬) ଅଥା ପଜାୟେ ଇଛାମି ହକଂ କିଂତି ସବେନ ହିତସୁଖେନ ହିଦଲୋକିକ ପାଲଲୋକିକାୟେନ ୟୁଜେବୂ ତି ତଥା ମୁନିସେସୁ ପି ଇଛାମି ହକଂ (୭) ନୋ ଚ ପାପୁନାଥ ଆବଗମୁକେ ଇୟଂ ଅଠେ (୮) କେଛ ବ ଏକପୁଲିସେ × × ନାତି ଏତଂ ସେ ପି ଦେସଂ ନୋ ସବଂ (୯) ଦେଖତ ହି ତୁଫେ ଏତଂ ସୁବିହିତା ପି (୧୦) ନିତିୟଂ ଏକ ପୁଲିସେ ପି ଅଥି ଯେ ବଂଧନଂ ବା ପଲିକିଲେସଂ ବା ପାପୁନାତି (୧୧) ତତ ହୋତ ଅକସ୍ମା ତେନ ବଧନଂ-ତିକ ଅଂନେ ଚ ... ହୁ ଜନେ ଦବିୟେ ଦୁଖୀୟତି (୧୨) ତତ

---

* କଳିଙ୍ଗାନୁଶାସନଦ୍ୱୟର ପାଠ ହୁଲ୍‌ଜ୍ ପ୍ରଣୀତ ପୁସ୍ତକରୁ ଗୃହୀତ — "*Inscriptions of Asoka*" by Dr. E. Hultzsch, Ph.D., New Edition, 1925, ୧୨-୧୩ ଓ ୧୬-୧୮ ପୃଷ୍ଠା ।

ଇଛିତବିୟେ ଦୁପଟିପେନ୍ତୁ କଂତି ମଝଂ ପଟିପାଦୟେମା ତି (୧୩) ଇୟମେଵ ଚୁ ଜାନନ୍ତୁ ନୋ ସଂପଟିପଜନ୍ତି ଇସାୟୁ ଅନୁଲେପେନ ନିଠୁଲିୟେନ ତୁଲନାୟୁ ଅନାବୁତିୟୁ ଆଲସିୟେନ କଲମଥେନ (୧୪) ସେ ଇଛିତ-ଵିୟେ କଥଂ ଏତେ ଜନ ତାହୋ ଦୁଂବଵୁ ମମାତି (୧୫) ଏତେନ ଚ ସବସ ମୁଲେ ଅନାସୁଲୋପି ଅନୁଜନା ଚ (୧୬) ନତିୟଂ ଏ କଲଂଠେ ସିୟା ମତେ ଉଗଚ ସଚଲତଵିୟେ ତୁ ବଟିନଵିୟେ ଏତଵିୟେ ବା (୧୭) ହେଵମେଵ ଏ ଦଖେୟୁ ତୁଫାକ ତେନ ଵତଵିୟେ ଆନଂନେ ଦେଖତ ହେଵଂ ଚ ଦେଵାନଂପିୟସ ଅନୁସଥି (୧୮) ସେ ମହାଫଲେ ଏ ତସ ସଂପଟିପାଦ ମହାଅପାୟେ ଅସଂପଟିପତି (୧୯) ଵିପଟିପାଦୟମୀନେ ନୁ ଏତଂନଥି ସ୍ଵଗସ ଅଲଧି ନୋ ଲାଜାଲଧି (୨୦) ଦୁଆହଲେ ନୁ ଇମସ କାମସ ମେ କୁତେ ମନୋଅତିଲେକେ (୨୧ ସଂପଟିପଜମୀନେ ଚୁ ଏତଂ ସ୍ଵଗଂ ଆଲାଧୟିସଥ ମମ ଚ ଅନନିୟଂ ଏହଥ (୨୨) ଇୟଂ ଚ ଲିପି ତିସନଖତେନ ସୋତଵିୟା (୨୩) ଅଂତଲା ପି ତିସେନ ଖନସି ଖନସି ଏକେନପି ସୋତଵିୟ (୨୪) ହେଵଂ ଚ ଫଂଲତଂ ତୁଫେ ଚଘଥ ସଂପଟିପାଦୟିତଵେ (୨୫) ଏତାୟେ ଅଠାୟେ ଇୟଂ ଲିପି ଲିଖିତ ହିଦ ଏନ ନଗଲଵିୟୋହାଲକା ସସ୍ଵତଂ ସମୟଂ ଯୁଜେୟୁ... ତସ ଅକସ୍ମା ପଲିବୋଧେ ଵ ଅକସ୍ମା ପଲିକିଲେସେ ଵ ନୋ ସିୟା ତି (୨୬) ଏତାୟେ ଚ ଅଠାୟେ ହକଂ × × ମତେ ପଂଚସୁ ପଂଚସୁ ଵସେସୁ ନିଖାମୟିସାମି ଏ ଅଖଖସେ ଅଚଂଡେ ସଖିନାଲଂଭେ ହୋସତି ଏତଂ ଅଠଂ ଜାନିତୁ ... ତଥା କଲଂତି ଅଥ ମମ ଅନୁସଥୀ (୨୭) ଉଜେନିତେ ପି ଚୁ କୁମାଲେ ଏତାୟେଵ ଅଠାୟେ ନିଖାମୟିସ ... ହେଦିସମେଵ ଵଗଂ ନୋ ଚ ଅତିକାମୟିସତି ତିଂନି ଵସାନି (୨୮) ହେମେଵ ତଖସିଲାତେ ପି (୨୯) ଅଦା ଅ ତେ ମହାମାତା ନିଖମିସଂତି ଅନୁସୟାନଂ ତଦା ଅହାପୟିତୁ ଅତନେ କଂମଂ ଏତଂ ପି ଜାନିସଂତି ତଂ ପି ତଥା କଲଂତି ଅଥ ଲାଜିନେ ଅନୁସଥୀତି ।

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟସ୍ୟ ବଚନେନ ତୋସଲ୍ୟାଂ ମହାମାତ୍ରା ନଗରବ୍ୟବହାରକାଶ୍ଚ ବକ୍ତବ୍ୟା ଯତ୍କିଞ୍ଚିତ୍ପଶ୍ୟାମ୍ୟହଂ ତଦିଚ୍ଛାମି କମିତି କର୍ମଣା ପ୍ରତିବେଦୟେୟଂ । ଦ୍ୱାରତଶ୍ଚାରଭେୟମେତଚ୍ଚ ମେ ମୁଖ୍ୟମତଂ ଦ୍ୱାରମସ୍ମିନ୍ନର୍ଥେ ଯଦ୍ୟୁଷ୍ମାସ୍ୱନୁଶିଷ୍ଟିର୍ଯୂୟଂ ହି ବହୁଷୁ ପ୍ରାଣସହସ୍ରେଷ୍ୱାୟତ୍ତାଃ ପ୍ରଣୟଂ ଗଚ୍ଛେମ ସୁମନୁଷ୍ୟାଣାଂ । ସର୍ବେ ମନୁଷ୍ୟାଃ ପ୍ରଜା ମମ । ଯଥା ପ୍ରଜାୟୈ ଇଚ୍ଛାମ୍ୟହଂ କମିତି ସର୍ବେଣ ହିତସୁଖେନ ଐହଲୌକିକେନ ପାରଲୌକିକେନ ଚ ଯୁଜ୍ୟେରନ୍ନିତି ତଥା ସର୍ବେଷୁ ମନୁଷ୍ୟେଷ୍ୱପୀଚ୍ଛାମ୍ୟହଂ, ନ ଚ ପ୍ରାପ୍ନୁଥ ଯାବଦ୍‌ଗମକୋଽୟମର୍ଥଃ । କଶ୍ଚିଦପ୍ୟେକଃ ପୁରୁଷଃ ଜାନାତ୍ୟେତତ୍ ସୋଽପି ଦେଶଂ ନ ସର୍ବଂ । ପଶ୍ୟତ ହି ଯୂୟମିଦଂ, ସୁବିହିତାପି ନୀତିରିୟମେକ ପୁରୁଷୋଽପ୍ୟସ୍ତି ଯୋ ବନ୍ଧନଂ ବା ପରିକ୍ଲେଶଂ ବା ପ୍ରାପ୍ନୋତି ତତ୍ରାକସ୍ମାତ୍ତେନ ବନ୍ଧନାନ୍ତିକମନ୍ୟଚ୍ଚ ବହୁଜନୋ ଦବୀୟୋ ଦୁଃଖୀୟତି ତତ୍ର ଏଷ୍ଟବ୍ୟଂ ଯୁଷ୍ମାଭିଃ କମିତି ମଧ୍ୟଂ ପ୍ରତିପାଦୟେମେତି । ଏଭିସ୍ତୁ ଜାତୈର୍ନ ସମ୍ପ୍ରତିପଦ୍ୟତେ ଈର୍ଷ୍ୟୟା, ଅଶ୍ରମେଣ, ନୈଷ୍ଠୁର୍ଯ୍ୟେଣ, ତ୍ୱରୟା, ଅନାବୃତ୍ତ୍ୟା, ଆଲସ୍ୟେନ କ୍ଲମେନ । ତଦେଷ୍ଟବ୍ୟଂ କମିତି ଏତାନି ନ ଭବେୟୁର୍ମମେତି । ଏତସ୍ୟ ଚ ସର୍ବସ୍ୟ ମୂଲମନଶ୍ରମଶ୍ଚ, ଅତ୍ୱରା ଚ ନିତ୍ୟଂ ତସ୍ମାଦୁତ୍ଥାୟ ସଂଚରିତବ୍ୟଂ ବ୍ରଜିତବ୍ୟମେତବ୍ୟଂ ବା । ଏବମେବ ଦ୍ରଷ୍ଟବ୍ୟା ଯୁଷ୍ମାକଂ କୃତେ ନ ବକ୍ତବ୍ୟଂ । ଆଜ୍ଞାଂ ନ ପଶ୍ୟଥ ଏବଂ ଚେବଂ ଚ ଦେବାନାଂ ପ୍ରିୟସ୍ୟାନୁଶିଷ୍ଟିଃ । ତନ୍ମହାଫଲମେତସ୍ୟ ସମ୍ପ୍ରତିପାଦନଂ ମହାପାୟୋଽସ୍ୟ ଅସମ୍ପ୍ରତିପତ୍ତି, ଅସମ୍ପ୍ରତିପଦ୍ୟମାନୈର୍ହି ଏତନ୍ନାସ୍ତି ସ୍ୱର୍ଗସ୍ୟାରାଦ୍ଧିର୍ନ ରାଜାରାଦ୍ଧିଃ । ଦ୍ୱିଫଲୋ ହି ଅସ୍ୟ କର୍ମଣୋ ମୟା କୃତୋ ମନୋଽତିରେକଃ । ସମ୍ପ୍ରତିପଦ୍ୟମାନାସ୍ତ୍ୱେ ତତ୍ର ସ୍ୱର୍ଗମାରାଧୟିଷ୍ୟଥ ତଥା ମମ ଆନୃଣ୍ୟମେଷ୍ୟଧ୍ୱେ । ଇୟଂ ଚ ଲିପି ତିଷ୍ୟନକ୍ଷତ୍ରେଣ ଶ୍ରୋତବ୍ୟା, ଅନ୍ତରାପି ଚ ତିଷ୍ୟେ କ୍ଷଣେ କ୍ଷଣେ ଏକେନାପି ଶ୍ରୋତବ୍ୟା । ଏବଂ ଚ କୁର୍ବନ୍ତୋ ଯୂୟଂ ଚେଷ୍ଟଧ୍ୱଂ ସମ୍ପ୍ରତିପାଦୟିତୁମ୍ । ଏତସ୍ମୈ

ଅର୍ଥାୟୈଷଂ ଲିପିର୍ଲେଖିତା ସ୍ୱତେନ ନଗରବ୍ୟବହାରକାଃ ଶାଶ୍ୱତଂ ସମୟଂ ଯୁଞ୍ଜେୟରନ୍ନିତି ନରେଜନସ୍ୟା କସ୍ମାତ୍ ପରିବାଧୋ ବା ଅକସ୍ମାତ୍ ପରିକ୍ଲେଶୋ ବା ନ ସ୍ୟାତ୍ । ଏତସ୍ମୈ ଅର୍ଥାୟାହଂ ଧର୍ମତଃ ପଞ୍ଚସୁ ପଞ୍ଚସୁ ବର୍ଷେଷୁ (ବର୍ଷଂ) ନିଷ୍କ୍ରାମୟିଷ୍ୟାମି ଯଃ ଅକର୍କଶଃ ଅଚଣ୍ଡଃ ଶ୍ଳକ୍ଷ୍ଣାରମ୍ଭୋ ଭବିଷ୍ୟତି । ଏତମର୍ଥଂ ଜାନନ୍ତସ୍ତଥା କୁର୍ବନ୍ତୁ । ଯଥା ସମସ୍ୟାନୁଶିଷ୍ଟିରିତି । ଉଜ୍ଜୟିନୀତୋଽପି ଚ କୁମାର ଏତସ୍ମୈ ଅର୍ଥାୟ ନିଷ୍କ୍ରାମୟିଷ୍ୟତି, ଈଦୃଶମେବ ବର୍ଗଂ ନ ଅତିକ୍ରମୟିଷ୍ୟତି ତ୍ରୀଣି ବର୍ଷାଣି । ଏବମେବ ତକ୍ଷଶିଳାତୋଽପି । ଯଦା ଚ ତେ ମହାମାତ୍ରା ନିଷ୍କ୍ରମିଷ୍ୟନ୍ତ୍ୟନୁସଂଯାନଂ ତଦା ଅହାପୟନ୍ତ ଆତ୍ମନଃ କର୍ମ ଏତଦପି ଜ୍ଞାସ୍ୟନ୍ତି ତଦପି ତଥା କୁର୍ବନ୍ତୁ ଯଥା ରାଜ୍ଞୋଽନୁଶିଷ୍ଟିରିତି ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀ (ଅଶୋକ)ଙ୍କ ଆଦେଶରେ ତୋଷଳୀରେ ନିଯୁକ୍ତ ମହାମାତ୍ୟ ଓ ନଗରବ୍ୟବହାରକ (୧) ମାନଙ୍କ ଉଦ୍ଦେଶ୍ୟରେ ଲିଖିତ ହୋଇଅଛି —

ମୁଁ ଯାହା କିଛି ମନରେ ଭାବେ ତାହାକୁ ଉତ୍ତମ ରୂପେ କାର୍ଯ୍ୟରେ ପରିଣତ କରିବାକୁ ଇଚ୍ଛା କରେ । ଏ ବିଷୟରେ ଉପଯୁକ୍ତ ଉପାୟ ହେଉଛି, ତୁମ୍ଭମାନଙ୍କୁ ଉପଦେଶ ଦେବା । କାରଣ ତୁମ୍ଭମାନଙ୍କ ଉପରେ ସହସ୍ର ସହସ୍ର ଲୋକଙ୍କର ଶାସନଭାର ନ୍ୟସ୍ତ ହୋଇଅଛି । ମୁଁ ଉତ୍ତମ ଲୋକମାନଙ୍କର ସ୍ନେହ ଓ ସହୃଦୟତା ଇଚ୍ଛା କରେ । ସବୁ ପ୍ରଜା ମୋର ସନ୍ତାନ ତୁଲ୍ୟ । ମୁଁ ନିଜର ପ୍ରଜା (୨) (ସନ୍ତାନ)ମାନଙ୍କ ପରି ସେମାନଙ୍କର ଐହିକ ଓ ପାରତ୍ରିକ ସୁଖ କାମନା କରେ । ତୁମମାନଙ୍କ

---

(୧) ନଗରବ୍ୟବହାରକ— ନଗରପରିଚାଳକ (City Magistrate). ହାତୀଗୁମ୍ଫା ଲେଖରେ ଥିବା 'ନଗର ଅକ୍ଷଦଣ୍ଡ' ଏହାର ପ୍ରତିଶବ୍ଦ ।

(୨) ପ୍ରଜା—ସନ୍ତାନ, ଯଥା ପ୍ରଜୋତ୍ପାଦ—ସନ୍ତାନ ଉତ୍ପାଦନ ।

ମଧ୍ୟରେ କେହିହେଲେ ମୋର ଉଦ୍ଦେଶ୍ୟ ପୂର୍ଣ୍ଣମାତ୍ରାରେ ବୁଝିପାରି ନାହିଁ । ଏହି ମତ ଅତି ସୁବିହିତ । ଯଦି କୌଣସି ଲୋକ ନିଜ ଭାଗ୍ୟ ଦୋଷରୁ କାରାବାସ ବା ନିର୍ଯ୍ୟାତନା ଭୋଗ କରେ ତାହାହେଲେ ଅନ୍ୟାନ୍ୟ ଅନେକ ତାହାର ଦୁଃଖରେ ବ୍ୟସ୍ତ ହୁଅନ୍ତି । ତେଣୁକରି ଦଣ୍ଡଦାନ ବିଷୟରେ ତୁମ୍ଭେମାନେ ଅତିରିକ୍ତ କଠୋରତା ଓ ଅତିରିକ୍ତ ଦୟା ତ୍ୟାଗ କରି ସର୍ବଦା ମଧ୍ୟମ ପଥର ପଥିକ ହେବ । ଈର୍ଷ୍ୟା, ଆଳସ୍ୟ, ନିଷ୍ଠୁରତା, ଚଞ୍ଚଳତା, ଅଦୂରଦର୍ଶିତା, କ୍ଲାନ୍ତି ପ୍ରଭୃତି ସେ ପଥରେ ପ୍ରଧାନ ପ୍ରତିବନ୍ଧକ । ତେଣୁ ସବୁବେଳେ ଏମାନଙ୍କ ବଶବର୍ତ୍ତୀ ନ ହେବା ପାଇଁ ଉଦ୍ୟମ କରିବା ଉଚିତ । ଅନାଳସ୍ୟ ଓ ଧୀରତା ଏମାନଙ୍କର ମୂଳଭିତ୍ତି । ତେଣୁ ଏହା ଅଭ୍ୟାସ କରିବା ଉଚିତ । ଆଳସ୍ୟ ତ୍ୟାଗ କରି ଉଠ, ଅଗ୍ରସର ହୁଅ ଓ ମୋର ଆଦେଶାନୁରୂପ ବକ୍ତୃତା ଉପଦେଶ ଦିଅ । ଦେବପ୍ରିୟ ପ୍ରିୟଦର୍ଶୀଙ୍କର ଏହି ଆଦେଶକୁ ତୁମେ କ'ଣ ଜାଣି ପାରୁନାହଁ ?

ଆଦେଶ ପାଳନ ମହାଫଳପ୍ରଦ ଓ ଆଦେଶଲଙ୍ଘନ ମହାବିପତ୍ତିଜନକ । ଯେଉଁମାନେ ଆଦେଶ ଲଙ୍ଘନ କରୁଛନ୍ତି, ସେମାନେ ନିଜର ସ୍ୱାର୍ଥହାନି ଓ ରାଜାଙ୍କର ଶତ୍ରୁତାଚରଣ କରୁଛନ୍ତି । ଏପରି (ରାଜାଙ୍କ ଆଦେଶମତେ) କାର୍ଯ୍ୟସାଧନ କଲେ, ଦୁଇଟି ଫଳଲାଭ ହେବ । ପ୍ରଥମଟି ସ୍ୱର୍ଗଲାଭ ଓ ଦ୍ୱିତୀୟଟି ମୋର ସନ୍ତୋଷ ବିଧାନ । ଏହି ଧର୍ମଲିପି ତିଷ୍ୟ (ନକ୍ଷତ୍ର) ଯୁକ୍ତ ଦିନମାନଙ୍କରେ ଲୋକମାନଙ୍କୁ ଶୁଣାଇବ । ଆଉ ମଧ୍ୟେ ମଧ୍ୟେ ଜଣେ ଲୋକ ସୁଦ୍ଧା ଇଚ୍ଛା କଲେ ବୁଝାଇ ଦେବ । ଏପରି ଭାବରେ ତୁମ୍ଭେମାନେ ମୋର ଆଦେଶ ପାଳନ କରିବ । ଏହି ଉଦ୍ଦେଶ୍ୟ ସାଧନ ନିମିତ୍ତ ଏହି ଲିପି ଖୋଦିତ ହେଲା । ନଗର ବ୍ୟବହାରକମାନେ ଚିରକାଳ ପ୍ରଜାଙ୍କ ହିତରେ ସମସ୍ତ ନିୟୋଗ କରିବେ ଓ (ତୋଷଳୀ) ନଗରବାସୀମାନଙ୍କୁ ଆକସ୍ମିକ ଦୁର୍ଘଟଣା ଓ ବିପତ୍ତିରୁ ସର୍ବଦା ରକ୍ଷା କରିବେ; ଏହି ଉଦ୍ଦେଶ୍ୟ ସିଦ୍ଧି ପାଇଁ ମୁଁ ପ୍ରତି ପାଞ୍ଚବର୍ଷରେ ଦୟାଳୁ, ଶାନ୍ତ, ସୁଶୀଳ 'ବର୍ଗମାନଙ୍କୁ'

ପଠାଇବ । (୩) ମୋର ଉଦ୍ଦେଶ୍ୟ ବୁଝି ମୋ ଆଦେଶ ଅନୁସାରେ କାର୍ଯ୍ୟ କର । ଉଜ୍ଜୟିନୀରୁ ମଧ୍ୟ ତିନିବର୍ଷ ଗତ ନ ହେଉଣୁ କୁମାର (୪) ଏହି ଉଦ୍ଦେଶ୍ୟରେ ବର୍ଗ (ପ୍ରଚାରକ)ମାନଙ୍କୁ ପଠାଇବେ । ତକ୍ଷଶୀଳାରୁ ମଧ୍ୟ ସେହିପରି କର୍ମଚାରୀମାନେ ଆସିବେ । ଯେତେବେଳେ 'ମହାମାତ୍ର' ମାନେ ଦେଶ ଭ୍ରମଣରେ ବହିର୍ଗତ ହେବେ ସେତେବେଳେ ନିଜର କର୍ତ୍ତବ୍ୟ କାର୍ଯ୍ୟ ଯେପରି ରାଜାଜ୍ଞାନୁଯାୟୀ ଅନ୍ୟାନ୍ୟ ବିଷୟମାନ ବୁଝିବେ ।

## "ଦ୍ୱିତୀୟ କଳିଙ୍ଗାନୁଶାସନ"

### — ମୂଳ —

(୧) ଦେବାନଂ ପିୟସ ବଚନେନ ତୋସଲିୟଂ କୁମାଲେ ମହାମାତା ଚ ବତବିୟ (୨) ଅଂ କିଛି ଦଖାମି ହକଂ ତଂ × × ଦୁବାଲତେ ଚ ଆଲଭେହଂ (୩) ଏସ ଚ ମେ ମୋଖମତ ଦୁବାଲା ଏତସି ଅଠସି ଅଂ ତୁଫେସୁ × × ମମ (୫) ଅଥ ପଜାୟେ ଇଛାମି ହକଂ କିଂତି ସବେନ ହିତସୁଖେନ ହିଦଲୋକିକ ପାଲଲୋକିକାୟେ ଯୁଜେବୁତି ହେବଂ × × (୬) ସିୟା ଅଂତାନଂ ଅବିଜିତାନଂ କିଛଂଦେ ସୁ ଲାଜ ଅଫେସୁ (୭) × × ଏବ ଇଛ ମମ ଅଂତେସୁ × × ପାପୁନେବୁ ତେ ଇତି ଦେବାନଂ ପିୟ × × ଅନୁବିଗିନ ମମାୟେ ହୁବେବୁ ତି ଅସ୍ୱସେବୁ ଚ ସୁଖଂ ମେବ ଲହେବୁ ମମତେ ନୋ ଦୁଖଂ ହେବଂ × × ନେବୁ ଇତି ଖମିସତି ନେ ଦେବାନଂପିୟେ ଅଫାକା ତି ଏ ଚକିୟେ ଖମିତବେ ମମ ନିମିତଂ ଚ ଧଂମଂ ଚଲେବୁ ହିଦଲୋକଂ ପଲଲୋକଂ ଚ ଆଲାଧୟେବୁ

---

(୩) ନଗ୍ରମଣ — ପୂର୍ବେ ତୋଷଳୀ, ଉଜ୍ଜୟିନୀ, ତକ୍ଷଶୀଳା, ପାଟଳୀପୁତ୍ର ଓ ସୁବର୍ଣ୍ଣଗିରି ପ୍ରଭୃତି ରାଜମାର୍ଗମାନଙ୍କ ଦ୍ୱାରା ସଂଯୁକ୍ତ ହୋଇଥିଲା । ପ୍ରତି ପାଞ୍ଚବର୍ଷରେ ବିଭିନ୍ନ ସ୍ଥାନରୁ ରାଜକର୍ମଚାରୀମାନେ ଦେଶର ହାଲଚାଲ ବୁଝିବା ପାଇଁ ବାହାରୁଥିଲେ ।

(୪) କୁମାର — ରାଜବଂଶ ସମ୍ଭୂତ ଶାସକ ।

(୮) ଏତସି ଅଠସି ହକଂ ଅନୁସାସାମି ତୁଫେ ଅନନେ ଏତକେନ ହକଂ
ଅନୁସାସିତୁ ଛଂଦଂ ଚ ବେଦିତୁ ଆ ହି ଧ୍ରୁବ ପଟିଂଞ୍ଚ ଚ ମମା ଅଚଳା ।
(୯) ସେ ହେବଂ କଟୁ କମେ ଚଲିତବିୟେ ଅସାସ × × ଚ ତାନ
ଏନ ପାପୁନେବୁ ଇତି ଅଥ ପିତା ତଥ ଦେବାନଂପିୟେ ଅଫାକ ଅଥା
ଚ ଅଠାନଂ ହେବଂ ଦେବାନଂପିୟେ ଅନୁକଂପତି ଅଫେ ଅଥା ଚ
ପଜା ହେବଂ ମୟେ ଦେବାନଂପିୟସ (୧୧) ସେ ହକଂ ଅନୁସାସିତୁ ଛଂଦଂ
ଚ ବେଦିତୁ ତୁଫାକ ଦେସାବୁତିକେ ହୋସାମି ଏତାୟେ ଅଠାୟେ
(୧୨) ପଟିବଲା ହି ତୁଫେ ଅସ୍ୱାସନାୟେ ହିତସୁଖାୟେ ଚ ତେସ ହିଦ-
ଲୋକିକ ପାଲଲୋକିକାୟେ (୧୩) ହେବଂ ଚ କଲଂତଂ ତୁଫେ ସ୍ୱଗଂ
ଆଲାଧୟିସଥ ମମ ଚ ଆନନିୟଂ ଏହଥ (୧୪) ଏତାୟେ ଚ ଅଠାୟେ
ଇୟଂ ଲିପି ଲିଖିତା ହିଦ ଏନ ମହାମାତା ସ୍ୱସତଂ ସମଂ ଯୁଜିସଂତି ଅସ୍ୱା-
ସନାୟେ ଧଂମଚଲନାୟେ ଚ ତେସ ଅଂତାନଂ (୧୫) ଇୟଂ ଚ ଲିପି
ଅନୁଚୁତୁଂ ମାସଂ ତିସେନ ନଖତେନ ସୋତବିୟା (୧୬) କାମଂ ଚୁ
ଖଣସି ଖନସି ଅଂତଲା ପି ତିସେନ ଏକେନ ପି ସୋତବିୟ (୧୭)
ହେବଂ କଲଂତଂ ତୁଫେ ଚଘଥ ସଂପଟିପାଦୟିତବେ ।

## — ସଂସ୍କୃତାନୁବାଦ —

ଦେବାନାଂ ପ୍ରିୟସ୍ୟ ବଚନେନ ତୋଷଲୀୟେ କୁମରଃ ମହାମାତ୍ରାଃ
ଚ ବକ୍ତବ୍ୟାଃ— ଯତ୍କିଞ୍ଚିତ୍ ପଶ୍ୟାମ୍ୟହଂ ତଦିଚ୍ଛାମି କଥମିତି କର୍ମଣା
ପ୍ରତିପାଦୟେହଂ । ଦ୍ୱାରତଶ୍ଚାରଭେଦମେତଚ୍ଚ ମୁଖ୍ୟମତଂ ଦ୍ୱାରମେତ-
ସ୍ୟାର୍ଥସ୍ୟ ଯଦ୍ୟୁଷ୍ମାସ୍ୱନୁଶିଷ୍ଟିଃ । ସର୍ବେ ମନୁଷ୍ୟା ମମ ପ୍ରଜା । ଯଥା
ପ୍ରଜାଭ୍ୟୋ ଇଚ୍ଛାମ୍ୟହଂ କଥମିତି ମେ ସର୍ବେଣ ହିତସୁଖେନ ଐହଲୌକିକ
ପାରଲୌକିକେନ ଯୁଜ୍ୟେରନ୍ନିତି । ଏବମେବ ମେ ଇଚ୍ଛା ସର୍ବ—

ମନୁଷ୍ୟେଷୁ । ସ୍ୟାଦନ୍ତାନାଂ ଅବିଜିତାନାଂ (୧) କିଂଛନ୍ଦୋ (୨) ସୌ ଗଜାସ୍ମାସ୍ୱଂତି ଏତାବଶି ମେ ଇଛା ଅନ୍ତେଷୁ । ପ୍ରାପୟୁ ଇତି ଦେବାନାଂ ପ୍ରିୟଃ ଏବମିଚ୍ଛତି ଅନୁଦ୍ୱିଗ୍ନାଃ ଭବେୟୁଃ ମମ୍ଭ ..... ଆଶ୍ୱସ୍ୟଶ୍ଚମେ । ସୁଖମେବ ଚ ଲଭେରନ ମତ୍ତେ ନ ଦୁଃଖମେବ ଚ ଯାପୟୁ । କ୍ଷମିଷ୍ୟତେ ଦେବାନାଂ ପ୍ରିୟଃ ଯଚ୍ଛକ୍ୟଂ କ୍ଷମିତୁଂ । ମମ ନିମିତ୍ତଂ ଚ ଧର୍ମଂଚ ଚରେୟୁରିତି ଇହଲୋକଞ୍ଚ ପରଲୋକଂ ଗୃହ୍ଣୀୟୁଃ । ଏତସ୍ମୈ ଅର୍ଥାୟାହଂ ଯୁଷ୍ମାନନୁଶାସ୍ମି । ଆନୃଣ୍ୟମେତେନ । ଯୁଷ୍ମାନନୁଶାସ୍ୟ ଛନ୍ଦଂ ଚ ବେଦୟିତୁଂ । ମମ ଧୃତିଃ ପ୍ରତିଜ୍ଞା ମମ ଗୃଚଳା । ତଦେବ କର୍ତ୍ତ କର୍ମ ଚରିତବ୍ୟା ଆଶ୍ୱାସନୀୟା ଶ୍ଚତେ ଯେନ ପ୍ରାପୟୁଃ । 'ଯଥା ପିତା ତଥା ଦେବାନାଂ ପ୍ରିୟଃ ଅସ୍ମାକଂ । ଯଥାତ୍ମାନମନୁକମ୍ପତେ ଦେବାନାଂ ପ୍ରିୟଃ ଏବମସ୍ମାନନୁକମ୍ପ ଚ, ଯଥା ଚ ପ୍ରଜା ଏବଂ ବୟଂ ଦେବାନାଂ ପ୍ରିୟସ୍ୟ ।" ଯୁଷ୍ମାନନୁଶାସ୍ୟ ଛନ୍ଦଂ ଚ ବେଦୟିତୁଂ । ମମ ଧୃତିଃ ପ୍ରତିଜ୍ଞା ଗୃଚଳା । ଦେଶ ଆୟୁକ୍ତ ଭବିଷ୍ୟାମି ଯେୟତସିନ୍ଧ୍ୟର୍ଥେ । ଅଳଂ ହି ଯୂୟମାଶ୍ୱସନାୟ ହିତସୁଖାୟ ଚ ତେଷା ମୈହଲୌକିକ ପାରଲୌକିକାୟ । ଏବଂ ଚ କୁର୍ବନ୍ତଃ ସ୍ୱର୍ଗଂ ଗୃହ୍ଣୀୟେଥ

---

(୧) "ଅନ୍ତାଅବିଜିତା" — ଅଶୋକ କଳିଙ୍ଗବାସୀମାନଙ୍କ ସହିତ ପ୍ରାୟ ଦୁଇବର୍ଷ କାଳ ତୁମୁଳ ଯୁଦ୍ଧ କରିଥିଲେ । ସେଥିରେ କଳିଙ୍ଗର ପ୍ରାୟ ୫ ଲକ୍ଷ ସୈନ୍ୟ ହତ, ଆହତ ଓ ନିର୍ବାସିତ ହୋଇଥିଲେ । ତଥାପି କଳିଙ୍ଗର କେତେକାଂଶ ଅଶୋକ ଅଧିକାର କରିବାକୁ ସମର୍ଥ ହୋଇ ନ ଥିଲେ । ଏହାଦ୍ୱାରା କଳିଙ୍ଗବାସୀଙ୍କ ବୀରତ୍ୱ ସ୍ପଷ୍ଟ ଜଣାଯାଏ ।

(୨) ଛନ୍ଦ—ଇଚ୍ଛା, ଭାବ ।

(୩) ଚାତୁର୍ମାସ୍ୟ—ଆମ ଓଡ଼ିଆରେ ଲୋକେ ଚଉମାସିଆ କହନ୍ତି । ଓଡ଼ିଆ ଶବ୍ଦଟି ସେହି ପ୍ରାଚୀନ ଯୁଗରୁ ଚଳି ଆସୁଅଛି । ଏହାର ଅର୍ଥ ଶୀତ ଚାରିମାସ, ଖରା ଚାରିମାସ, ଓ ବର୍ଷା ଚାରିମାସ । ଅମ୍ଭ ଦେଶରେ ଗ୍ରୀକ୍‌ମାନେ ମେଷବୃଷାଦି ସୌରମାନ ମାସ ଗଣନା ଚଳାଇଥିଲେ ବୋଲି କେତେକ କହନ୍ତି । କାରଣ ଅଶୋକଙ୍କ ଶତ ଶତ ଲିପିରେ କୌଣସିଠାରେ ସୌରମାନ ମାସର ନାମ ନାହିଁ । କନିଷ୍କଙ୍କ ଲେଖାରେ ପ୍ରଥମେ ସୌରମାନ ମାସ ଦେଖାଯାଏ ।

ମମ ଆନୃଣ୍ୟ ମେଧ୍ୟଥ । ଏତସ୍ମୈ ଵ୍ୟର୍ଥାୟେୟଂ ଲିପିଲିଖିତା ଏତେନ୍ନହା-ମାସାଃ ଶାଶ୍ୱତଂ ସମୟଂ ଯୁଞ୍ଜେୟୁରାଶ୍ୱାସନାୟ ଚ ଧର୍ମାଚରଣାୟ ଚ ଅନ୍ତାନାମ୍ । ଇୟଂ ଚ ଲିପିରନୁ ଚାତୁର୍ମାସ୍ୟଂ (୩) ଶ୍ରୋତବ୍ୟା ତିଷ୍ୟେ-ଣାନ୍ତରାପି ଚ ଶ୍ରୋତବ୍ୟା କ୍ଷଣେ ଏକେନାପି ଶ୍ରୋତବ୍ୟା । ଏବଂ ଚ କୁର୍ବନ୍ତଃ ସମ୍ପ୍ରତିପାଦୟିତୁଂ ଯୂୟଂ ଚେଷ୍ଟଧ୍ୱେ ।

## — ଓଡ଼ିଆ ଅନୁବାଦ —

ଦେବପ୍ରିୟ ପ୍ରିୟଦର୍ଶୀଙ୍କର କଥାନୁସାରେ ତୋଷଲୀରେ ଶାସନ-କାର୍ଯ୍ୟରେ ନିଯୁକ୍ତ ଥିବା କୁମାର ଓ ମହାମାତ୍ରମାନଙ୍କ ପ୍ରତି ନମ୍ରପ୍ରକାରରେ ଆଦେଶ ଦିଆଯାଉଛି ।

"ମୁଁ ଯାହା କିଛି ମନରେ ଭାବେ, ତାକୁ ଭଲରୂପେ କାର୍ଯ୍ୟରେ ପରିଣତ କରିବାକୁ ଇଚ୍ଛା କରେ । ଏହାର ପ୍ରଧାନ ଉପାୟ ହେଉଛି, ତୁମ୍ଭମାନଙ୍କୁ ଉପଦେଶ ଦେବା । ସମସ୍ତେ ମୋର ସନ୍ତାନ ତୁଲ୍ୟ । ମୁଁ ଯେପରି ମୋର ସନ୍ତାନମାନଙ୍କର ଐହିକ ଓ ପାରତ୍ରିକ ସୁଖ ଇଚ୍ଛା କରେ, ସେହିପରି ପ୍ରଜାମାନଙ୍କର ମଧ୍ୟ ଐହିକ ଓ ପାରତ୍ରିକ ସୁଖ କାମନା କରେ । ରାଜ୍ୟର ସୀମାନ୍ତବାସୀ ଅବିଜିତ ଲୋକମାନେ (ତାଙ୍କ ପ୍ରତି) ମୋର ଇଚ୍ଛା ଜାଣିବା ପାଇଁ ବ୍ୟଗ୍ର ଥିବେ । ରାଜା (ଅଶୋକ) ଇଚ୍ଛା କରନ୍ତି "ସେମାନେ ମୋତେ ଭୟ କରନ୍ତୁ ନାହିଁ । ସେମାନେ ଉଦ୍‌ବିଗ୍ନ (ଉତ୍ତେଜିତ) ହୁଅନ୍ତୁ ନାହିଁ । ମୋତେ ବିଶ୍ୱାସ କରନ୍ତୁ । ସେମାନେ ସୁଖରେ ରହନ୍ତୁ ଓ ଦୁଃଖଭୋଗ ନ କରନ୍ତୁ ।"

ସେମାନେ ବୁଝନ୍ତୁ ଯେ, "ଯାହା କ୍ଷମଣୀୟ, ତାହା ସେ ଅମ୍ଭଙ୍କୁ କ୍ଷମା ଦେବାକୁ ସର୍ବଦା ତତ୍ପର ।" ମୋର ସନ୍ତୋଷ ପାଇଁ ସେମାନେ ଧର୍ମ ଆଚରଣ କରନ୍ତୁ । ସେମାନେ ଐହିକ ଓ ପାରତ୍ରିକ ସୁଖ ଭୋଗ କରନ୍ତୁ— ଏଥିପାଇଁ ମୁଁ ତୁମ୍ଭମାନଙ୍କୁ (କର୍ମଚାରୀମାନଙ୍କୁ) ଉପଦେଶ ଦେଉଛି । ଏପରି କଲେ ତୁମ୍ଭେ ରାଜ ଋଣରୁ ମୁକ୍ତ ପାଇବ ।

ତୁମ୍ଭେମାନେ ଜାଣିଥିବ ମୋର ଧୈର୍ଯ୍ୟ ଓ ପ୍ରତିଜ୍ଞା ଅଟଳ । ଏପରିଭାବରେ କାର୍ଯ୍ୟ କର ଯାହାଦ୍ୱାରା ମୋର ଅଭୀଷ୍ଟ ସିଦ୍ଧି ହେବ ଓ ପ୍ରଜାମାନେ ଆଶ୍ୱାସନା ପାଇବେ । ସେମାନେ (ପ୍ରଜାମାନେ) ଜାଣନ୍ତୁ "ଦେବଙ୍କପ୍ରିୟ ପ୍ରିୟଦର୍ଶୀ ରାଜା ଆମ୍ଭମାନଙ୍କର ପିତୃ ସଦୃଶ । ସେ ନିଜର ଯେପରି କଲ୍ୟାଣ ଇଚ୍ଛା କରନ୍ତି ଆମ୍ଭମାନଙ୍କର ମଧ୍ୟ ସେହିପରି କଲ୍ୟାଣ ଇଚ୍ଛା କରନ୍ତି । ଆମ୍ଭେମାନେ ରାଜାଙ୍କର ସନ୍ତାନ ତୁଲ୍ୟ । ତୁମ୍ଭେମାନେ (କର୍ମଚାରୀମାନେ) ମୋର ଉଦ୍ଦେଶ୍ୟ ଭଲରୂପେ ବୁଝ । ତୁମ୍ଭେମାନେ ଜାଣ ମୋର ଧୈର୍ଯ୍ୟ ଅସୀମ ଓ ପ୍ରତିଜ୍ଞା ଅଟଳ ।

ତୁମ୍ଭେମାନେ ପ୍ରଜାମାନଙ୍କୁ ଐହିକ ଓ ପାରତ୍ରିକ ସୁଖ ଦେବାପାଇଁ ସମର୍ଥ । ଏପରି କାର୍ଯ୍ୟ କଲେ ତୁମ୍ଭେମାନେ ସ୍ୱର୍ଗଲାଭ କରିବ ଓ ମୋର ଋଣରୁ ମୁକ୍ତ ପାଇବ । ଏହି ଲିପି ଲେଖିବାର ଉଦ୍ଦେଶ୍ୟ ଏହି ଯେ, "ମହାମାତ୍ରମାନେ ସୀମାନ୍ତବାସୀ ଲୋକମାନଙ୍କୁ ସୁଖ ଓ ଶାନ୍ତିରେ ପାଳନ କରନ୍ତୁ ଓ ସେମାନଙ୍କୁ ଧର୍ମଚର୍ଯ୍ୟା କରିବାରେ ସାହାଯ୍ୟ ଦିଅନ୍ତୁ ।

ତୁମ୍ଭେ ସମସ୍ତ କର୍ମଚାରୀ ତିନି ଚତୁର୍ମାସ୍ୟାର ପୂର୍ଣ୍ଣିମା ଅର୍ଥାତ୍ ଆଷାଢ଼, କାର୍ତ୍ତିକ ଓ ଫାଲ୍‌ଗୁନ ମାସର ପୂର୍ଣ୍ଣିମା ତିଥିରେ ଏବଂ ତିଷ୍ୟ (ପୁଷ୍ୟା) ନକ୍ଷତ୍ର ଯୁକ୍ତ ତିଥିମାନଙ୍କରେ ଏହି ଧର୍ମଲିପିର ମର୍ମ ଲିପି-ବ୍ୟାଖ୍ୟାକାରୀ କର୍ମଚାରୀଙ୍କ ଠାରୁ ଅବଶ୍ୟ ବୁଝିବ । ତୁମ୍ଭେମାନେ ତିଷ୍ୟ (ପୁଷ୍ୟା) ନକ୍ଷତ୍ର ଯୁକ୍ତ ତିଥି ବ୍ୟତୀତ ଅନ୍ୟ ପବିତ୍ର ଦିବସରେ ମଧ୍ୟ ବୁଝି ପାରିବ । ଏପରିକି ଜଣେ କର୍ମଚାରୀ ଇଚ୍ଛା କଲେ ତାକୁ ମଧ୍ୟ ଚିତ୍ତକ୍ଷଣରୁ ବୁଝାଇ ଦିଆଯିବ । ଏପରି କଲେ ତୁମ୍ଭେମାନେ ମୋର ଆଦେଶ ଯଥାବିଧି ପାଳନ କରିବାକୁ ସମର୍ଥ ହେବ ।



# ପରିଶିଷ୍ଟ

## ଧଉଳୀ ଅଞ୍ଚଳର ପୁନରୁତ୍ଥାନ

କଟକର ସୁବାଦାର ମହମ୍ମଦ ତକି ଖାଁଙ୍କ ଦ୍ୱାରା ୧୭୩୧-୩୨ ଖ୍ରୀଷ୍ଟାବ୍ଦରେ ଧଉଳୀଗଡ଼ ଧ୍ୱଂସଧ୍ୱସ୍ତ ହେବାରୁ ଏହାର ପୂର୍ବ ଗୌରବ ଓ ବୈଭବର ଅବସାନ ଘଟିଲା । ଏହା ପରେ ଉକ୍ତ ଅଞ୍ଚଳ କ୍ରମଶଃ ପରିତ୍ୟକ୍ତ ଓ ଅବହେଳିତ ହେବାରୁ ଚତୁର୍ଦ୍ଦିଗ କଣ୍ଟକପୂର୍ଣ୍ଣ ବେତସ-କୁଞ୍ଜ ଓ ଶ୍ୱାପଦସଙ୍କୁଳ ଘନ ଅରଣ୍ୟରେ ଆଚ୍ଛାଦିତ ହୋଇଗଲେ । କିନ୍ତୁ ଧଉଳୀର ଅଶ୍ୱତ୍ଥାମା ନାମକ ଶୈଳଖଣ୍ଡରେ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଏକାଦଶଟି ଅନୁଶାସନ ଓ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଦୁଇଟି ସ୍ୱତନ୍ତ୍ର କଳିଙ୍ଗ ଅନୁଶାସନର ଆବିଷ୍କାର ଓ ପ୍ରାଚୀନ ଲିପିତତ୍ତ୍ୱବିତ୍ମାନଙ୍କ ଦ୍ୱାରା ସେଗୁଡ଼ିକର ପାଠୋଦ୍ଧାର ପରେ ସମଗ୍ର ଭାରତରେ ଏହା ଅଶୋକ ଯୁଗର ଏକ ପ୍ରସିଦ୍ଧ ବୌଦ୍ଧ ପୀଠ ରୂପେ ଖ୍ୟାତିଲାଭ କଲା । ତେଣୁ ୧୯୦୪ ମସିହାରେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ସୃଷ୍ଟି ପରେ ଏହି ପ୍ରାଚୀନତମ ବୌଦ୍ଧ ଲେଖଗୁଡ଼ିକ ସଂରକ୍ଷିତ କୀର୍ତ୍ତିରୂପେ ଘୋଷିତ ହୋଇ ଏଗୁଡ଼ିକର ସୁରକ୍ଷା ପାଇଁ ବ୍ୟବସ୍ଥା କରାଗଲା । ୧୯୪୮ ମସିହାରେ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗର ଐତିହାସିକ ଭୂଖୋଦନ ଶାଖା ଦ୍ୱାରା ଭୁବନେଶ୍ୱରର ଅଦୂରବର୍ତ୍ତୀ ଶିଶୁପାଳ ଗଡ଼ରେ ଖୋଦନକାର୍ଯ୍ୟ ଚାଲିବା ପରେ ଧଉଳୀ ଅଞ୍ଚଳର ଐତିହାସିକ ଗୁରୁତ୍ୱ ବୃଦ୍ଧିଲାଭ କଲା । ତହୁଁ ଧଉଳୀ ପାହାଡ଼ ନିକଟରେ ପରୀକ୍ଷାମୂଳକ ଭାବରେ ସ୍ଥାନେ ସ୍ଥାନେ ଖୋଦନ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କିନ୍ତୁ ଏହା ଧାରାବାହିକ ଭାବରେ ପରିଚାଳିତ ନ ହେବାରୁ ଇପ୍‌ସିତ ଫଳଲାଭ ହେଲା ନାହିଁ ।

ଧଉଳୀ ଅଞ୍ଚଳର ପ୍ରାଚୀନ କୀର୍ତ୍ତିଗୁଡ଼ିକର ସୁରକ୍ଷା ଓ ଏହାର ପ୍ରତି ଐତିହାସିକ ବିଭବ ପ୍ରତି ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରିବା

ପାଇଁ ମୁଁ ଛାତ୍ରାବସ୍ଥାରୁ ହୃଦୟରେ ଗଭୀର ଅଭିଳାଷ ପୋଷଣ କରିଥିଲି । ୧୯୬୨ ମସିହା ଫେବୃୟାରୀ ମାସରେ ମୁଁ ଓଡ଼ିଶା ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ପଦ ପାଇବା ମାତ୍ରେ ଧଉଳି ପାହାଡ଼ର ପଶ୍ଚିମ ଦ୍ରୋଣୀରେ ଦୟାନଦୀ କୂଳରେ ଅବସ୍ଥିତ, 'ଆମ୍ରାରାମ ଶତାଶ୍ରିତ' ଓ ଶତ ଶତ 'ଶିବ ମନ୍ଦିର ମଣ୍ଡିତ' ଏକାମ୍ରକାନନର ଦକ୍ଷିଣ ସୀମାରୂପେ ବର୍ଣ୍ଣିତ ଜରାଜୀର୍ଣ୍ଣ ଭଗ୍ନ ବହ୍ୱରଙ୍ଗେଶ୍ୱର ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ଆରମ୍ଭ କରିଦେଲି । ଯଥା ସମୟରେ ଏହାର ପୁନନିର୍ମାଣ କାର୍ଯ୍ୟ ଓ ଏହା ନିକଟରେ ଥିବା ପ୍ରାଚୀନ କୂପର ସଂସ୍କାର ସମାହିତ ହେଲା ।

ଏହାର ଅଳ୍ପଦିନ ପରେ ଧଉଳି ଅଞ୍ଚଳର ଭାଗ୍ୟୋଦୟ ହେଲା । ଜାପାନ ରାଜ୍ୟରେ ଆବିର୍ଭୂତ ବୌଦ୍ଧଧର୍ମର ଅଭ୍ୟୁତ୍ଥାନୈକବ୍ରତ ମହାମାନ୍ୟ ନିଚିଦାତ୍ସୁ ଫୁଜିଇ ଗୁରୁଜୀ ମହାମାନବ ଗୌତମବୁଦ୍ଧଙ୍କ ପ୍ରଧାନ କର୍ମକେନ୍ଦ୍ର ମଗଧ ବା ବିହାର ରାଜ୍ୟର ରାଜଗୃହ ଠାରେ ଏକ 'ଶାନ୍ତିସ୍ତୂପ ନିର୍ମାଣ କରିବା ପାଇଁ ଆୟୋଜନ କରିଥିଲେ । ଭାରତର ତତ୍କାଳୀନ ରାଷ୍ଟ୍ରପତି ଶ୍ରୀ ସର୍ବପଲ୍ଲୀ ରାଧାକୃଷ୍ଣନ୍ ୧୯୬୫ ମଇ ମାସ ୭ ତାରିଖରେ ରାଜଗିର ଠାରେ ଏହି ଶାନ୍ତିସ୍ତୂପର ଭିତ୍ତିପ୍ରସ୍ତରର ଶୁଭ ଦେଇଥିଲେ । ସ୍ତୂପ ନିର୍ମାଣ ଶେଷ ହେବା ପରେ ରାଷ୍ଟ୍ରପତି ଶ୍ରୀ ଭି. ଭି. ଗିରି ୧୯୬୯ ମସିହା ଅକ୍ଟୋବର ମାସ ୨୫ ତାରିଖରେ ଏହା ଉଦ୍‌ଘାଟନ କରିଥିଲେ । ଏହି ଉଦ୍‌ଘାଟନ ଉତ୍ସବ ସମୟରେ ବିହାରର ତତ୍କାଳୀନ ରାଜ୍ୟପାଳ ମାନ୍ୟବର ଶ୍ରୀ ନିତ୍ୟାନନ୍ଦ କାନୁନଗୋ ପୃଥିବୀପ୍ରସିଦ୍ଧ କଳିଙ୍ଗ ଯୁଦ୍ଧର ଲୀଳାଭୂମି ତୋଷଳୀ ନଗରରେ ଅବସ୍ଥିତ ଦେବପ୍ରିୟ ପ୍ରିୟଦର୍ଶୀଙ୍କ ଅନୁଶାସନ ମଣ୍ଡିତ ଧଉଳୀଗିରି ଉପରେ ଏକ ଶାନ୍ତିସ୍ତୂପ ନିର୍ମାଣ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ମହାମାନ୍ୟ ଗୁରୁଜୀ ଫୁଜିଇ ଏହାର ଗୁରୁତ୍ୱ ଉପଲବ୍ଧି କରି ରାଜ୍ୟପାଳ ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନଗୋଙ୍କ ମଧ୍ୟସ୍ଥତାରେ ଓଡ଼ିଶା ସରକାରଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲେ ।

ତଦନନ୍ତର ଗୁରୁଜୀ ୧୯୭୦ ଜାନୁୟାରୀ ମାସ ୮ ତାରିଖରେ ଭୁବନେଶ୍ୱର ଆସି ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ରାଜେନ୍ଦ୍ର-

ନାରାୟଣ ସିଂହଦେଓଙ୍କ ସହିତ ଧଉଳୀରେ ଶାନ୍ତିସ୍ତୂପ ନିର୍ମାଣ ଯୋଜନା ସମ୍ପର୍କରେ ବିଶଦ ଆଲୋଚନା କରିଥିଲେ । ଏହି ଆଲୋଚନା ପରେ ସ୍ଥିର ହେଲା ଯେ, ଏହି ସ୍ତୂପ ନିର୍ମାଣ ପାଇଁ ଓଡ଼ିଶା ସରକାର ଆବଶ୍ୟକୀୟ ଜମି ଯୋଗାଇଦେବେ ଏବଂ ଏହି ସ୍ଥାନକୁ ପକ୍କା ସଡ଼କ ନିର୍ମାଣ, ପାନୀୟ ଜଳ ଓ ବିଦ୍ୟୁତ ଆଲୋକ ଯୋଗାଣ ବ୍ୟବସ୍ଥା କରାଇଦେବେ । ଗୁରୁଜୀ ତାଙ୍କର ଶତ ଶତ ଶିଷ୍ୟ, ଭକ୍ତ ଓ ଅନୁଚରମାନଙ୍କ ଠାରୁ ଅର୍ଥ ସଂଗ୍ରହ କରି ଉକ୍ତ ଶାନ୍ତିସ୍ତୂପ ନିର୍ମାଣ କରିବେ ।

ସ୍ତୂପ ନିର୍ମାଣ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ୧୯୭୦ ନଭେମ୍ବର ମାସରେ କଳିଙ୍ଗ ନିପନ (ଜାପାନ) ବୁଦ୍ଧ ସଂଘ ନାମରେ ଏକ ପରିଚାଳନା ସମିତି ଗଠିତ ହେଲା । ମହାମାନ୍ୟ ଫୁଜି ଏହାର ପ୍ରଧାନ ପୃଷ୍ଠପୋଷକ, ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନଗୋ ଏହାର ସଭାପତି, ସମାଜ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଓ ବିହାରରେ ଏକ ଉଚ୍ଚ ପଦରେ ଅଧିଷ୍ଠିତ ଉତ୍କଳୀୟ ଶ୍ରୀ ଉପେନ୍ଦ୍ର ମହାରଥୀ ଏହାର ମୁଖ୍ୟ ସଭ୍ୟ ରୂପେ ଅଧିଷ୍ଠିତ ହେଲେ । ପରେ ଜାପାନର ଅନ୍ୟ ଜଣେ ପ୍ରସିଦ୍ଧ ଭିକ୍ଷୁ ମାନନୀୟ ଶାନ୍ତ ସୁଗାଇଙ୍କୁ ଏହାର ସେକ୍ରେଟାରୀ ଓ କୋଷାଧ୍ୟକ୍ଷ କରାଗଲା । ଧଉଳୀ ପର୍ବତରେ ନିର୍ମାଣ କାର୍ଯ୍ୟ ୧୫ ଜଣ ଜାପାନୀ ଭିକ୍ଷୁ, ୪ ଜଣ ଭିକ୍ଷୁଣୀ ଓ ଅଳ୍ପ କେତେକ ଜାପାନୀ ସ୍ୱେଚ୍ଛାସେବକଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଲା । ବହୁକାଳ ହେଲା ପରିତ୍ୟକ୍ତ ଜନଶୂନ୍ୟ ଧଉଳୀ ପାହାଡ଼ ଲୋକାରଣ୍ୟ ଓ କର୍ମମୁଖର ହୋଇପଡ଼ିଲା । ଓଡ଼ିଶାର ପୂର୍ବବର୍ତ୍ତୀ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ଏହି ସଂଘକୁ ୧୧ ଏକର ଜମିର ପଟ୍ଟା ମଞ୍ଜୁର କରିଥିଲେ ।

ଶାନ୍ତିସ୍ତୂପ ନିର୍ମାଣ ପୂର୍ବରୁ ଧଉଳୀ ପାହାଡ଼ର ପୂର୍ବ ଭାଗରେ 'ସଦ୍ଧର୍ମ ବିହାର' ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା । ଓଡ଼ିଶାର ରାଜ୍ୟପାଳ ଡକ୍ଟର ଆନ୍ସାରୀଙ୍କ ପୌରହିତ୍ୟରେ ୧୯୭୧ ଜାନୁୟାରୀ ମାସ ୨୫ ତାରିଖରେ ଏକ ଉତ୍ସବରେ ଭୂମିପୂଜା ଓ ବିହାରର ଶୁଭଦାନ କାର୍ଯ୍ୟ ସମାହିତ ହୋଇଥିଲା । ଗୁରୁଜୀଙ୍କ ୮୭ତମ ଜନ୍ମ ଦିବସରେ,

୧୯୭୧ ମସିହା ଅଗଷ୍ଟ ମାସ ୭ ତାରିଖରେ ଏହି ବିହାରର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଥିଲା ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଉକ୍ତ ଶୁଭ ଦିବସରେ ଏହି ବିହାରର ଉଦ୍‌ଘାଟନ ଉତ୍ସବରେ ସଭାପତିତ୍ୱ କରିଥିଲେ ।

**ଶାନ୍ତିସ୍ତୂପ ନିର୍ମାଣ :—** 'ସଦ୍ଧର୍ମ ବିହାର'ର ନିର୍ମାଣ ପରେ ୧୯୭୧ ମସିହା ଅଗଷ୍ଟ ୨୫ ତାରିଖରେ ଶାନ୍ତିସ୍ତୂପର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା । ନିର୍ମାଣ କାର୍ଯ୍ୟ କ୍ଷିପ୍ରଗତିରେ ଚାଲିଥିବା ସମୟର ଶେଷବେଳକୁ ସିମେଣ୍ଟ, ଲୁହା ପ୍ରଭୃତି ଉପକରଣର ମୂଲ୍ୟ ବୃଦ୍ଧି ଯୋଗୁଁ ବିଶେଷ ଅର୍ଥାଭାବ ଅନୁଭୂତ ହେଲା । ଏଥିଯୋଗୁଁ ଗୁରୁଜୀ ସ୍ତୂପ ନିର୍ମାଣ କାର୍ଯ୍ୟ ୧୯୭୨ ମସିହା ଫେବ୍ରୁୟାରୀ ମାସରେ ବନ୍ଦ କରିବା ପାଇଁ ମନସ୍ଥ କରିଥିଲେ । ଏହି ଘୋର ସଙ୍କଟ ସମୟରେ ଏହାର ମୁଖ୍ୟ ଉଦଯୋକ୍ତା ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଆବେଦନ ଫଳରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଓଡ଼ିଶା ସରକାରଙ୍କ ତରଫରୁ ୨ ଲକ୍ଷ ଟଙ୍କା ସାହାଯ୍ୟର ପ୍ରତିଶ୍ରୁତି ଦେଇଥିଲେ । ଶ୍ରୀଯୁକ୍ତ ରଥ ମଧ୍ୟ ୫୦ ହଜାର ଟଙ୍କା ସଗ୍ରହର ଆଶାବାଣୀ ଶୁଣାଇଥିଲେ । ଗୁରୁଜୀଙ୍କ ଶିଷ୍ୟ ଓ ଭକ୍ତମାନେ ବାକୀ ନିଅଣ୍ଟ ପୂରଣ ପାଇଁ ପ୍ରତିଶ୍ରୁତି ପ୍ରଦାନ କଲେ । ଓଡ଼ିଶାର ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଓଡ଼ିଶା ସରକାରଙ୍କ ଦୁଇ ଲକ୍ଷ ଟଙ୍କାର ଅର୍ଥ ସାହାଯ୍ୟ ପ୍ରସ୍ତାବକୁ ଅନୁମୋଦନ କରିଥିଲେ । କିନ୍ତୁ ବାତ୍ୟା, ବନ୍ୟା, ମରୁଡ଼ି ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ଓଡ଼ିଶା ବିଶେଷ କ୍ଷତିଗ୍ରସ୍ତ ହେବାରୁ ଓଡ଼ିଶାର ନୂତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ପ୍ରଥମ କିସ୍ତିରେ ଏକ ଲକ୍ଷ ଟଙ୍କା ମଞ୍ଜୁର କରିବାରୁ ନିର୍ମାଣ କାର୍ଯ୍ୟର କ୍ଷିପ୍ରତା ଅବ୍ୟାହତ ରହିଲା ।

୧୯୭୨ ମସିହା ଅକ୍ଟୋବର ମାସ ୨୮ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପୌରହିତ୍ୟରେ ଉକ୍ତ ଶାନ୍ତିସ୍ତୂପରେ ଭଗବାନ ବୁଦ୍ଧଙ୍କ ପବିତ୍ର "ଅସ୍ଥି ସଂସ୍ଥାପନ ଉତ୍ସବ" ମହାସମାରୋହରେ ସମ୍ପନ୍ନ ହୋଇଥିଲା ଏବଂ ୮-୧୧-୭୨ ତାରିଖରେ ଓଡ଼ିଶାର ଅସ୍ଥାୟୀ

ରାଜ୍ୟପାଳ ମାନ୍ୟବର ଶ୍ରୀଯୁକ୍ତ ଶିବକୃଷ୍ଣ ମିଶ୍ର ବିରାଟ ଜନସମାଗମ ମଧ୍ୟରେ ଏହି ସ୍ତୂପର ଆନୁଷ୍ଠାନିକ ଉନ୍ମୋଚନ କାର୍ଯ୍ୟ ସମ୍ପନ୍ନ କରିଥିଲେ । ଏହାପରେ ସ୍ତୂପର ଚତୁର୍ଦ୍ଦିଗରେ ପ୍ରତିଷ୍ଠିତ ଭଗବାନ ବୁଦ୍ଧଙ୍କ ଚାରୋଟି କାଂସ୍ୟ ପ୍ରତିମୂର୍ତ୍ତି ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା ।

ଏହି ସ୍ତୂପର କ୍ଷିପ୍ର ନିର୍ମାଣ ଓଡ଼ିଶା ସରକାରଙ୍କ ପୃଷ୍ଠପୋଷକତା ଯୋଗୁଁ ସମ୍ଭବପର ହୋଇଥିଲା । ଏହା ସହିତ ଯୋଗାଯୋଗ ବ୍ୟବସ୍ଥା, ସ୍ତୂପ ଅଞ୍ଚଳରେ ଜଳଯୋଗାଣ ଏବଂ ବିଦ୍ୟୁତ ଆଲୋକ ସଂଯୋଗ ପାଇଁ ଓଡ଼ିଶା ସରକାରଙ୍କ ରାସ୍ତା ନିର୍ମାଣ ବିଭାଗ, ଜନସ୍ୱାସ୍ଥ୍ୟ ବିଭାଗ ଓ ବିଦ୍ୟୁତ ପରିଷଦର କର୍ମକର୍ତ୍ତାଗଣ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିଥିଲେ । ଓଡ଼ିଶାର ଯେଉଁ ପ୍ରସ୍ତର ଶିଳ୍ପୀଗଣ ପ୍ରତିମୂର୍ତ୍ତି ସମୂହ ଜୀବନ୍ତ ଭାବରେ ଖୋଦନ କରି ପ୍ରାଚୀନ ଉତ୍କଳୀୟ ଭାସ୍କର୍ଯ୍ୟର ପରଂପରା ଅକ୍ଷୁର୍ଣ୍ଣ ଭାବରେ ପ୍ରକଟିତ କରିଛନ୍ତି, ସେମାନେ ସର୍ବଥା ପ୍ରଶଂସାର୍ହ । ଯେଉଁ ଶତ ଶତ ପୁରୁଷ ଓ ମହିଳା ଶ୍ରମଜୀବୀଙ୍କ ଅକ୍ଲାନ୍ତ ପରିଶ୍ରମ ଫଳରେ ଧଉଳୀର ଶିଖର ଦେଶରେ ଏହି ବିରାଟ ଶାନ୍ତିସ୍ତୂପ ଆଜି ସଗର୍ବରେ ମସ୍ତକ ଉତ୍ତୋଳନ କରିଛି, ସେମାନେ ଧନ୍ୟବାଦର ପାତ୍ର ।

ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ଦ୍ୱାରା ନିର୍ମିତ ସ୍ତୂପର ଧ୍ୱସାବଶେଷ ଅଦୂରରେ ମହାମାନ୍ୟ ଗୁରୁଜୀ ଫୁଜୀ ମହାମାନବ ଗୌତମ ବୁଦ୍ଧଙ୍କ ମହତ୍ ବାଣୀର ପ୍ରଚାର ଓ ଧର୍ମାଶୋକଙ୍କ ମହାନ୍ ସନ୍ଦେଶର ପୁନରୁଜ୍ଜୀବନ ପାଇଁ ଧଉଳୀର ଶିଖର ପ୍ରଦେଶରେ ଏହି ବିରାଟ ଚିତ୍ତାକର୍ଷଣକାରୀ ଶୁଭ୍ର ଶୁଭସ୍ତୂପ ଉତ୍ତୋଳନ କରିଥିବାରୁ ସମଗ୍ର ଜାତିର ନମସ୍ୟ । ଏହି ଆନ୍ତର୍ଜାତିକ କଳିଙ୍ଗ ଶାନ୍ତିସ୍ତୂପ ଗୁରୁଜୀଙ୍କ ପ୍ରେରଣା ଓ ପୃଷ୍ଠପୋଷକତାରେ ନିର୍ମିତ ଶାନ୍ତିସ୍ତୂପ ସମୂହ ମଧ୍ୟରେ ସପ୍ତବିଂଶତମ ସ୍ଥାନ ଅଧିକାର କରିଛି । ଗୁରୁଜୀଙ୍କ ଏହି ଅମର କୀର୍ତ୍ତି ବିଶ୍ୱବାସୀଙ୍କୁ ଶାନ୍ତି, ମୈତ୍ରୀ ଓ ସଦାଚାର ମାର୍ଗ ପ୍ରଦର୍ଶକ ଆଲୋକସ୍ତମ୍ଭ ରୂପେ ଚିରକାଳ ଦେଦୀପ୍ୟମାନ ରହିବ ।

## ଧବଳେଶ୍ୱର ମନ୍ଦିରର ପୁନର୍ନିର୍ମାଣ —

ଧଉଳୀ ପାହାଡ଼ର ପଶ୍ଚିମ ଶିଖର ଉପରେ କଳିଙ୍ଗ ଶାନ୍ତିସ୍ତୂପର ନିର୍ମାଣ କାର୍ଯ୍ୟ କ୍ଷିପ୍ରଗତିରେ ଚାଲିଥିବା ସମୟରେ ଏହାର ପୂର୍ବ ଶିଖରୋପରି ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ନିର୍ମିତ ଧବଳେଶ୍ୱର ମନ୍ଦିରର ଧ୍ୱଂସାବଶେଷ ଦ୍ୱାରା ହିନ୍ଦୁଧର୍ମର ଶୋଚନୀୟ ଦୁର୍ଦ୍ଦଶା ପ୍ରକଟିତ ହେଉଥିବା ନଗର ଉନ୍ନୟନ ବିଭାଗର ଶାସନ ସଚିବ ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ତ୍ରିପାଠୀ ପ୍ରମୁଖ କେତେକ ଧର୍ମପ୍ରାଣ ବ୍ୟକ୍ତି ଅତି ଦୁଃଖର ସହିତ ହୃଦୟଙ୍ଗମ କରି ଏହାର ପୁନରୁଦ୍ଧାର କାର୍ଯ୍ୟରେ ବ୍ରତୀ ହେଲେ । ତହୁଁ ୧୯୭୨ ମସିହା ଏପ୍ରିଲ ମାସରେ ଉକ୍ତ ସ୍ଥଳରେ ପତିତ ଧବଳେଶ୍ୱର ମନ୍ଦିର ଧ୍ୱଂସାବଶେଷ ଓ ତାହାର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳର ପରିଷ୍କରଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ୧୫-୫-୭୨ ତାରିଖ ପୁଣ୍ୟ ଅକ୍ଷୟ ତୃତୀୟା ତିଥିରେ ଅତି ଆଡ଼ମ୍ବର ସହକାରେ ଏହାର ପୁନରୁଦ୍ଧାର ଆରମ୍ଭ କରିବା ପାଇଁ ବୈଦିକ ରୀତିରେ ପୂଜାଦି କରାଗଲା । ବିଖ୍ୟାତ ଲେଖକ ଓ ଇଞ୍ଜିନିୟର ଶ୍ରୀ ମଧୁସୂଦନ ମିଶ୍ରଙ୍କ ଦ୍ୱାରା ଏହି ବାସ୍ତୁପୂଜା କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ୯-୭-୭୨ ତାରିଖରେ ନୂତନ ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନ ଉତ୍ସବ ସମାହିତ ହେଲା । ଏହି ଦିନ ଠାରୁ ଶହ ଶହ ପ୍ରସ୍ତର ଶିଳ୍ପୀଙ୍କୁ ନିଯୁକ୍ତ କରାଯାଇ ଦିବାରାତ୍ର ଅତି କ୍ଷିପ୍ର ଗତିରେ କାର୍ଯ୍ୟ ପରିଚାଳିତ ହେବାରୁ ମାତ୍ର ଛଅମାସ ମଧ୍ୟରେ ମୁଖ୍ୟ ମନ୍ଦିରର ପୁନଃନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ୩୦-୧୨-୭୨ ତାରିଖରେ ଏହାର ଶୀର୍ଷଦେଶରେ ବୈଦିକ ରୀତିରେ ପୂଜିତ କଳସ ପଥର ସ୍ଥାପନ କରାଗଲା । ପ୍ରତ୍ନତତ୍ତ୍ୱବିତ୍ ବେଗଲରଙ୍କ ଦ୍ୱାରା ୧୮୭୮ ମସିହାରେ ଲିଖିତ ପର୍ଯ୍ୟଟନ ବିବରଣୀ ଅନୁଯାୟୀ ବିମାନର ପୁନଂନିର୍ମାଣ ସଂଘଟିତ ହେଲା ।

ପ୍ରାଚୀନ ମନ୍ଦିରରେ ଜଗମୋହନ ବା ମୁଖଶାଳା ନ ଥିଲେ ମଧ୍ୟ ନୂତନ ଭକ୍ତଙ୍କ ମନ୍ଦିରରେ ଏହାର ଅଭାବ ଅନୁଭୂତ ହେବାରୁ ଗ୍ରାମ୍ୟ ଇଞ୍ଜିନିୟରଙ୍କ ସଂସ୍ଥା ଦ୍ୱାରା ଆଧୁନିକ ସ୍ଥାପତ୍ୟ ଶୈଳୀରେ ୧୯୭୨ ଅକ୍ଟୋବର ମାସରୁ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇ ପ୍ରାୟ ଏକମାସ ମଧ୍ୟରେ

ଏହାର ନିର୍ମାଣ କାର୍ଯ୍ୟ ସମାପ୍ତ ହେବାରୁ ୨୦-୧୧-୭୨ ତାରିଖ ସୋମବାର ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ପୁନର୍ଗଠିତ ସମଗ୍ର ମନ୍ଦିରର ପ୍ରତିଷ୍ଠା ଉତ୍ସବ ବୈଦିକ ରୀତିରେ ନିରାଡ଼ମ୍ବର ଭାବରେ ଓ ଶାନ୍ତିପୂର୍ଣ୍ଣ ପରିବେଶ ମଧ୍ୟରେ ସମ୍ପନ୍ନ କରାଗଲା । ୮-୧୧-୭୨ ତାରିଖରେ ଶାନ୍ତିସ୍ତୂପ ପ୍ରତିଷ୍ଠା ଓ ୨୦-୧୧-୭୨ ତାରିଖରେ ଧବଳେଶ୍ୱର ମନ୍ଦିର ପୁନର୍ଗଠନର ସମାପ୍ତି ଯୋଗୁଁ ଏହି ଦୁଇଟି ଘଟଣା ଚଳିତ ଶତାବ୍ଦୀର ଇତିହାସରେ ଚିରସ୍ମରଣୀୟ ହୋଇ ରହିବ । ଧଉଳି ପାହାଡ଼ର ଶିଖରଦ୍ୱୟରେ ଉଭୟ କୀର୍ତ୍ତିର ଅବସ୍ଥିତି ବୌଦ୍ଧ ଓ ହିନ୍ଦୁଧର୍ମ ମଧ୍ୟରେ ମୈତ୍ରୀ, ପ୍ରୀତି ଓ ସଦ୍ଭାବର ପ୍ରତୀକ ସ୍ୱରୂପ ଚିରକାଳ ବିରାଜମାନ ରହୁ — ଏହାହିଁ ମଙ୍ଗଳମୟ ଭଗବାନଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ।

## ସଙ୍କଟେଶ୍ୱର ମନ୍ଦିରର ପୁନରୁଦ୍ଧାର —

ଧଉଳି ପାହାଡ଼ର ପୂର୍ବ ଶିଖର ଉପରେ ଧବଳେଶ୍ୱର ମନ୍ଦିର ପୁନର୍ନିର୍ମାଣ କାର୍ଯ୍ୟ ଚାଲିଥିବା ସମୟରେ ଶାନ୍ତିସ୍ତୂପକୁ ଯାଉଥିବା ପଥ ପାର୍ଶ୍ୱରେ ଜରାଜୀର୍ଣ୍ଣ, ଭଗ୍ନ, ବିକଳାଙ୍ଗ, ଗୁଳ୍ମାଚ୍ଛାଦିତ ଗଙ୍ଗଯୁଗର କୀର୍ତ୍ତି ସଙ୍କଟେଶ୍ୱର ମନ୍ଦିରର ଦୁର୍ଦ୍ଦଶା ମୋଚନ ନିମିତ୍ତ ମୋର ନିର୍ଦ୍ଦେଶରେ ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ ପ୍ରଣାଳୀରେ ଏହାର ପୁନରୁଦ୍ଧାର କାର୍ଯ୍ୟ ଅତି କ୍ଷିପ୍ରଗତିରେ ସମ୍ପନ୍ନ କରାଯାଇଥିଲା । ଏହି କାର୍ଯ୍ୟ ସଙ୍ଗେ ସଙ୍ଗେ ଏହା ନିକଟରେ ଥିବା ପ୍ରାଚୀନ କୂପର ସଂସ୍କାର ସାଧିତ ହୋଇ ମନ୍ଦିର ଚତୁର୍ଦ୍ଦିଗରେ ଏକ ସୁରମ୍ୟ ଉଦ୍ୟାନ ନିର୍ମିତ ହେଲା ।

## ପ୍ରାଚୀନ ପୁଷ୍କରିଣୀର ଖନନ —

ଓଡ଼ିଶାର ରାଜ୍ୟପାଳ ମାନ୍ୟବର ଶ୍ରୀଯୁକ୍ତ ବାସପ୍ପା ଦାନପ୍ପା ଜତିଙ୍କ ୧-୪-୧୯୭୩ ତାରିଖରେ ଧବଳେଶ୍ୱର ମନ୍ଦିର ପରିଦର୍ଶନ ସମୟରେ ଏହି ପାହାଡ଼ର ପୂର୍ବଭାଗରେ ଅବସ୍ଥିତ ପଙ୍କପୂର୍ଣ୍ଣ ପ୍ରାଚୀନ ଜଳାଶୟର ପୁନଃଖନନ, ଏହାର ଚତୁଃପାର୍ଶ୍ୱରେ ପ୍ରସ୍ତରରେ ସୋପାନ ଶ୍ରେଣୀ

ନିର୍ମାଣ ଓ ଏହା ନିକଟରେ ଏକ ପ୍ରମୋଦ ଉଦ୍ୟାନ ସ୍ଥାପନ ପାଇଁ ଏକ ଯୋଜନା ଉପସ୍ଥାପିତ କରାଯାଇଥିଲା । ମାନ୍ୟବର ରାଜ୍ୟପାଳ ଏହି ଯୋଜନାର ଗୁରୁତ୍ୱ ଉପଲବ୍ଧି କରି ପୁନରୁଦ୍ଧୃତ ଧଉଳୀ ଅଞ୍ଚଳର ଜଳାଭାବ ଦୂରୀକରଣ ନିମିତ୍ତ ଏହା କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ଅର୍ଥ ମଞ୍ଜୁର କରିଥିଲେ । ତେଣୁ ଅଳ୍ପ କେତେମାସ ମଧ୍ୟରେ ଏହି ପ୍ରାଚୀନ ଜଳାଶୟ ନୂତନ ରୂପ ଧାରଣ କରିଥିଲା ।

ବହୁଶତାବ୍ଦୀ ବ୍ୟାପୀ ଅବହେଳାମୟ ଦୁର୍ଦ୍ଦିନ ପରେ ଇତିହାସ ଗର୍ଭରେ ବିଲୁପ୍ତ ବିରାଟ କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ତୋଷଳୀ ନଗରୀ ଗତ ତିନି ଚାରି ବର୍ଷ ମଧ୍ୟରେ ପୁନରୁଜ୍ଜୀବିତ ହୋଇ ଉନ୍ନତି ପଥରେ କ୍ରମଶଃ ଅଗ୍ରସର ହେଉଅଛି । ଏହାର ଅଦୂରରେ ଦକ୍ଷିଣ ଦିଗରେ ଏକ ପୟଃପ୍ରଣାଳୀର ଖନନ ଯୋଗୁଁ ବନ୍ୟାକ୍ଲିଷ୍ଟ ଧଉଳୀ ପାହାଡ଼ର ଦକ୍ଷିଣ ପାର୍ଶ୍ୱସ୍ଥ ସମତଳ ଭୂଭାଗ ପୁନର୍ବାର ଶସ୍ୟଶ୍ୟାମଳ ହୋଇପାରିଛି ।

ବର୍ତ୍ତମାନ ଅଶୋକ ଅନୁଶାସନ, ପର୍ବତ-ଶିଖରସ୍ଥ ଶାନ୍ତିସ୍ତୂପ ଓ ଧବଳେଶ୍ୱର ମଠର ପରିଦର୍ଶନ ପାଇଁ ଶତ ଶତ ଭକ୍ତ ଓ ପରିଦର୍ଶନକାରୀ ଏଠାରେ ସମବେତ ହେଉଥିବାରୁ ଏହା ନବ୍ୟ ଉତ୍କଳର ଏକ ପ୍ରଧାନ ତୀର୍ଥସ୍ଥାନ ରୂପେ ବିବେଚିତ ହେଉଅଛି । ଏଠାରେ ବାସଗୃହ ଶ୍ରେଣୀ, ପାନ୍ଥନିବାସ, ବିଭିନ୍ନ ଆବାସିକ ଶିକ୍ଷାୟତନ, ପ୍ରମୋଦ ଉଦ୍ୟାନ ଓ କ୍ରୀଡ଼ାଙ୍ଗନ ପ୍ରଭୃତି ଯୋଜନାବଦ୍ଧ ଭାବରେ ନିର୍ମିତ ହେଲେ ଏହା ଅଦୂର ଭବିଷ୍ୟତରେ ପ୍ରାଚୀନ ବୌଦ୍ଧଯୁଗ ଓ ଅଧୁନାତନ ବୈଜ୍ଞାନିକ ଯୁଗର ସଂଯୋଗକାରୀ ଏକ ଜନାକୀର୍ଣ୍ଣ ନଗରୀ ରୂପେ ସମଗ୍ର ଭାରତ ମାନଚିତ୍ରରେ ଯଥାଯୋଗ୍ୟ ସ୍ଥାନ ଲାଭ କରିବାର ଆଶା କରାଯାଏ ।



— * ସମାପ୍ତ * —



ପୂର୍ବ ଶିଖରସ୍ଥ ଭଗ୍ନ ଧବଳେଶ୍ୱର ମନ୍ଦିର



ଅତ୍ୟୁଚ୍ଚ ଧବଳେଶ୍ୱର ଶିବ ଲିଙ୍ଗ



ଭଗ୍ନ ଧବଳେଶ୍ୱର ମନ୍ଦିର ନିକଟରୁ ପ୍ରାପ୍ତ କାର୍ତ୍ତିକେୟ, ଦୁର୍ଗା ଓ ଗଣେଶ ବିଗ୍ରହ



ଜୀର୍ଣ୍ଣୋଦ୍ଧାରର ପରେ ଧବଳେଶ୍ୱର ମନ୍ଦିର



ପଶ୍ଚିମ ଦିଗରେ ଦୟା ନଦୀ ତୀରରେ ଅବସ୍ଥିତ
ପ୍ରାଚୀନ ବହିରଙ୍ଗେଶ୍ୱର ମନ୍ଦିର



ଭାଣ୍ଡୀଖାର ପରେ ପଥପାର୍ଶ୍ୱସ୍ଥ ସଙ୍କଟେଶ୍ୱର ମନ୍ଦିର



ପଶ୍ଚିମ ଶିଳ୍ପରେପରି ନିର୍ମିତ କଳିଙ୍ଗ ଶାନ୍ତିସ୍ତୂପ



ଜୀର୍ଣ୍ଣୋଦ୍ଧାର ପରେ ଧବଳେଶ୍ୱର ମନ୍ଦିର